# ଶରଣାଗତ

**ସମରେଶ ମଜୁମ୍‌ଦାର**

ଓଡ଼ିଆ ରୂପାୟନ :

ମୃଣାଳ



# ଶରଣାଗତ

**ସମରେଶ ମଜୁମ୍‌ଦାର**

ଓଡ଼ିଆ ରୂପାୟନ :
ମୃଣାଳ
ପ୍ରକାଶକ :
କାହାଣୀ ପ୍ରକାଶନୀ
କଲ୍ୟାଣୀନଗର ■ କଟକ - ୭୫୩୦୧୩
ପ୍ରକାଶ କାଳ :
ଶ୍ରୀପଞ୍ଚମୀ ■ ୧୯୯୫
ପ୍ରଚ୍ଛଦପଟ :
ଅସିତ ମୁଖାର୍ଜୀ
ଅଙ୍ଗ ସଜ୍ଜା :
ପ୍ରିୟ ଦର୍ଶିନୀ
ଅକ୍ଷର ସଜ୍ଜା :
କମ୍ପ୍ୟୁଆକୁ
ମଙ୍ଗଳାବାଗ, ଗୋପାଳସାହି ■ କଟକ
ମୁଦ୍ରଣ :
ପଞ୍ଚସଖା ପ୍ରକାଶନ
ସୂତାହାଟ ■ କଟକ-୧
ମୂଲ୍ୟ :
ଟ ୪୫.୦୦ [ ପଇଁଚାଳିଶ ଟଙ୍କା ମାତ୍ର ]

କାହାଣୀ

SHARANAGAT
by : Samaresh Mazumdar,
Published by : Kahani Prakashan,
Kalyani Nagar, Cuttack - 13.
Published : 1995
Price : Rupees FORTYFIVE Only

ଇତିହାସର ଏକ ଉପେକ୍ଷିତା ରମଣୀଙ୍କୁ ନେଇ,
ଏହି କଳ୍ପ କାହାଣୀ ରଚିତ । ସ୍ୱପ୍ନ ଏତିକି ମାତ୍ର ।

ଆଜି ଆକାଶରେ ପୂର୍ଣ୍ଣଚନ୍ଦ୍ରର ସାମ୍ରାଜ୍ୟ। ଚତୁର୍ଦ୍ଦିଗ ଏମିତି ମାୟାମୟ ଯେ ହୃଦୟ ଅଭ୍ୟନ୍ତରରେ ଏକ ସୁଖଦ ଅନୁଭବର ଜୁଆର ଆସେ। ଫାଲ୍‌ଗୁନୀ ନିଶିର ଏହି ପ୍ରଥମ ପ୍ରହରରେ ବିଧାତା ତାଙ୍କର ସମସ୍ତ ଶିଳ୍ପନୈପୁଣ୍ୟ ନିଃଶେଷ କରିଦେଇଛନ୍ତି, କିଛି ମଣିଷଙ୍କୁ ବିବସ୍ତ୍ର କରିବା ପାଇଁ। ସେମାନଙ୍କ ମଧ୍ୟରୁ ଜଣେ ତିଷ୍ୟା।

ମୁକୁରରେ ନିଜ ଶରୀରକୁ ନିବିଷ୍ଟ ଚିତ୍ତରେ ଅବଲୋକନ କରୁଥିଲେ ସେ। ଏଇ ଉଦାର ସନ୍ଧ୍ୟାରେ ପାଖ ଉଦ୍ୟାନ ସୁରଭିତ କରି ମାତାଲ ପବନ ପ୍ରବେଶ କରୁଥିଲା ଖୋଲା ବାତାୟନ ବାଟେ। ଏତେ ଫୁଲ କେବେ କି ଫୁଟିଛି ଏଇ ଉଦ୍ୟାନରେ? ଏତେ ଜ୍ୟୋତ୍ସ୍ନା କି କେବେ ଥିଲା ଚନ୍ଦ୍ର ଦେହରେ? ଏଇ ସମୟରେ ଦ୍ୱାରରେ କରାଘାତର ଶବ୍ଦ। ସମ୍ବିତ୍ ଫେରିପାଇ ସଚକିତା ହେଲେ ତିଷ୍ୟା।

ଶବ୍ଦ ହେଲା ପୁନର୍ବାର। ତିଷ୍ୟା ଜାଣନ୍ତି, ଏ ଆହ୍ୱାନ କଣ ପାଇଁ। ବସ୍ତୁତଃ ଏମିତି ଏକ ଆହ୍ୱାନ ପାଇଁ ହିଁ ତ ସେ ଅପେକ୍ଷା କରି ରହିଛନ୍ତି ଦୀର୍ଘ ତିରିଶ ବର୍ଷ। ମୃଦୁସ୍ୱରରେ ସେ ଜଣେଇଲେ: ଅଳ୍ପ ସମୟ ଅପେକ୍ଷା କର, ଅଳ୍ପ ସମୟ।

ତିରିଶଟି ବସନ୍ତ ସେ ଅପେକ୍ଷା କରିଛନ୍ତି ଯାହା ପାଇଁ, ସେ କଣ ସାମାନ୍ୟ ଧୈର୍ଯ୍ୟ ଧରି ପାରୁନାହାନ୍ତି? ହସିଲେ ତିଷ୍ୟା। ଏଭଳି ଅସ୍ଥିର ତ ସେ ସେତେବେଳେ ବି ଥିଲେ। ଯଦିଓ ମାତ୍ର କେତେକ ସପ୍ତାହ ସେ ଲକ୍ଷ୍ୟ କରିବାର ସୁଯୋଗ ପାଇଥିଲେ। ତଥାପି ସ୍ୱଭାବ ତ ରକ୍ତରେ ରହିଯାଏ। ସେ କହିଥିଲେ, ପ୍ରଥମ ପ୍ରହରରେ ହିଁ ତିଷ୍ୟାର ଦର୍ଶନ ଚାହାନ୍ତି। ସମ୍ରାଟର ଆଦେଶ ନା ଜାମାତାର ଅନୁରୋଧ? ତିଷ୍ୟା ଭଲଭାବେ ଜାଣିଛନ୍ତି, ପିତା ଜାଣନ୍ତି ନାହିଁ, କେଉଁ ଅର୍ଥରେ ସେ ଗ୍ରହଣ କରିବେ। ସେଇଥିପାଇଁ ବାରମ୍ବାର ଦାସୀମାନଙ୍କୁ ପ୍ରେରଣ କରୁଛନ୍ତି। କିନ୍ତୁ ତିଷ୍ୟା ଆଜି ସମୟ ନେବେ।

ପ୍ରଥମ ପ୍ରହର ନୁହେଁ, ଫାଲ୍‌ଗୁନର ଦ୍ୱିତୀୟ ପ୍ରହରରେ ହିଁ ପ୍ରକୃତି ଅଧିକ ମାୟାମୟୀ ହୋଇଉଠେ। ତାହା ହିଁ ତ ପ୍ରକୃଷ୍ଟ ସମୟ। ତା'ଛଡ଼ା ଆଜି ତାଙ୍କର ସମୟ ଲାଗୁଛି। ତିରିଶିଟି ଶୀତ ବ୍ରହ୍ମଚାରିଣୀ ବେଶରେ କଟେଇ ହାତ ଯେ କିଛିଟା ଅନଭ୍ୟସ୍ତ ହୋଇପଡ଼ିଛି! ନା, କାହାକୁ ସେ ସାହାଯ୍ୟ କରିବାର ଅନୁମତି ଦେଇ ନାହାନ୍ତି। ଏଇ ଦେହରେ ସେ ଆନନ୍ଦିତ ହୋଇଥିଲେ ତିରିଶବର୍ଷ ପୂର୍ବେ। ଆଜି ସେ ଦେହକୁ ମନୋହରା କରିବାର ଦାୟ ଅନ୍ୟକୁ ବା ଦେବେ କାହିଁକି ତିଷ୍ୟା?

କେୟୂର କଙ୍କଣ ଏବଂ କଙ୍କଣିକା ଅଙ୍ଗରେ ଧାରଣ କରି ଶେଷଥର ମୁକୁର ଆଡ଼କୁ ଚାହିଁଲେ ତିଷ୍ୟା। ଏତେ ସୌନ୍ଦର୍ଯ୍ୟ ଥିଲା ତାଙ୍କର, ଏତେ ମୋହିନୀ ରୂପ? ବର୍ତ୍ତମାନ ତାଙ୍କୁ ଚାହିଁ ଭ୍ରୂପଲ୍ଲବ ସ୍ଥିର ରଖିବା କୌଣସି ନିସ୍ପୃହ ଈଶ୍ୱରଙ୍କର ମଧ ସାଧ୍ୟାତୀତ। ଗୋଟିଏ ଅବାଞ୍ଛିତ ରେଖାର ବି ଅସ୍ତିତ୍ୱ ନାହିଁ, ମୁଖାବୟବରେ। କେଶ ରଞ୍ଜିତ କରିବାର ପ୍ରୟୋଜନ ହୋଇନି। ଦୀଘଳ ଶରୀରରେ ନାହିଁ ସାମାନ୍ୟତମ

ମେଦ। ତାଙ୍କ ବକ୍ଷ, କଟି, ନିତମ୍ବ—ନିଶ୍ଚିତ ଭାବେ ଉର୍ବଶୀ କିମ୍ବା ରମ୍ଭା ପକ୍ଷରେ ଈର୍ଷଣୀୟ। ଏସବୁ ସଞ୍ଚିତ ଥିଲା, ଏମିତି ଏକ ଚନ୍ଦନ ରାତିରେ ଡାକ ଆସିବ ବୋଲି। ମୁକୁର ସାମ୍ନାରୁ ଆସିବା ମୁହୂର୍ତ୍ତରେ ପିକ ଡାକିଲା। ତିଷ୍ୟା ଷୋଡ଼ଶୀ ଭଳି ଓଠ ବଙ୍କେଇ ହସି ପକେଇଲେ।

ଦାସୀ ଦ୍ୱାରରେ ଦଣ୍ଡାୟମାନ। ଭଙ୍ଗୀ ଅବନତ। କହିଲା, ‘‘ପ୍ରଭୁ ବ୍ୟସ୍ତ ହେଉଛନ୍ତି, ତେଣୁ...ମୋର ଅପରାଧ ମାର୍ଜନା କରନ୍ତୁ।’’

ତା’ପରେ ମୁହଁ ଉଠେଇବା ମାତ୍ରେ ତା’ ଆଖିରେ ଫୁଟିଉଠିଲା ବିସ୍ମୟର ଚାହାଣି। ସେ କଣ ତା’ନିଜ ପ୍ରଭୁକନ୍ୟାଙ୍କୁ ଚିହ୍ନି ପାରୁନି? କିମ୍ବା ଯେଉଁ ବ୍ରହ୍ମଚାରିଣୀଟିକୁ ସେ ସର୍ବଦା ଦେଖିଥାଏ, ତା’ ସହିତ ଏ ମୋହିନୀ ରୂପକୁ ମିଳେଇ ପାରୁନି ଏଇ ମୁହୂର୍ତ୍ତରେ?

ତିଷ୍ୟା ସାମାନ୍ୟ ହସିଲେ। ପିତୃଦେବ ଯେ ଅଧୀର ହେବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଦୀର୍ଘ ତିରିଶ ବର୍ଷ ଧରି ତାଙ୍କ ହୃଦୟରେ ମଧ୍ୟ ଏକ ଭିନ୍ନ ପ୍ରକାରର ଚିତା ଜଳୁଛି। ଯେତେ ଅବାଧ ହେଲେ ବି ସେ’ତ କନ୍ୟା। ତା’ ମୁହଁ ଆଡ଼କୁ ଚାହିଁ ପାରନ୍ତି ନାହିଁ ସେ, ଛାତିରେ ପଥର ରଖି ଭାର ବହନ କରିଥିଲେ, କାରଣ ସେ ପାଟଳିପୁତ୍ର ମହାପୁତ୍ର-ଦ୍ରଂଷ୍ଟ; କିନ୍ତୁ ପ୍ରୋଜ୍ଝିତ। ତେଣୁ ତିଷ୍ୟା ଯେତେବେଳେ ତାଙ୍କଠୁଁ ଶଲ୍ୟବିଦ୍ୟାର୍ଜନ ପାଇଁ ଆବେଦନ କରିଥିଲା, ସେତେବେଳେ ସେ ସମ୍ମତ ହୋଇଥିଲେ। କାର୍ଯ୍ୟର ନିଶା ମଣିଷର ଅନ୍ୟ ଚିନ୍ତାକୁ ତରଳ କରେ। ପରାମାଣିକ-କୁଳପତି ଭାବରେ ସେ ଶଲ୍ୟ ବିଦ୍ୟାରେ ବିଶେଷ ପାରଦର୍ଶୀ। ବସ୍ତୁତଃ, ଦିବସର ଅଧିକ ସମୟ ତାଙ୍କର ବ୍ୟୟ ହୁଏ ବିବିଧ ଅସ୍ତ୍ରୋପଚାରରେ। ତିଷ୍ୟା ବର୍ତ୍ତମାନ ସବୁ କ୍ଷେତ୍ରରେ ତାଙ୍କର ସହାୟିକା, କେତେବେଳେ କେତେବେଳେ ସେ ସ୍ୱୟଂ ଶାସ୍ତ୍ର ଧାରଣ କରେ ଏବଂ ଶାସ୍ତ୍ର ପ୍ରୟୋଗରେ ଯେ ସେ କୁଶଳତା ଅର୍ଜନ କରିଛି—ଏ କଥା ପିତୃଦେବ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି। ତଥାପି ଆଜି ସେ ସଂଗତ କାରଣରେ ହିଁ ଅଧୀର। କନ୍ୟା ଯେତେ ବିଦ୍ୟାର୍ଜନ କରିଥାଉ ନା କାହିଁକି, କୌଣସି ପିତା ଚାହାନ୍ତି ନାହିଁ ସେ ପ୍ରୋଷିତଭର୍ତ୍ତୃକା ହୋଇଥାଉ। କେବଳ ନଷ୍ଟ ପୁରୁଷମାନେ ହିଁ ନାରୀଙ୍କୁ ଅଭିଭାବକହୀନ ଭାବରେ କାମନା କରିଥାନ୍ତି। ନିଜ ବୟସ କାରଣରୁ ପିତୃଦେବ ଏତେକାଳ ଚିନ୍ତିତ ଥିଲେ। ଆଜି ସେଇଥିପାଇଁ ସେ ଅସ୍ଥିର, ବ୍ୟଗ୍ର।

ତିଷ୍ୟାଙ୍କ ଆଳୟ ପ୍ରାସାଦତୁଲ୍ୟ ନୁହେଁ। ଅବଶ୍ୟ ସ୍ୱାଚ୍ଛଲ୍ୟର ନିଦର୍ଶନ ସର୍ବତ୍ର। ନିକଟରେ ଶଲ୍ୟତନ୍ତ୍ରାଗାର। ରାତ୍ରିର ଏଇ ନୀରବ ପ୍ରହରରେ ସୁଦ୍ଧା କିଛି ଲୋକ ସେଠାରେ ଅପେକ୍ଷାମାଣ। ପିତୃଦେବଙ୍କ ଅଧୀରତାର ସେଟା ବି ଏକ କାରଣ ହୋଇପାରେ। କନ୍ୟା ପ୍ରତି କର୍ତ୍ତବ୍ୟ ଶେଷ କରି ସେ ରୋଗୀମାନଙ୍କ ପାଖକୁ ଫେରିବାକୁ ଚାହାନ୍ତି।

କିନ୍ତୁ ତାକୁ ଦେଖି ପିତୃଦେବ ଯେ ଏମିତି ଚମକି ପଡ଼ିବେ, ତା' ସେ କଳ୍ପନା କରି ନ ଥିଲେ। ଏମିତିକି ରଥ ସାରଥି ଆଖିରେ ମଧ ବିସ୍ମୟ। କିନ୍ତୁ ମୁକୁରରେ ତ କୌଣସି ଭ୍ରାନ୍ତି ଧରାପଡ଼ିନି। ସେ ରଥ ନିକଟବର୍ତ୍ତୀ ହେବା ମାତ୍ରେ ପିତୃଦେବଙ୍କ ନିଃଶ୍ୱାସ ପତିତ ହେଲା, "ଆସ। ଆମର ଯଥେଷ୍ଟ ବିଳମ୍ବ ହେଲାଣି। ସମ୍ରାଟ ଅପେକ୍ଷା କରିଛନ୍ତି।"

ତିଷ୍ୟା ନୀରବରେ ରଥରେ ଉପବେଶନ କଲାମାତ୍ରେ ସାରଥି ରଥ ଚାଳନା କଲା। ଆଜି ନଗରୀର କେଉଁଠି ଆଲୋକ ପ୍ରଜ୍ୱଳିତ କରିବାର ପ୍ରୟୋଜନ ହୋଇନି। ତିଷ୍ୟା ପତି ସଂଦର୍ଶନରେ ଯିବେ ବୋଲି ଚନ୍ଦ୍ରଦେବ ନଗରୀକୁ ପ୍ଲାବିତ କରିଛନ୍ତି ସ୍ନିଗ୍ଧ ଆଲୋକରେ! ସୁଯୋଗ-ସନ୍ଧାନୀ ପ୍ରେମିକ-ପ୍ରେମିକାଗଣ ପାର୍ଶ୍ୱବର୍ତ୍ତୀ ବୃକ୍ଷ ତଳେ ମଗ୍ନ। ଅନାବିଳ ଆନନ୍ଦର ସ୍ରୋତ ବହିଯାଉଛି ଚତୁର୍ଦ୍ଦିଗରେ। ପିତୃଦେବ କହିଲେ, "ସମ୍ରାଟ ଆଜି ଘୋଷଣା କରିଛନ୍ତି, ନଗରୀର କୌଣସି ନାଗରିକକୁ ଏ ବର୍ଷର କର ଦେବାକୁ ପଡ଼ିବ ନାହିଁ। ସମସ୍ତେ ଖୁବ୍ ଖୁସୀ।"

କେତେବେଳେ କେତେବେଳେ ପ୍ରାପ୍ତି ମଣିଷକୁ ଉଦାର କରେ। ତିରିଶ ବର୍ଷ ପୂର୍ବର ମଣିଷଟି କିନ୍ତୁ କୌଣସି ପ୍ରାପ୍ତିରେ ହିଁ ସୁଖୀ ନ ଥିଲେ। ତାଙ୍କଠୁଁ ଉଦାରତା ଆଶା କରିବା ଥିଲା ବାତୁଳତା। ଏଇ ଦୀର୍ଘକାଳର ସମସ୍ତ ଖବର ରଖିଛନ୍ତି ତିଷ୍ୟା। ସେଇ ତରୁଣ, ରାଜା ବିନ୍ଦୁସାରଙ୍କ ମୃତ୍ୟୁ ପରେ ସିଂହାସନ ଆରୋହଣ କରିଛନ୍ତି। ସେତେବେଳେ ସାରା ଦେଶରେ ତାଙ୍କ ଅସ୍ତ୍ରର ଝଣତ୍କାର ଅନୁରଣିତ ହୋଇଉଠିଥିଲା। ସାମାନ୍ୟତମ ପ୍ରତିରୋଧ ହେଲେ ହିଁ ଘରେ ଘରେ ରୋଦନର କରୁଣ ଶବ୍ଦ ସୃଷ୍ଟି ନ କଲା ଯାଏଁ ହସ ଫୁଟୁ ନ ଥିଲା ତାଙ୍କ ମୁହଁରେ। ଲାଳସା, ଭୋଗ ଏବଂ ବ୍ୟସନର ନାନା କାହାଣୀ ପଲ୍ଲବିତ ହୋଇ ଯେତେବେଳେ କାନରେ ଆସି ବାଜୁଥିଲା, ସେତେବେଳେ ନିଜ ଦେହକୁ ଆହୁରି ଅପବିତ୍ର ମନେ ହେଉଥିଲା ତିଷ୍ୟାକୁ। କିନ୍ତୁ ତଥାପି ଛାତି ଭିତରେ କମ୍ପନ ହେଉଥିଲା। ଦ୍ୱିତୀୟ କୌଣସି ପୁରୁଷର ଚିନ୍ତା ବି ମହାପାପ ବୋଲି ମନେ ହେଉଥିଲା। ଆଖି ସାମ୍ନାରେ, ମନଦର୍ପଣରେ ଗୋଟିଏ ଚଞ୍ଚଳ ତରୁଣର ଛବି ଅହରହ ଫୁଟି ଉଠିଥିଲା, ଯା' ଚୁମ୍ବନରେ ଗୋକ୍ଷୁରର ଦଂଶନ, ଯା' ବର୍ତ୍ତମାନ ବି ଭାବନାରେ ଆସିଲେ ଦେହକୁ ନିଶ୍ଚଳ କରିଦିଏ।

କିନ୍ତୁ ହଠାତ୍ ଦିନେ ଶୁଣାଗଲା, ସେଇ ସ୍ୱାର୍ଥସର୍ବସ୍ୱ ତରୁଣ ଅସ୍ତ୍ର ତ୍ୟାଗ କରି ବୁଦ୍ଧଙ୍କ ଶରଣ ନେଇଛି! ମଣିଷର ଉପକାରରେ ନିଜକୁ ନିୟୋଜିତ କରିଛି। ଏସବୁ କାହାଣୀ ଭାସିଆସିଛି ଦେଶର ବିଭିନ୍ନ ପ୍ରାନ୍ତରୁ। ତିଷ୍ୟା ଏସବୁ ଶୁଣି ବିଶ୍ୱାସ ଅବିଶ୍ୱାସରେ କମ୍ପିଛି, କିନ୍ତୁ କେତେବେଳେ ବି ନିଜର ଅସ୍ତିତ୍ୱ ଜଣାଇ ତାଙ୍କର ଦ୍ୱାରସ୍ଥ ହୋଇନି। ପିତୃଦେବ କିନ୍ତୁ ତାଙ୍କର ପରିବର୍ତ୍ତିତ ସ୍ୱଭାବର ସମ୍ବାଦ ପାଇ ତାଙ୍କ ସହିତ ଯୋଗାଯୋଗ କରିବାକୁ ଚାହୁଁଥିଲେ। କିନ୍ତୁ ବାଧା ଦେଇଛନ୍ତି ତିଷ୍ୟା! ନା, କାହାରି କରୁଣାର

ପ୍ରତ୍ୟାଶିନୀ ନୁହଁନ୍ତି ସେ। ଯଦି ତାଙ୍କ ହୃଦୟରେ ଈଶ୍ୱର 'ବୋଧ' ସୃଷ୍ଟି କରନ୍ତି, ଯେଉଁ ବୋଧ ତାଙ୍କୁ ଅନୁଶୋଚନା ଏବଂ ପ୍ରାୟଶ୍ଚିତ୍ତ କରିବାକୁ ଶିକ୍ଷା ଦେବ, ସେତେବେଳେ ସେ ଆସିବେ ତା' ପାଖକୁ ଭିକ୍ଷୁକ ଭଳି ଏବଂ ସେତେବେଳେ ହିଁ ସେ ହେବେ ପ୍ରକୃତ ପବିତ୍ର।

ସେ ଆସିଛନ୍ତି ଆଜି ପ୍ରଭାତରେ। ସମ୍ରାଟଙ୍କ ସୈନ୍ୟସାମନ୍ତ ଶିବିର ସ୍ଥାପନ କରିଛନ୍ତି ନଗରୀର ଉପାନ୍ତରେ।

ଏ ଶିବିର ଓ ସୈନ୍ୟସଜ୍ଜା ଦେଖି ପ୍ରତ୍ୟେକ ନଗରବାସୀ ଉଦ୍‌ବିଗ୍ନ। କିନ୍ତୁ ଏ ଉଦ୍‌ବିଗ୍ନ ଭାବ କଟିଲା ସେତିକିବେଳେ, ଯେତେବେଳେ ସେମାନେ ଶୁଣିଲେ ଯେ ସମ୍ରାଟ ଯେଉଁ ଅଭିଯାନରେ ଆସିଛନ୍ତି—ତା' ଭିନ୍ନ ପ୍ରକାର। ଏଇ ନଗରୀର ପରାମାଣିକ କୁଳପତି-କନ୍ୟାକୁ ସେ ପତ୍ନୀର ସ୍ୱୀକୃତି ଦେଇ ଫେରେଇ ନେବାକୁ ଚାହାଁନ୍ତି। ସମ୍ରାଟଙ୍କର ଏ ସୁବୁଦ୍ଧି ଉଦୟ କେଉଁ କାରଣରୁ, ତିଷ୍ୟା ଜାଣିନାହାନ୍ତି। ବର୍ତ୍ତମାନ ବି ତାଙ୍କ ରାଜପ୍ରାସାଦରେ ରାଣୀ ପଦ୍ମାବତୀ ଅଛନ୍ତି। ତିରିଶ ବର୍ଷ ପରେ କେଉଁ ଶଳାକା ତାଙ୍କ ଜ୍ଞାନଚକ୍ଷୁ ଉନ୍ମୀଳିତ କଲା, ତା ଜାଣିବାକୁ ତିଷ୍ୟାଙ୍କର ଭାରି ଆଗ୍ରହ ହେଉଥିଲା। ବୋଧହୁଏ ତାଙ୍କୁ ପାଇବା ସୁଖରେ ଆଜି ସମ୍ରାଟ ଉଦାର ହୋଇଛନ୍ତି। କର ଛାଡ଼ି ଦେଇଛନ୍ତି। ସେ ବୁଦ୍ଧଙ୍କ ଶିଷ୍ୟ ହୋଇଛନ୍ତି ବୋଲି ତ ସନ୍ନ୍ୟାସୀ ହୋଇଯାଇ ନାହାନ୍ତି। ତାଙ୍କ ରାଜତ୍ୱରେ ରାଜକାର୍ଯ୍ୟ ସମାନ ତାଳରେ ଚାଲିଛି। ସେଠି ନିର୍ଦ୍ଦୋଷ ମଧ୍ୟ ଶାସ୍ତି ପାଏ, କାରଣ ସର୍ବତ୍ର ବୁଦ୍ଧଙ୍କ ବାଣୀ ଅନୁସାରେ କାର୍ଯ୍ୟ ହୁଏ ନାହିଁ। ତା' ଛଡ଼ା ଗୃହୀର ସଂସାରରେ ଈଶ୍ୱର ରହନ୍ତି କୌଣସି ଏକ ବିଶେଷ ପ୍ରକୋଷ୍ଠରେ।

ସବୁ ପ୍ରକୋଷ୍ଠ ଯଦି ଈଶ୍ୱରଙ୍କ ପାଇଁ ବ୍ୟବହାର କରାହେଉଥାନ୍ତା, ତେବେ ଗୃହୀକୁ ରାଜପଥକୁ ଓହ୍ଲେଇ ଆସିବାକୁ ପଡ଼ିଥାନ୍ତା। ସେ ଯେତେ ବୌଦ୍ଧ-ହୁଅନ୍ତୁ ନା କାହିଁକି, ତାଙ୍କୁ ବି ଶାସନ କରିବାକୁ ପଡ଼େ। କେତେବେଳେ କେତେବେଳେ ଏମିତି ଉଦାହରଣ ତାଙ୍କୁ ହୁଏତ ଆହୁରି ମହତ୍ କରି ତୋଳେ।

ରଥ କ୍ରମଶଃ ନଗରୀର ପ୍ରଧାନ ବହିର୍ଦ୍ୱାରରେ ଉପସ୍ଥିତ ହେଲା। ସମ୍ରାଟ ନଗରରେ ପ୍ରବେଶ କରି ନାହାନ୍ତି। ଦୂତ ମୁଖରେ ସମ୍ବାଦ ପ୍ରେରଣ କରି ଅପେକ୍ଷାରେ ଅଛନ୍ତି ବୋଲି ପ୍ରଧାନ ଦ୍ୱାର ଏ ନିଶାକାଳରେ ମଧ୍ୟ ଉନ୍ମୁକ୍ତ। ସେମାନଙ୍କ ରଥ ଦ୍ୱାର ଅତିକ୍ରମ କଲାମାତ୍ରେ ସମ୍ମୁଖରେ ଭେରୀ ବାଜିଉଠିଲା। ଏକ ଶିକ୍ଷିତ ସୈନ୍ୟବାହିନୀ ପ୍ରସ୍ତୁତ ହୋଇଥିଲା। ସେମାନେ ଭେରୀ ବଜେଇ ରଥ ସମ୍ମୁଖରେ ଚାଲିବାକୁ ଲାଗିଲେ। ପିତୃଦେବ ନିମ୍ନସ୍ୱରରେ କହିଲେ, ''ସମ୍ରାଟ କେବଳ ମହାନୁଭବ ହିଁ ନୁହନ୍ତି, ଆମକୁ ଯଥେଷ୍ଟ ସମ୍ମାନ ଜଣଉଛନ୍ତି, ନା କ'ଣ ?''

ତିଷ୍ୟା ଉତ୍ତର ଦେଲେନି। ତାଙ୍କର ସମସ୍ତ ଶରୀରରେ ରୋମାଞ୍ଚ, ହୃଦୟରେ କମ୍ପନ। ଶରୀର ଏମିତି ଅବଶ କାହିଁକି ହୋଇଯାଉଛି ? ଚତୁର୍ଦ୍ଦିଗରେ ମୃଦୁ ବାଦ୍ୟବୃନ୍ଦର

ମଧୁର ଶବ୍ଦ। ତଥାପି କିଛି ଯେମିତି କର୍ଣ୍ଣ କୁହରରେ ପ୍ରବେଶ କରୁନି। ଏଇ ମୁହୂର୍ତ୍ତରେ ହୃତ୍‌ପିଣ୍ଡକୁ ହାତରେ ଧରି ନିରୀକ୍ଷଣ କରିହୁଏ। ପିତୃଦେବ କହିଲେ, "ଆଖି ମେଲି ଚାହଁ।"

ଏଇ ସମୟରେ ଧ୍ୱନି ଉଠିଲା, "ମହାରାଣୀଙ୍କ ଜୟ ହେଉ। ତଥାଗତଙ୍କ ଆଶୀର୍ବାଦ ତାଙ୍କୁ ଧନ୍ୟ କରୁ।"

ସମସ୍ୱରରେ ସେଇ ଧ୍ୱନି ବିସ୍ତାରିଗଲା ଆକାଶରେ, ପବନରେ। ତିଷ୍ୟା ଏଥର ପିତୃଦେବଙ୍କ ଆଡ଼କୁ ଚାହିଁଲେ। କି ପ୍ରଶାନ୍ତରେ ଭରି ଯାଇଛି ତାଙ୍କର ମୁଖମଣ୍ଡଳ, ବାର୍ଦ୍ଧକ୍ୟର ସ୍ଥବିରତା ଏଇ ମୁହୂର୍ତ୍ତରେ ଉଭେଇ ଯାଇଛି। କନ୍ୟା ଗର୍ବରେ ଗର୍ବିତ ପିତାଙ୍କୁ ଉଜ୍ଜ୍ୱଳ ଦେଖାଯାଉଛି। ଆଉ ନିଜେ ତିଷ୍ୟା? ସେ ମହାରାଣୀ? ଏଇ ସମ୍ରାଜ୍ୟର?

କ୍ରମଶଃ ସେମାନଙ୍କୁ ବାଟ କଢ଼େଇ ନିଆଗଲା ସେଇ ଶିବିର ମଧ୍ୟକୁ, ଯେଉଁଠି ସାକ୍ଷାତର ଆୟୋଜନ ସମ୍ପୂର୍ଣ୍ଣ। କକ୍ଷରେ ଜଣେ ଗୃହପତି ଦଣ୍ଡାୟମାନ ଥିଲେ। ଦର୍ଶନମାତ୍ରେ ସେ ଉଚ୍ଚାରଣ କଲେ—"ସୁଖଂଯାବ ଜରା ସୀଲଂ ସୁଖା ସୁଦ୍ଧା ପ୍ରତିଷ୍ଠିତା।" ପିତୃଦେବ ନିମ୍ନସ୍ୱରରେ ଜଣେଇଲେ, "ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ଶୀଳ ପାଳନ ହିଁ ସୁଖକର। ଶ୍ରଦ୍ଧାରେ ପ୍ରତିଷ୍ଠିତ ହେବା ହିଁ ସୁଖଦାୟକ।"

ଏସବୁ କଥା ଏଠି ଏଇ ସମୟରେ କାହିଁକି ଉଚ୍ଚାରିତ ହେଉଛି? ତିଷ୍ୟାଙ୍କ ଚିବୁକ ଶକ୍ତ ହେଲା। ସମ୍ରାଟ ତ୍ରିଶରଣ ନେଇଛନ୍ତି। ବୌଦ୍ଧଗୃହୀ ଭାବରେ ସେ ବୌଦ୍ଧ ଧର୍ମ ଏବଂ ସଂଘର ଉପାସକ। କିନ୍ତୁ ସେ ଶ୍ରମଣ ନୁହଁନ୍ତି। ସେ ପ୍ରବ୍ରଜିତ ନୁହଁନ୍ତି।

କେଶଶ୍ମଶ୍ରୁ ବର୍ଜନ କରି କଷାୟ ବସ୍ତ୍ର ପରିଧାନ କରି ଦିନ ଯାପନ କରନ୍ତି ନାହିଁ। ତା'ଛଡ଼ା ବୌଦ୍ଧଗୃହୀ କଣ ତାର ନିଜସ୍ୱ ଧର୍ମ କର୍ମ କରି ମଧ୍ୟ ଗୃହୀର ଜୀବନଯାପନ କରେ ନାହିଁ? ତା'ହେଲେ ଏତେ ବର୍ଷ ପରେ ଯେତେବେଳେ ସାକ୍ଷାତର ସମୟ ଆସିଲା, ସେତେବେଳେ ଏ ମନ୍ତ୍ର କାହିଁକି ଉଚ୍ଚାରିତ ହେଲା? ସନ୍ଦେହ ହେଲା ତିଷ୍ୟାଙ୍କର। ସେ ଶୁଣିଲେ ପିତୃଦେବ ଯୋଡ଼ହସ୍ତରେ କହୁଛନ୍ତି—"ସମ୍ରାଟ ନିବେଦନ କରନ୍ତୁ।"

"ସେ ମୋତେ ସ୍ୱାଗତ ଜଣାଇବାକୁ ଆଦେଶ ଦେଇଛନ୍ତି।" ଗୃହପତିଙ୍କ କଥା ଶେଷହେବା ମାତ୍ରେ ଆଉ ଗୋଟିଏ କଣ୍ଠ ଶୁଭିଲା, "ତୁମେ ଏଥର ଯାଇପାର।"

ଚକିତ ଦୃଷ୍ଟି ତୋଳି ଚାହିଁଲେ ତିଷ୍ୟା। ବାକ୍‌ଶକ୍ତି ରହିତ। ଚକ୍ଷୁ ସ୍ଥିର। ଆଉ ଯିଏ ତାଙ୍କୁ ଦର୍ଶନ କରୁଛନ୍ତି, ଏଇ ମୁହୂର୍ତ୍ତରେ ତାଙ୍କ ଭଳି ମୋହିତ ପ୍ରାପିତ ପୃଥିବୀରେ ଆଉ କିଏ?

ଶେଷରେ ଆତ୍ମସମ୍ବରଣ କଲେ ସମ୍ରାଟ। ମନେମନେ କହିଲେ, ''ହେ ତଥାଗତ, ମୁଁ ଯଦି କହି ପାରନ୍ତି ମୋ ଚିତ୍ତ ସଂସ୍କାରମୁକ୍ତ ଏବଂ ତୃଷ୍ଣାର କ୍ଷୟ ହୋଇଛି!''

ପିତୃଦେବ ଯେମିତି ବିହ୍ୱଳ! କିନ୍ତୁ ଅଭିଜ୍ଞତା ତାଙ୍କୁ ଚେତନାକୁ ଫେରେଇ ଆଣିଲା। ସେ କହିଲେ, ''ସମ୍ରାଟ! ଏଇ ମୋର କନ୍ୟା, ଆପଣଙ୍କ ବିବାହିତା ପତ୍ନୀ, ତିଷ୍ୟା।''

ସମ୍ରାଟ କହିଲେ, ''ଆପଣ ମୋର ଅପରାଧ ମାର୍ଜନା କରନ୍ତୁ। ସ୍ୱଳ୍ପ ବୟସର ଚାପଲ୍ୟ ମୋର ମତିଭ୍ରମ ଘଟାଇଥିଲା। ତା'ପରେ ମୁଁ ଯୌବନର ଆବେଗରେ ସବୁ ବିସ୍ମୃତ ହୋଇଥିଲି। ବର୍ତ୍ତମାନ ମୁଁ ଭଗବାନ ବୁଦ୍ଧଙ୍କ ଉପାସକ। ତାଙ୍କୁ ଆହୁରି ନିବିଡ଼ କରି ପାଇବାକୁ ଚାହେଁ। ଶ୍ରମଣରୂପେ ଜୀବନଯାପନ ପରେ ଉପସଂପଦା ପ୍ରାର୍ଥନା କରିବାକୁ ଚାହେଁ। କିନ୍ତୁ ତଥାଗତଙ୍କ ଉପଦେଶ ହେଲା, ସବୁପ୍ରକାର ପାପରୁ କେବଳ ନିବୃତ୍ତି ନୁହେଁ, ସେଥି ସହିତ ଚିତ୍ତ ବିଶୋଧନର ମଧ୍ୟ ସର୍ବାଦୌ ପ୍ରୟୋଜନ ରହିଛି। ମୋ ଗୁରୁ ଉପଗୁପ୍ତଙ୍କ ନିର୍ଦ୍ଦେଶରେ ତେଣୁ ନିଜ ଜୀବନ ସମୀକ୍ଷା କରିବାକୁ ଯାଇ ସେଇ ଅନ୍ୟାୟ କଥା ମନେପଡ଼ିଲା। ହଁ, ଆଜି ମୁଁ ଅନୁତପ୍ତ। ଆପଣଙ୍କ କନ୍ୟା ପ୍ରତି ଦିନେ ବର୍ବର ପରି ଆଚରଣ କରିଥିଲି...ମୋର ସେ ଅପରାଧ ମାର୍ଜନା କରନ୍ତୁ। ମୁଁ ତାଙ୍କୁ ମଗଧ ଫେରେଇ ନେଇଯିବାକୁ ଚାହେଁ।''

'ନା', ହଠାତ୍ ଗୋଟିଏ ଶବ୍ଦ ଛିଟ୍‌କି ଆସିଲା ତିଷ୍ୟାଙ୍କ କଣ୍ଠାଭ୍ୟନ୍ତରରୁ ଏବଂ ସେଇ ଗୋଟିଏ ଶବ୍ଦ ଯେମିତି ମୁହୂର୍ତ୍ତକ ମଧ୍ୟରେ ପ୍ରାଚୀର ତୋଳିଦେଲା ମାର୍ଜନାପ୍ରାର୍ଥୀ ଏବଂ ତାଙ୍କ ମଧ୍ୟରେ!

ସମ୍ରାଟ ତ ନିଶ୍ଚୟ, ପିତୃଦେବ ମଧ୍ୟ ସଚକିତ ହୋଇ ଚାହିଁ ରହିଲେ ତିଷ୍ୟାଙ୍କ ଆଡ଼କୁ। ସେତେବେଳକୁ ସେ ଦୁଇ ହାତ ଆଡୁଆଳରେ ମୁହଁ ଢାଙ୍କିଛନ୍ତି। ଘନଘନ ଆନ୍ଦୋଳିତ ହେଉଛି ତାଙ୍କର ସୁବିନ୍ୟସ୍ତ କେଶରାଜି। ସେଇ ଅବସ୍ଥାରେ ଆହତ ହରିଣୀର ସ୍ୱରରେ ସେ ଆଉ ଥରେ ଉଚ୍ଚାରଣ କଲେ—''ନା, କେବେ ନୁହେଁ!''

ପିତୃଦେବ ବିସ୍ଫାରିତ ଦୃଷ୍ଟି ତୋଳି ପ୍ରଶ୍ନ କଲେ,''କଣ କହୁଛ ତୁମେ? କେଉଁ ବିଷୟରେ 'ନା' କହୁଛ?''

ଧୀରେ ଧୀରେ ମୁହଁ ଉଠେଇଲେ ସେ। ନୟନ ପ୍ରାନ୍ତରେ ସମ୍ରାଟଙ୍କୁ ଚାହିଁ ଶିହରି ଉଠିଲେ। କହିଲେ, ''ନା, ମୋ ପକ୍ଷରେ ମଗଧ ଯିବା ସମ୍ଭବ ନୁହେଁ।''

''କିନ୍ତୁ କାହିଁକି? ଆମେ ତ ସେଇଥିପାଇଁ ହିଁ ଆସିଛୁ! ଏ ସେଇ ଶୁଭଲଗ୍ନ, ଯାହା ପାଇଁ ଆମେ ତିରିଶିଟା ବର୍ଷ ଅପେକ୍ଷା କରିଛୁ। କାହିଁକି ତୁମେ ମଗଧ ଯିବାକୁ ସମ୍ମତ ହେଉ ନାହଁ?'' ଅସହାୟ ଭଙ୍ଗୀରେ ପ୍ରଶ୍ନକଲେ ପିତୃଦେବ।

''କାରଣ ଆମ ସମ୍ମୁଖରେ ଯିଏ ଦଣ୍ଡାୟମାନ, ସେ ମୋର ସ୍ୱାମୀ ନୁହଁନ୍ତି।''

''ସ୍ୱାମୀ ନୁହଁନ୍ତି? କି ଆଶ୍ଚର୍ଯ୍ୟ! ଇଏ କଣ ସମ୍ରାଟ ନୁହଁନ୍ତି? ଇଏ ମହାରାଜା ବିନ୍ଦୁସାରଙ୍କ ପୁତ୍ର ନୁହଁନ୍ତି? ତୁମର କଣ ବୁଦ୍ଧିଭ୍ରଂଶ ହେଲାଣି? ଅଙ୍ଗ, ମଗଧ,

କାଶୀ, କୋଶଳ, ବୃଜି, ମଲ୍ଲ, ଚେଦି, ବତ୍ସ, କୁରୁ, ପାଞ୍ଚାଳ, ମତ୍ସ୍ୟ, ଶୂରସେନ୍ ଅଶ୍ମକ, ଅବନ୍ତୀ, ଗାନ୍ଧାର ଏବଂ କନୌଜ ପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି ଆମେ ଆଜି କାହା ସମ୍ମୁଖରେ ଛିଡ଼ା ହେବାର ସୌଭାଗ୍ୟରେ ସୌଭାଗ୍ୟାନିତ୍ୱ। ଆଉ ତୁମେ କହୁଛ—'' ପିତୃଦେବ କ୍ରମଶଃ ଉତ୍ତେଜିତ ହୋଇ ଉଠୁଥିଲେ। ତାଙ୍କ କଣ୍ଠ ରୁଦ୍ଧ ହୋଇ ଆସିଲା।...

ଏଇ ସମୟରେ ସମ୍ରାଟ କହିଲେ—''ଆପଣ ଉତ୍ତେଜିତ ହୁଅନ୍ତୁ ନାହିଁ। ଯଦି ଆପଣଙ୍କ ଆପତ୍ତି ନ ଥାଏ ତେବେ ଭଦ୍ରାଂକ ସହିତ ମୁଁ ଏକାନ୍ତରେ କିଛି କଥା ହେବାକୁ ଚାହେଁ। ତାଙ୍କର ଏଭଳି ମନୋଭାବ ମୋତେ ବିସ୍ମିତ କରିଛି।''

ପିତୃଦେବ ଆତ୍ମସମ୍ବରଣ କଲେ। କନ୍ୟାର ଏ ଆକସ୍ମିକ ପରିବର୍ତ୍ତନର କୌଣସି ଅର୍ଥ ଖୋଜି ପାଉ ନ ଥିଲେ, ସେ। ବର୍ତ୍ତମାନ ସମ୍ରାଟଙ୍କ ଇଚ୍ଛାକଥା ଜାଣିପାରି ଅଭିବାଦନ ଜଣାଇ ଦ୍ରୁତ ଦ୍ୱାର -ଅତିକ୍ରମ କଲେ। ତିଷ୍ୟା ମୁହଁ ଫେରେଇ ବସିଥିଲେ। କକ୍ଷରେ ସ୍ନିଗ୍ଧ ଆଲୁଅ ଜଳୁଛି। ତାର ଛାୟା ନିୟତ କମ୍ପମାନ। ତିରିଶ ବର୍ଷ ଧରି ସଯତ୍ନଲାଳିତ ଏକ ଚିତ୍ର ଏଇ ମୁହୂର୍ତ୍ତରେ ଛିନ୍ନଭିନ୍ନ। ଏ କଠୋର ବାସ୍ତବ ସେ ସହ୍ୟ କରି ପାରୁ ନ ଥିଲେ। ଠିକ୍ ଏଇ ସମୟରେ ସମ୍ରାଟ ଆଉ ଟିକିଏ ନିକଟରେ ଆସନ ଗ୍ରହଣ କଲେ। ''ମୋର ଅନ୍ୟାୟର ପ୍ରାୟଶ୍ଚିତ୍ତ କରିବାକୁ ଆସିଛି। କିନ୍ତୁ ଶରଣାଗତକୁ ଆଶ୍ରୟ ଦେବା ପରିବର୍ତ୍ତେ ଏଭଳି ବ୍ୟବହାରର କାରଣ କଣ ? ତୁମେ କଣ ମୋତେ ଚିହ୍ନି ପାରୁନାହଁ, ଭଦ୍ରେ ?''

ତିଷ୍ୟା ଉତ୍ତର ଦେଲେନି। ତେବେ ସମ୍ରାଟ ଯେ ଏକ ସମ୍ମାନଜନକ ବ୍ୟବଧାନ ରଖି ଆସନ ଗ୍ରହଣ କରିଛନ୍ତି—ଏଥିରେ ସେ ଆଶ୍ୱସ୍ତ ହେଲେ।

ସମ୍ରାଟ ପୁଣି କହିଲେ, ''ତୁମର ପିତୃଦେବ ଯେଉଁ ଷୋଡ଼ଶ ମହାଜନପଦର ନାମ ଉଲ୍ଲେଖ କଲେ ସେଟା ବାହ୍ୟ; ମୁଁ ତୁମଠୁଁ ଜାଣିପାରେ କି ମୋ ଅସ୍ତିତ୍ୱ ଅସ୍ୱୀକାରର କାରଣ ?''

ତିଷ୍ୟା ଏଥର ସ୍ୱଚ୍ଛ ଆଖିରେ ଚାହିଁଲେ। ଯଦିଓ ତାଙ୍କ ମୁଖାବୟବରେ ବର୍ଷଣର ଛାୟା ବିଦ୍ୟମାନ, ଜମାଟ ମେଘର ସ୍ଥିର ଅକମ୍ପିତ ଗାମ୍ଭୀର୍ଯ୍ୟ, ତଥାପି ସେ ଆଉ ଥରେ ଚେଷ୍ଟା କଲେ ନିର୍ଲିପ୍ତ ହେବାପାଇଁ...ନିସ୍ପୃହ ଭଙ୍ଗୀରେ ସାମ୍ନାର ମଣିଷଟିକୁ ଦେଖିବା ପାଇଁ। କିନ୍ତୁ ଏ କେଉଁ ମଣିଷକୁ ଦେଖୁଛନ୍ତି ସେ ? ସୌନ୍ଦର୍ଯ୍ୟର ଏମିତି ଅପମାନ କଦାପି ଈଶ୍ୱରଙ୍କ ହାତରେ ହୋଇନି। ଈଶ୍ୱର ଅସୁନ୍ଦରକୁ ମଧ୍ୟ ଏମିତି କିଛି ସମ୍ପଦ ଦିଅନ୍ତି, ଯା'ତାର ତ୍ରୁଟିକୁ ଢାଙ୍କିଦିଏ।

ସେଇ ଷୋଳ ସତର ବର୍ଷର, ଇନ୍ଦ୍ରଙ୍କର ବି ଈର୍ଷାର କାରଣ ତରୁଣଟିକୁ ଗୋଟିଏ ଜରାଗ୍ରସ୍ତ କୁଞ୍ଚିତ-ଚର୍ମ ବୃଦ୍ଧରେ ରୂପାନ୍ତର, ନିଶ୍ଚୟ କୌଣସି ଈଶ୍ୱର କରିନାହାନ୍ତି। ତିରିଶ ବର୍ଷର ପ୍ରତିଟି ପଳଉପପଳ ଯେଉଁ ଚିତ୍ରଟି ହୃଦୟ ଛୁଇଁ ରହିଥିଲା, ଯାହାକୁ

ସେ କାମନା କରିଛନ୍ତି ସମସ୍ତ ଅନ୍ତରାତ୍ମାରେ, ତା' ବୟସ ସତର, ତା'ର ପ୍ରତି ପଦକ୍ଷେପରେ ତାରୁଣ୍ୟର ଦୀପ୍ତି। କାର୍ତ୍ତିକ-କାନ୍ତି ସେ ତରୁଣ ସହିତ ଏଇ ବୃଦ୍ଧର କୌଣସି ସାମଞ୍ଜସ୍ୟ ନାହିଁ। ଏହି ମଣିଷଟିକୁ ସେ ନିଜର ସ୍ୱାମୀଭାବରେ କେମିତି ସ୍ୱୀକାର କରିନେବେ ?

ସମ୍ରାଟ ସ୍ଥିରଦୃଷ୍ଟିରେ ଚାହିଁଥିଲେ, "ତିଷ୍ୟା, ମୁଁ ତୁମକୁ ଦେଖୁଥିଲି। ସମୟ ତୁମ ପାଖରେ ସ୍ତବ୍ଧ ହୋଇଯାଇଛି। ଜାଣେନା, କେଉଁ କୌଶଳରେ ତୁମେ ଯୌବନକୁ ଏମିତି ଆୟତ୍ତ କରି ରଖିଛ। କିନ୍ତୁ ସତରେ ତୁମେ ସୁନ୍ଦର। ତଥାଗତ ତୁମର ମଙ୍ଗଳ କରନ୍ତୁ।"

"ଆଃ ଚୁପ୍ କରନ୍ତୁ। କବଚ ଭଳି ତଥାଗତଙ୍କ ନାମ ବ୍ୟବହାର କରନ୍ତୁ ନାହିଁ।" ତିଷ୍ୟା ଭୁଲିଗଲେ ସେ ଏଇ ମୁହୂର୍ତ୍ତରେ ସେଇ ସମ୍ରାଟଙ୍କ ସମ୍ମୁଖରେ ବସିଛନ୍ତି, ସିଂହାସନ ପାଇଁ ଯିଏ ଶତ ଭ୍ରାତାଙ୍କୁ ସୁଦ୍ଧା ହତ୍ୟା କରିବାକୁ ଦ୍ୱିଧା କରିନାହାନ୍ତି।

ସମ୍ରାଟ ମୃଦୁ ହସିଲେ, "ମୁଁ ତାଙ୍କର ଶରଣ ନେଇଛି। ତାଙ୍କ ଆଶ୍ରୟରେ ମୁଁ ଆଶ୍ରିତ। କିନ୍ତୁ ଭଦ୍ରେ, ମୁଁ ମୋର ପ୍ରଶ୍ନର ଉତ୍ତର ଏ ପର୍ଯ୍ୟନ୍ତ ପାଇନାହିଁ।"

ତିଷ୍ୟା ସାମାନ୍ୟ ଇତସ୍ତତଃ ହୋଇ କହିଲେ, "ବେଶ୍। ତେବେ ସତ୍ୟ କଥା ଶୁଣନ୍ତୁ। ଆପଣଙ୍କ ସମ୍ରାଟ ହୋଇ ପାରନ୍ତି, କିନ୍ତୁ ମୋ ସ୍ୱାମୀ ନୁହଁନ୍ତି।"

ସମ୍ରାଟ ବିସ୍ମିତ ହେଲେ—"କିନ୍ତୁ ମୁଁ ଆଶ୍ରମାଧିପତିଙ୍କ ନିର୍ଦ୍ଦେଶରେ ତୁମକୁ ଶାସ୍ତ୍ରମତରେ ବିବାହ କରିଥିଲି।"

—"ବିବାହ କରିନଥିଲେ। କରିବାକୁ ବାଧ୍ୟ ହୋଇଥିଲେ।"

—"ହୁଏତ। କିନ୍ତୁ ବିବାହଟା ସତ୍ୟ ଘଟଣା।"

—"କିନ୍ତୁ ସେ ଆପଣ ଭିନ୍ନ ମଣିଷ। ମୁଁ ଏ ତିରିଶ ବର୍ଷ କାଳ ତାଙ୍କରି ପାଇଁ ଅପେକ୍ଷା କରିଛି। ମୋର ଦେହ, ଯୌବନ ସବୁ ତାଙ୍କ ପାଇଁ। ଆଉ ଆପଣ ? ଅତି ଅତ୍ୟାଚାରରେ ଆପଣଙ୍କ ଶରୀର ଜରାଗ୍ରସ୍ତ। ଜଣେ କାମାଚାରୀ ନିଷ୍ଠୁର ମଣିଷକୁ ଈଶ୍ୱର କେବେ କ୍ଷମା ଦିଅନ୍ତି ନାହିଁ। ସେ ଆପଣଙ୍କ ଶରୀରକୁ ଗଳିତ କରିଛନ୍ତି। ଆଉ ଏସବୁ ହେବା ପରେ ଆପଣ ତଥାଗତଙ୍କ ଶରଣ ନେଇଛନ୍ତି। ତାଙ୍କ ଉପଦେଶ ଅନୁସାରେ ରାଜ୍ୟ ଶାସନ କରୁଛନ୍ତି। ବର୍ତ୍ତମାନ ଆପଣଙ୍କ ଜୀବନ ଯେତେ ଶାନ୍ତ ଏବଂ ଶୁଦ୍ଧ ହେଉ ନା କାହିଁକି, ବିଗତ ଜୀବନର ଇତିହାସ ଆପଣଙ୍କ ଶରୀରରେ ଆଜି ବି ଖୋଦେଇ କରାହୋଇଛି। ଏଇ ମଣିଷକୁ ମୁଁ ସ୍ୱାମୀ ଭାବରେ ଗ୍ରହଣ କରି ପାରିବିନି। ସେଇ ଚଳଚଞ୍ଚଳ ତରୁଣଟିର ହୁଏତ ଲଗାମ ନ ଥିଲା, କିନ୍ତୁ ତାକୁ ଆପଣ ଏ କେଉଁଠିକି ନେଇ ଯାଇଛନ୍ତି...ତେଣୁ, ମୋତେ ବିଦାୟ ନେବାର ଅନୁମତି ଦିଅନ୍ତୁ।"

(୨)

ସମ୍ରାଟ ଏତେ ବିସ୍ମିତ ହୋଇଯାଇଥିଲେ ସେ କିୟତ୍‌କ୍ଷଣ ପାଇଁ ବାକ୍‌ରହିତ ହୋଇଗଲେ। ତା'ପରେ ଅସ୍ତବ୍ୟସ୍ତ ହୋଇ କହିଲେ, ''ଟିକେ ଅପେକ୍ଷା କର। ତୁମକୁ ମଧ୍ୟ ମୋର କିଛି କହିବାର ଅଛି।''



ଯେମିତି ସେ ସ୍ଥାନରେ ଗୋଟିଏ ମୁହୂର୍ତ୍ତ ବି ଅପେକ୍ଷା କରିବା ଅର୍ଥହୀନ—ଏଭଳି ଭଙ୍ଗୀରେ ତିଷ୍ୟା ଗତି ସମ୍ବରଣ କଲେ। ସମ୍ରାଟ ବ୍ୟାକୁଳ ସ୍ୱରରେ କହିଲେ, "ତଥାଗତଙ୍କ ଉପଦେଶ ହେଲା, ମଣିଷ ନ୍ୟାୟ କିମ୍ବା ଅନ୍ୟାୟ ଯେଉଁ କାର୍ଯ୍ୟ କରିବ, ତାକୁଇ ତାର ଫଳଭୋଗ କରିବାକୁ ହେବ। ତିଷ୍ୟା, ମୁଁ ମୋର ଅନ୍ୟାୟର ଫଳ ଭୋଗ କରିବାକୁ ଚାହେଁ।"

ତିଷ୍ୟା କହିଲେ, "ଯେତେବାର ଇଚ୍ଛା, ସେତେବାର କରନ୍ତୁ, କିନ୍ତୁ ମୋଠାରେ କଣ ପ୍ରୟୋଜନ ?"

ସମ୍ରାଟ କହିଲେ, "ତୁମକୁ ସସମ୍ମାନରେ ଫେରେଇ ନେଇଯିବାରେ ହିଁ ତା' ସମ୍ପୂର୍ଣ୍ଣ ହେବ।"

ତିଷ୍ୟା ଈଷତ୍ ଶ୍ଳେଷ ମିଶେଇ କହିଲେ, "ଜାଣିବାକୁ ଇଚ୍ଛା ହେଉଛି, ଯେଉଁ ପୁରୁଷ ମୁହୂର୍ତ୍ତର ଆନନ୍ଦ ପାଇଁ ଏକ କୁମାରୀ ବାଳିକାର ଯୌବନ ଅପହରଣ କରିନିଏ ଏବଂ ପରମୁହୂର୍ତ୍ତରେ ବିବାହର ଦାୟ ପର୍ଯ୍ୟନ୍ତ ଅସ୍ୱୀକାର କରେ, ଶତଭ୍ରାତାଙ୍କୁ ହତ୍ୟା କରିବାକୁ ଯାହାର ହାତ କମ୍ପେ ନାହିଁ, ନିତ୍ୟ ରମଣୀ ବିହାରରେ ଯା'ର କ୍ଳାନ୍ତି ନ ଥିଲା ଏକଦା, କଳିଙ୍ଗ ଯୁଦ୍ଧର କେଉଁ ରକ୍ତପାତ ତାକୁ ବିଚଳିତ କଲା ? ତା'ପରେ ବି ତ ବହୁକାଳ ଗତ ହୋଇଛି। ଏବେ ଏଇ ଅକାଳ ଜରାରେ ହଠାତ୍ ଏଇ ସାମାନ୍ୟ ନାରୀ ପ୍ରତି ଦୟା ଦେଖେଇବାକୁ କିଏ ଆଦେଶ ଦେଲା ? ସମଗ୍ର ବିଷୟଟା ଏକ ବିରାଟ ବ୍ୟଙ୍ଗ ଭଳି ଲାଗୁନାହିଁ କି ?"

—"ନା, ବ୍ୟଙ୍ଗ ନୁହେଁ। ଜୀବନ କୌଣସି ହିସାବ ମାନି ଚାଲେନା। ଆଜି ମୋର ଭାବିବାକୁ ବି ଲଜ୍ଜା ହୁଏ, ତରୁଣ ବୟସରେ ମୁଁ କି ଜୀବନ ଯାପନ କରିଛି। ଏଇ ହାତର ରକ୍ତ, ଏଇ ଅନ୍ତରର କାଳିମା ପୋଛିବାକୁ ଦିନରାତି ମୁଁ ତଥାଗତଙ୍କୁ ସ୍ମରଣ କରିଛି। କଳିଙ୍ଗ ଯୁଦ୍ଧରେ ଯେତେବେଳେ ଚତୁର୍ଦ୍ଦିଗରେ ରକ୍ତର ସ୍ରୋତ, ସେତେବେଳେ ମୁଁ ଶତ୍ରୁପକ୍ଷର ଜଣେ ସାଧାରଣ ସୈନିକକୁ ଆଦେଶ ଦେଇଥିଲି ମୋ ବଶ୍ୟତା ସ୍ୱୀକାର କରିବାକୁ। ସେହି ଆହତ ସାମାନ୍ୟ ସୈନିକଟି ମୃତ୍ୟୁ ନିଶ୍ଚିତ ଜାଣି ସୁଦ୍ଧା ମୋ ଆଦେଶକୁ ଘୃଣା ସହକାରେ ଉପେକ୍ଷା କରିଥିଲା। ସେତେବେଳେ ହିଁ ଧିକ୍କାର ଆସିଲା। ପରେ ତଥାଗତଙ୍କ କଥା ମନେ ପଡ଼ିଲା, 'ଅବରେନ ଚ ସନ୍ତି, ଏସ ଧମ୍ମୋ। ସନ୍ତନନୋ।' ମୈତ୍ରୀ ଦ୍ୱାରା ହିଁ ଶତ୍ରୁତାର ଉପଶମ କରିହୁଏ। ତାହା ହିଁ ସନାତନ ଧର୍ମ। ହଁ, ତା'ପରେ ପ୍ରତିଦିନ ମୁଁ ତଥାଗତଙ୍କ ଉପଦେଶ ଅନୁସାରେ କାର୍ଯ୍ୟ କରିଛି। କିନ୍ତୁ ତଥାପି ମନରେ ଶାନ୍ତି ଆସୁନଥିଲା। ମନେ ହେଉଥିଲା ଗୃହୀ ନୁହେଁ, ମୁଁ ଶ୍ରମଣ ହେବି। ଉପଗୁପ୍ତଙ୍କୁ ସେ କଥା କହିବାରୁ ସେ ଜାଣିବାକୁ ଚାହିଁଲେ ମୁଁ ମୋର ଅତୀତର ଯେଉଁ ସବୁ କର୍ମ ପାଇଁ ଅନ୍ୟମାନଙ୍କ ମନୋକଷ୍ଟର କାରଣ ହୋଇଛି, ତାର ପ୍ରତିକାର କରିଛି କି ନା ? ମୁଁ ସ୍ମରଣ

କଲି ମୋର ଅତୀତକୁ। ଏବଂ ସେତେବେଳେ ହିଁ ତୁମ କଥା ମନେ ପଡ଼ିଲା। ଉପଗୁପ୍ତ ତଥାଗତଙ୍କ ଗୋଟିଏ ଉପଦେଶ ସ୍ମରଣ କରେଇ ଦେଲେ, 'ପ୍ରେମଠୁଁ ଶୋକ ଉତ୍ପନ୍ନ ହୁଏ, ପ୍ରେମରୁ ହିଁ ଭୟ ଜନ୍ମ ନିଏ। ଯିଏ ପ୍ରେମରୁ ମୁକ୍ତ—ତାଙ୍କର ଶୋକ ରହେ ନାହିଁ, ଭୟ ରହିବ କେମିତି?' ମୁଁ ଶୋକମୁକ୍ତ ଏବଂ ଭୟମୁକ୍ତ ହେବାକୁ ଚାହେଁ। ମୁଁ ତୁମକୁ ମୋର ରାଜପ୍ରାସାଦକୁ ଫେରେଇ ନେବାକୁ ଚାହେଁ, ସେ ପଥରେ ଆଗେଇ ଯିବା ପାଇଁ। କାରଣ ହୃଦୟ କିମ୍ବା ଶରୀର ମାଧମରେ ତୁମ ସହିତ ମୋର ଏକଦା ପ୍ରେମର ସଂପର୍କ ସ୍ଥାପିତ ହୋଇଥିଲା। ଯେତେପର୍ଯ୍ୟନ୍ତ ତାର ମର୍ଯ୍ୟାଦା ମୁଁ ଦେଇ ନ ପାରିବି, ସେ ଯାଏଁ ପ୍ରେମରୁ ମୋର ମୁକ୍ତି ନାହିଁ।''

ତିଷ୍ୟା ସଶବ୍ଦରେ ହସି ଉଠିଲେ—''ଅର୍ଥାତ୍ ପୁଣି ମୋତେ ବ୍ୟବହାର କରିବାକୁ ଚାହାଁନ୍ତି ଆପଣ? ସେତେବେଳେ ଭୋଗରେ ଏବେ ତ୍ୟାଗ ପାଇଁ। ଚମତ୍କାର!''

ସମ୍ରାଟ ବହୁ ଅନୁନୟ କଲେ। କ୍ରମଶଃ ତିଷ୍ୟାଙ୍କ ହୃଦୟ କୋମଳ ହେଲା। ତଥାପି ସେ ବକ୍ରୋକ୍ତି ହାଣିଲେ, ''ପାପ ଯେତେବେଳେ କରିଥିଲେ, ସେତେବେଳେ ଖିଆଲ୍ ନ ଥିଲା?''

ସମ୍ରାଟ କହିଲେ—''ଯେତେପର୍ଯ୍ୟନ୍ତ ପାପ ପରିପକ୍ୱ ନ ହୁଏ, ସେ ପର୍ଯ୍ୟନ୍ତ ତାକୁ ମଧୁର ବୋଲି କଳ୍ପନା କରନ୍ତି ମୂର୍ଖମାନେ। କିନ୍ତୁ ପରିପକ୍ୱତା ଆସିଲେ ହିଁ ସେମାନେ ଦୁଃଖ ପା'ନ୍ତି। ତୁମେ ମୋତେ ଫେରେଇ ଦିଅ ନାହିଁ, ତିଷ୍ୟା! ମୁଁ ତୁମ ପାଦ ପାଖରେ ମୋ' ଅଞ୍ଜଳି ରଖି ପାରିବିନି, କାରଣ ମୁଁ ତାଙ୍କ ଚରଣାଗତ। କିନ୍ତୁ ତୁମେ ମୋତେ ଏତିକି ଭିକ୍ଷା ଦିଅ। ଦୟା କର।''

ଫାଲ୍‌ଗୁନୀ ନିଶିର ଏଇ ଦ୍ୱିତୀୟ ପ୍ରହରରେ ତିଷ୍ୟାଙ୍କ ହୃଦୟ ଦୋଳାୟମାନ ହେଲା। ନା, ସେ କେବେହେଲେ ଏଇ ଲୋଳଚର୍ମ ବୃଦ୍ଧକୁ ସ୍ୱାମୀ ଭାବେ ଗ୍ରହଣ କରପାରିବେ ନାହିଁ। ପ୍ରେମ-ନିବେଦନ ତ ବହୁ ଦୂରର କଥା। କିନ୍ତୁ ଏହି ଷୋଡ଼ଶ ଜନପଦଭୂମିର ସାମ୍ରାଜ୍ଞୀ ହୋଇ ସେ ଅବଶ୍ୟ ଅବଶିଷ୍ଟ ଜୀବନର ଦାୟରୁ ପିତୃଦେବଙ୍କୁ ମୁକ୍ତି ଦେଇପାରନ୍ତି। ବିବାହିତା ନାରୀ ପିତୃଗୃହରେ ଦାୟ ଛଡ଼ା ଅନ୍ୟ କିଛି ନୁହେଁ। ବରଂ ଏହି ଧର୍ମଭୀରୁ ବୃଦ୍ଧକୁ ସାମାନ୍ୟ ଦୟା କଲେ ଅବଶିଷ୍ଟ ଜୀବନ ସୁଖରେ ନ ହେଲେ ସୁଦ୍ଧା ସ୍ୱସ୍ତିରେ ଅତିବାହିତ କରିହେବ। କିନ୍ତୁ ବିନାମୂଲ୍ୟରେ ସମ୍ରାଟ ତାକୁ ନେଇ ଯାଉଛନ୍ତି। ଯେମିତି ସେ ଏକ କଣ୍ଢେଇ, ଯାହା ସହିତ ମନଇଚ୍ଛା ଖେଳ ଖେଳାଯାଇପାରେ। ବୌଦ୍ଧଧର୍ମରେ ତ ନାରୀର ସମାନ ଅଧିକାର ନାହିଁ। ମହାପ୍ରଜାବତୀ, ଗୌତମୀ ଭିକ୍ଷୁଣୀ ଥିଲେ ଠିକ୍, କିନ୍ତୁ କେଉଁ ମୂଲ୍ୟରେ? ତଥାଗତ ନାରୀମାନଙ୍କୁ ସଂଘରେ ପ୍ରବେଶାଧିକାର ଦେଇଥିଲେ ଆନନ୍ଦଙ୍କ ଅନୁରୋଧରେ, କିନ୍ତୁ ତାଙ୍କ ନିୟମଗୁଡ଼ିକ? ଶହେ ବର୍ଷ ଉପସଂପଦାପ୍ରାପ୍ତ ଭିକ୍ଷୁଣୀକୁ ମଧ୍ୟ ଦିନକର ଉପସଂପଦାପ୍ରାପ୍ତ ଭିକ୍ଷୁକୁ ସମ୍ମାନ ଦେଖେଇବାକୁ ପଡ଼େ। ଭିକ୍ଷୁଣୀମାନେ କୌଣସି

ଭିକ୍ଷୁର ନିନ୍ଦା କରିପାରିବେ ନାହିଁ। ସେମାନେ କାହାକୁ କୌଣସି ଉପଦେଶ ଦେଇପାରିବେ ନାହିଁ। ଭିକ୍ଷୁଣୀକୁ ପ୍ରତିପକ୍ଷରେ ଉପୋସଥର ତାରିଖ ଏବଂ ଉପଦେଶର ସମୟ ଭିକ୍ଷୁଠୁଁ ଜାଣିବାକୁ ହେବ। ଅର୍ଥାତ୍ ସର୍ବତ୍ର ହସ୍ତପଦରେ ଶୃଙ୍ଖଳ ବନ୍ଧା ହୋଇଛି ନାରୀମାନଙ୍କର। ଅତଏବ ଆଜି ଯଦି ସେ ଏଇ ବୌଦ୍ଧଗୃହୀ ସହିତ ଫେରି ଯାଆନ୍ତି, ତେବେ ତାଙ୍କ ସ୍ୱାଧୀନତାର କେତେ ଅଂଶ ସେ ରକ୍ଷା କରିବେ, ସେଥିରେ-ସନ୍ଦେହ ରହିଛି।

ତିଷ୍ୟା ହସିଲେ। କିନ୍ତୁ ସେ ହସରେ ଥିଲା ଭ୍ରାନ୍ତି ଏବଂ ଆଶାଭଙ୍ଗର ବେଦନା।

ସମ୍ରାଟ ଉଦ୍‌ଗ୍ରୀବ ହୋଇ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି। ତିଷ୍ୟା କହିଲେ, "ମୁଁ ଯାଇପାରେ, କିନ୍ତୁ ମୋର କେତେଗୁଡ଼ିଏ ସର୍ତ୍ତ ଅଛି।"

"ସର୍ତ୍ତ!" ସମ୍ରାଟ ସଚକିତ ହେଲେ। ଏଇ ସୁନ୍ଦରୀ ରମଣୀ ମଧ୍ୟରେ କି ଆକର୍ଷଣ ଅଛି ଯେ ହୃଦୟ ଏମିତି ଭାରୀ ହୋଇଉଠିଲା!

"ହଁ। ଯଦି ଆପଣ ତା' ରକ୍ଷା କରି ପାରନ୍ତି, ତେବେ ମୁଁ ଆପଣଙ୍କ ସହିତ ମଗଧ ଫେରିବି।"

"ଅଦ୍ୟାବଧି ମୁଁ ତଥାଗତଙ୍କ ବ୍ୟତୀତ ଅନ୍ୟ କାହାର କୌଣସି ସର୍ତ୍ତରେ ଆବଦ୍ଧ ନୁହେଁ। କିନ୍ତୁ ନିଜର ପାପ କ୍ଷାଳନ କରିବା ପାଇଁ ମୁଁ ତୁମର ସର୍ତ୍ତ ଶୁଣିବାକୁ ସମ୍ମତ।"

"ମୋତେ ଆପଣଙ୍କ ସାମ୍ରାଜ୍ୟର ପ୍ରଧାନ ମହିଷୀ ପଦ ଦେବାକୁ ପଡ଼ିବ।"

"ତା' ପରେ?"

"ମୋ ପାଇଁ ସଂପୂର୍ଣ୍ଣ ପୃଥକ୍ ବାସସ୍ଥାନର ବ୍ୟବସ୍ଥା କରିବାକୁ ହେବ। ଏବଂ ସେଠି ମୋ ଅନୁମତି ବ୍ୟତୀତ କୌଣସି ବହିରାଗତର ପ୍ରବେଶ ହେବ ନିଷିଦ୍ଧ। ଏ ବିଧି ଆପଣଙ୍କ ପାଇଁ ମଧ୍ୟ ପ୍ରଯୋଜ୍ୟ।"

"ମୋ କ୍ଷେତ୍ରରେ ବି! କାହିଁକି?"

"ମୁଁ ସୌନ୍ଦର୍ଯ୍ୟର ଅପମାନ ସହି ପାରେନା।"

ସମ୍ରାଟ ଏ ଅପମାନ ସହିନେଲେ। ନିସ୍ପୃହ ହେବାର ଚେଷ୍ଟା କଲେ ତଥାଗତଙ୍କୁ ସ୍ମରଣ କରି।

"ମୁଁ ବୌଦ୍ଧଧର୍ମରେ ଦୀକ୍ଷିତା ନୁହେଁ। ଯଦିଓ ମୋ ପିତା ଏ ଧର୍ମ ଗ୍ରହଣ କରିଛନ୍ତି। କିନ୍ତୁ କେତେବେଳେ ହେଲେ ମୋତେ ଯେପରି ବୌଦ୍ଧମାନଙ୍କ ଆଚାର-ଅନୁଷ୍ଠାନ ପାଳନ କରିବାକୁ ବାଧ୍ୟ କରା ନ ହୁଏ।"

"ଆମେ କାହାକୁ ବାଧ୍ୟ କରୁନା। କିନ୍ତୁ ଆମକୁ କେତୋଟି ଧର୍ମାନୁଷ୍ଠାନ ପାଳନ କରିବାକୁ ହିଁ ପଡ଼େ। ତୁମର ପିତୃଦେବ ନିଶ୍ଚୟ ଉପୋସଥ ଦିବସରେ ଧର୍ମୋପଦେଶ ଶ୍ରବଣ, ପଞ୍ଚ କିମ୍ବା ଅଷ୍ଟଶୀଳ ଗ୍ରହଣ କରନ୍ତି, ବର୍ଷ ଶେଷରେ ପ୍ରବାରଣା ଉତ୍ସବରେ ଭିକ୍ଷୁମାନଙ୍କୁ ଚୀବର ଦାନ କରନ୍ତି, ସ୍ତୂପ ଓ ଚୈତ୍ୟ ପୂଜା କରନ୍ତି। ଏଥିରୁ କଣ ତୁମେ ଦୂରରେ ରହିବାକୁ ଚାହଁ?"

''ହୁଏତ। ହୁଏତ କାହିଁକି,' ଯଦି କହେ, ମୁଁ ସେଇଆ ହିଁ ଚାହେଁ?''

ସମ୍ରାଟ ଟିକେ ସମୟ ନେଲେ, ''ଯଦି ତୁମର ସର୍ତ୍ତ ମୁଁ ଗ୍ରହଣ କରି ନ ପାରେ?''

ତିଷ୍ୟା ହସିଲେ, ''ତିରିଷ ବର୍ଷ, ବ୍ରହ୍ମଚାରିଣୀ ରହିବା ପରେ ଏତେ ସମୟ ଜଣେ ପୁରୁଷ ସହିତ ଏକାକୀ ରହିବାର ଲଜ୍ଜାରେ ମୋତେ ଆତ୍ମହତ୍ୟା କରିବାକୁ ପଡ଼ିବ।''

ସମ୍ରାଟ ଚମକି ଉଠିଲେ। ଏ କଣ ଶୁଣୁଛନ୍ତି ସେ ! ବିହ୍ୱଳ ହୋଇ କହିଲେ—''ଆତ୍ମହତ୍ୟା କରିବ? କାହିଁକି? ତୁମେ କଣ ଜାଣିନ ଆତ୍ମହତ୍ୟା କରିବା ଏକ ଜଘନ୍ୟ ଅପରାଧ?'' ସମ୍ରାଟ ଯେମିତି ନିଜେ ଶୁଣିଥିବା କଥାକୁ ବିଶ୍ୱାସ କରିପାରୁ ନ ଥିଲେ।

''ଏଇ ଶବ୍ଦଟି ଆପଣଙ୍କ ମୁହଁରେ ସାଜେନା। ସମଗ୍ର ନଗରୀର ଲୋକେ ଜାଣନ୍ତି ଫାଲ୍‌ଗୁନର ଏଇ ରାତିରେ ଆପଣଙ୍କ ସହିତ ମିଳିତ ହେବାକୁ ଆସିଛି ମୁଁ। ଏତେଦିନ ଅଜସ୍ର ଲୋଭର ହାତ ମୋ ଆଡ଼କୁ ଲମ୍ୱି ଆସିଛି, ଅନେକ ସରଳ ପ୍ରେମ ମୋତେ ନିବେଦନ କରାହୋଇଛି, କିନ୍ତୁ ମୁଁ ସେମାନଙ୍କୁ ଅବହେଳାରେ ପ୍ରତ୍ୟାଖ୍ୟାନ କରିଛି। ସେମାନେ କ୍ଷୁବ୍ଧ ହେବା ତ ସ୍ୱାଭାବିକ। ଆଜି ଯଦି ଏ ଶିବିରରୁ ମୁଁ ଫେରିଯାଏ, ତେବେ ସେମାନେ ତ ମୋର ଚରିତ୍ର ନେଇ କୁହା ନିଶ୍ଚୟ ରଟନା କରିବେ, ଯା' ସେମାନେ ଏତେକାଳ କରିବାକୁ ସାହସ ପାଉନାହାନ୍ତି। ଆଉ ଆତ୍ମହତ୍ୟା କଥା ଯଦି କହନ୍ତି, ତା'ହେଲେ ସେଟା ତ ତିରିଶ ବର୍ଷ ଧରି ଅପେକ୍ଷାମାଣ ଅବସ୍ଥାରେ ହିଁ ରହିଛି। ଗୋଟିଏ ପ୍ରାୟ-ବାଳିକାକୁ ଗ୍ରହଣ କଲେ, ବିବାହ କରିବାକୁ ବାଧ ହେଲେ, କିନ୍ତୁ ବର୍ଜନ କଲେ। ସେଇ ଝିଅଟି ସେଦିନ ମୁଣ୍ଡ ତଳକୁ କରି ଚାଲି ନ ଆସି ପୃଥିବୀରୁ ବିଦାୟ ନେଇ ପାରିଥାନ୍ତା। ଆଜି ଚୂଡ଼ାନ୍ତ ଅପମାନ ପରେ ସେଇ ପଥ ହିଁ କେବଳ ଖୋଲା ଅଛି। ନୁହେଁ?'' ତିଷ୍ୟାଙ୍କର ପ୍ରତିଟି ଶବ୍ଦ ଯେମିତି ତୀକ୍ଷ୍ଣଧାର ଶଳାକା !

ସମ୍ରାଟ କହିଲେ, ''ମୁଁ ତ ତୁମକୁ ରାଜଧାନୀ ନେଇଯିବା ପାଇଁ ଆସିଛି। ତୁମେ ତୁଚ୍ଛାଟାରେ ସର୍ତ୍ତ ଆରୋପ କରୁନାହିଁ କି?''

''ନା। ତୁଚ୍ଛାଟାରେ ନୁହଁ। ଏ ମୋର ମର୍ଯ୍ୟାଦାର ପ୍ରଶ୍ନ। ଆତ୍ମସମ୍ମାନହୀନ ମଣିଷ କୀଟଠାରୁ ବଳି ଅଧମ। ଅବଶ୍ୟ ଆପଣମାନେ ନାରୀକୁ ତାର ସମ୍ମାନ ଦେଇ ନାହାନ୍ତି।''

ସମ୍ରାଟ କିଛିକ୍ଷଣ ସର୍ତ୍ତଗୁଡ଼ିକୁ ନୀରବରେ ପର୍ଯ୍ୟାଲୋଚନା କଲେ। ମହାରାଣୀ ପଦ୍ମାବତୀଙ୍କ ନିବେଦିତ ମୁଖମଣ୍ଡଳ କଥା ଭାବିଲେ। ସେ କୌଣସି ଅନ୍ୟାୟ କରିନାହାନ୍ତି। କିନ୍ତୁ ପ୍ରଥମ ସର୍ତ୍ତାନୁଯାୟୀ ତାଙ୍କୁ ଦୁଃଖ ଦେବାକୁ ହେବ। ଦ୍ୱିତୀୟ ସର୍ତ୍ତଟି ସେ ପାଳନ କରିବେ। ଉପଗୁପ୍ତଙ୍କ ଠାରୁ ଦୀକ୍ଷା ନେବା ପରେ ସେ ବ୍ରହ୍ମଚର୍ଯ୍ୟ ପାଳନରେ

ବ୍ରତୀ ହୋଇଥିଲେ। ତା'ପରେ ଅକାଳରେ ଜରା ଆକ୍ରାନ୍ତ କଲା। ବର୍ତ୍ତମାନ ଇଚ୍ଛା ଥିଲେ ବି କ୍ଷମତା ନାହିଁ। କିନ୍ତୁ ସେଟା ସେ ପ୍ରକାଶ କରନ୍ତି ନାହିଁ। ଅତଏବ ତିଷ୍ୟା ଯେଉଁଠି ରହିବେ, ସେଠି ଯିବାର ପ୍ରୟୋଜନ ନାହିଁ। ଯଦିଓ ଏଇ ନାରୀର ରୂପରେ ଦୁରନ୍ତ ଚୁମ୍ବକ ଅଛି; ତଥାପି ସେ ନିଜକୁ ସଂଯତ ରଖିବେ। ଏକଦା ତାଙ୍କୁ କୁହାହେଉଥିଲା ସୌନ୍ଦର୍ଯ୍ୟର ପ୍ରତୀକ, ଆଜି ସେ ତାର ଅପମାନ। ଏହା ମଧ୍ୟ ସହିବାକୁ ହେଲା। କିନ୍ତୁ ତୃତୀୟ ସର୍ତ୍ତଟି ତାଙ୍କୁ ସବୁଠୁଁ ଅଧିକ ପୀଡ଼ା ଦେଉଛି। ତାଙ୍କ ଧର୍ମମହାମାତ୍ୟମାନେ କଣ କହିବେ ? ସମ୍ରାଟ ଆମ ଉପରେ ଦାୟିତ୍ୱ ଦେଇଛନ୍ତି ତଥାଗତଙ୍କ ଅମୋଘ ବାଣୀ ପ୍ରଚାରର, ଅଥଚ ରାଜପ୍ରାସାଦରେ ତାଙ୍କରି ମହାରାଣୀ ଏସବୁର ଊର୍ଦ୍ଧ୍ୱରେ! ଆଜି ପାଟଳୀପୁତ୍ରର ଲୋକେ ତଥାଗତ ପ୍ରତି ଅନୁରକ୍ତ। ସେମାନେ ଏ ବ୍ୟତିକ୍ରମ ସହିବେ କେମିତି ?



ସମ୍ରାଟଙ୍କ ମନ ଭାରାକ୍ରାନ୍ତ ହେଉଥିଲା। ସେ ବର୍ତ୍ତମାନ କାହାରି ଆତ୍ମହତ୍ୟାର କାରଣ ହେବାକୁ ଚାହାଁନ୍ତି ନାହିଁ। ରାଜ୍ୟର ପର୍ବତଗାତ୍ର, ପ୍ରସ୍ତର ସ୍ତମ୍ଭ ଓ ଗୁମ୍ଫାରେ

ସେ ସଦ୍‌ଧର୍ମର ଅନୁଶାସନ ଗୁଡ଼ିକ ଖୋଦେଇ କରିଛନ୍ତି, ଆଉ ଗୋଟିଏ ରମଣୀର ହୃଦୟ ପରିବର୍ତ୍ତନ କରି ପାରିବେ ନାହିଁ? ଭକ୍ତି, ସଦ୍‌ବ୍ୟବହାର, ଦୟା, ଦାନ, ପବିତ୍ରତା, ସତ୍ୟବାଦିତା ଏବଂ ଦାନଶୀଳତା—ଏସବୁ କଣ ଏ ରମଣୀ ପାଖରେ ସେ ପ୍ରତ୍ୟାଶା କରି ପାରନ୍ତିନି? ତାଙ୍କ ହୃଦୟ କହୁଥିଲା, ''ସମ୍ଭବ ନିଶ୍ଚୟ, ସମ୍ଭବ।'' ଏହାଛଡ଼ା ତାଙ୍କର ପୂର୍ବ ପାପର ପ୍ରାୟଶ୍ଚିତ୍ତ ହେବନାହିଁ। କୋଶଳରାଜଙ୍କ ପୁରୋହିତ - ପୁତ୍ର ଅଙ୍ଗୁଳିମାଳ ଭଳି ନୃଶଂସ ବ୍ୟକ୍ତି ମଧ ତଥାଗତଙ୍କ ଠାରୁ ଧର୍ମକଥା ଶୁଣି ପ୍ରବଜ୍ୟା ନେଇଥିଲେ ଯେତେବେଳେ, ସେତେବେଳେ, ଏ ରମଣୀ ଦିନେ ତାର ମତ ନିଶ୍ଚୟ ପରିବର୍ତ୍ତନ କରିବ।

ସମ୍ରାଟ ସିଦ୍ଧାନ୍ତ ଗ୍ରହଣ କଲେ। ସ୍ମିତ ହସି କହିଲେ; ''ଠିକ୍ ଅଛି ତିଷ୍ୟା, ମୁଁ ତୁମର ତିନୋଟିଯାକ ସର୍ତ୍ତ ମାନିନେଲି। ଆଜିଠୁ ତୁମେ ଏ ସାମ୍ରାଜ୍ୟର ମହାରାଣୀ। ଦୟାକରି ଆସନ ଗ୍ରହଣ କର। ତୁମ ପିତୃଦେବଙ୍କୁ ଆହ୍ୱାନ ଜଣାଇବାକୁ ନିର୍ଦ୍ଦେଶ ଦେଉଛି।''

ସମ୍ରାଟଙ୍କ ସୈନ୍ୟବାହିନୀ ଫେରି ଚାଲିଛି। ବର୍ତ୍ତମାନ ସମ୍ରାଜ୍ୟରେ ଯୁଦ୍ଧବିଗ୍ରହ ଅନିୟମିତ ଘଟଣା! ତେବେ ସମ୍ରାଟଙ୍କ ସୈନ୍ୟବାହିନୀ ଶିକ୍ଷିତ; ବର୍ବର ନୁହଁନ୍ତି। ପ୍ରଜାମାନଙ୍କ ଉପରେ ସାମାନ୍ୟତମ ଅତ୍ୟାଚାର କଲେ ସମ୍ରାଟ ସେମାନଙ୍କୁ କ୍ଷମା କରନ୍ତି ନାହିଁ। ଐଶ୍ୱର୍ଯ୍ୟର ପ୍ରଦର୍ଶନ ବନ୍ଦ କରିବା ପାଇଁ ସମ୍ରାଟ ବିହାରଯାତ୍ରା ପରିବର୍ତ୍ତେ ଧର୍ମଯାତ୍ରାର ପ୍ରବର୍ତ୍ତନ କରିଛନ୍ତି। ତା'ଛଡ଼ା ସମ୍ରାଟ କାହା ଉପରେ ଜୋର କରି ଧର୍ମକୁ ଲଦି ଦେଇ ନାହାଁନ୍ତି, ସେମାନେ ସ୍ୱୟଂ ପ୍ରବୃତ୍ତ ହୋଇ ଗ୍ରହଣ କରନ୍ତି। କିନ୍ତୁ ଆଜୀବକ ସମ୍ପ୍ରଦାୟ ତ ସମ୍ରାଟଙ୍କ ଧର୍ମ ଗ୍ରହଣ କରିନାହାଁନ୍ତି। ଆଉ ସମ୍ରାଟ ତାର ବିରୋଧ ନ କରି ବନ୍ଧୁ ବ୍ୟୟରେ କେତେଗୁଡ଼ିଏ ଗୁମ୍ଫା ନିର୍ମାଣ କରି ଦେଇଛନ୍ତି ସେମାନଙ୍କ ପାଇଁ।

କିନ୍ତୁ ରାଜଧାନୀରୁ ଏତେଦୂରକୁ ଆସି ମଧ ସମ୍ରାଟଙ୍କ ଚିନ୍ତା ଥିଲା ଅନ୍ୟ ବ୍ୟାପାର ସଂକ୍ରାନ୍ତରେ। ସେ ପାଟଳିପୁତ୍ରରେ ଏକ ଧର୍ମସଭାର ଆୟୋଜନ କରିଛନ୍ତି। ଏହା ପୂର୍ବରୁ ମାତ୍ର ଦୁଇଥର ଏହିଭଳି ଧର୍ମସଭା ଅନୁଷ୍ଠିତ ହୋଇଛି। ଆଜି ତାଙ୍କୁ ସ୍ଥାନେ ସ୍ଥାନେ ଅଟକିବାକୁ ପଡୁଛି ସେହି ଧର୍ମସଭାରେ ଯୋଗଦାନ ପାଇଁ ପରମଭକ୍ତମାନଙ୍କୁ

ଆମନ୍ତ୍ରଣ ଜଣାଇବା ଏବଂ ଆଲୋଚନା କରିବା ବାବଦରେ। ଏହି ବିଶାଳ ଶୋଭାଯାତ୍ରାର ଗତି ତେଣୁ ହୋଇଉଠିଛି ମନ୍ଥର। ମହାରାଣୀ ତିଷ୍ୟା ରହିଛନ୍ତି ଶୋଭାଯାତ୍ରାର ଠିକ୍ ମଧ୍ୟଭାଗରେ, ଏକ ବିଶେଷ ଶିବିକାରେ। ଏଇ ମୁହୂର୍ତ୍ତରେ ସମ୍ରାଟ ଆଉ ତାଙ୍କ କଥା ବିଶେଷ ଚିନ୍ତା କରୁନାହାଁନ୍ତି। ଶିକ୍ଷିତ ଦାସଦାସୀଗଣ ପ୍ରତିନିୟତ ତାଙ୍କ ସେବାରେ ଯେ ନିୟୋଜିତ ଅଛନ୍ତି, ଏ କଥା ସେ ଜାଣନ୍ତି। କିନ୍ତୁ ଏଇ ଧର୍ମସଭାର ବିଶେଷ ପ୍ରୟୋଜନ ଅଛି। ଉପଗୁପ୍ତ ମଧ୍ୟ ତାଙ୍କ ସହିତ ସମ୍ପୂର୍ଣ୍ଣ ଏକମତ।

ତଥାଗତଙ୍କ ଉଚ୍ଚାରିତ ବାଣୀ, ଯାହା କେବଳ ଲୋକମୁଖରେ ପ୍ରଚାରିତ ଥିଲା, ତାହାକୁ ଲିପିବଦ୍ଧ ଏବଂ ସୁସଂବଦ୍ଧ କରିବା ନିତାନ୍ତ ପ୍ରୟୋଜନ। ନ ହେଲେ ଯେତେ ବିଳମ୍ବ ଘଟିବ, ସେ ସବୁ ବାଣୀ ଶବ୍ଦହରା ହେବ, ସଂଯୋଜିତ ହେବ ଅନ୍ୟ ପ୍ରକାରେ—ଫଳରେ ବିକୃତ ହେବାର ଆଶଙ୍କା ଉପୁଜିବ। ତଥାଗତ ନିର୍ବାଣ ଲାଭ ପରେ ଯେତେବେଳେ ପରିନିର୍ବାଣ ଶଯ୍ୟାରେ ଶାୟିତ, ସେତେବେଳେ କ୍ରନ୍ଦନରତ ଭିକ୍ଷୁମାନଙ୍କ ଆଡ଼କୁ ଚାହିଁ ଚିତ୍କାର କରି ଉଠିଥିଲେ ଭିକ୍ଷୁ ସୁଭଦ୍ର, "ବିଳାପ କରନାହିଁ। ଆମେ ଏହି ମହାକ୍ରମଣ ପାଖରୁ ମୁକ୍ତ ହୋଇଛୁଁ। କାରଣ 'ଏହା କରନା, ତାହା କରନା' କହିବା ପାଇଁ ସେ ଆଉ ଜୀବିତ ନାହାଁନ୍ତି।" ସମ୍ରାଟ ଏହି ଦୃଶ୍ୟଟି କଳ୍ପନା କଲେ ମଧ୍ୟ ବିଶ୍ୱାସ କରିବାକୁ କଷ୍ଟ ବୋଧ କରନ୍ତି। ତଥାଗତଙ୍କ ଶରୀରରେ ସେତେବେଳଯାଏଁ ଅଗ୍ନି ସ୍ପର୍ଶ ବାଜିନି—ଅଥଚ ଏ ବାକ୍ୟ ଉଚ୍ଚାରିତ ହେଲା ? ସେଇଥିପାଇଁ ବ୍ୟସ୍ତ ହୋଇଉଠିଲେ ସ୍ଥବିର ମହା କାଶ୍ୟପ। ରାଜା ଅଜାତଶତ୍ରୁଙ୍କ ସାହାଯ୍ୟରେ ରାଜଗୃହର ସପ୍ତପର୍ଣ୍ଣିଗୁହାରେ ସଦ୍ଧର୍ମର ସ୍ଥାୟିତ୍ୱ ପାଇଁ ତଥାଗତଙ୍କ ମହାନିର୍ବାଣ ପରେ ପରେ ପ୍ରଥମ ମହାସଭାର ଆହ୍ୱାନ ଜଣାଇଲେ। ପାଞ୍ଚଶତ ବୌଦ୍ଧ ଭିକ୍ଷୁଙ୍କ ଉପସ୍ଥିତିରେ ସେଇ ପ୍ରଥମ ବୌଦ୍ଧ ମହାସସମ୍ମିଳନୀରେ ତଥାଗତଙ୍କ ବାଣୀ ସଂଗ୍ରହ କରାଗଲା। ବସ୍ତୁତଃ, ତଥାଗତଙ୍କ ପ୍ରିୟ ଶିଷ୍ୟ ଭିକ୍ଷୁ ଆନନ୍ଦ ଏବଂ ଉପାଳୀଙ୍କର ଯାହା ସ୍ମରଣରେ ଥିଲା, ତାହା ହିଁ ଧର୍ମ ଏବଂ ବିନୟ ବୋଲି ଗୃହୀତ ହେଲା।

ଦ୍ୱିତୀୟ ବୌଦ୍ଧ ମହାସମ୍ମିଳନୀ ହୋଇଥିଲା ତଥାଗତଙ୍କ ମହାପରିନିର୍ବାଣର ଏକଶତ ବର୍ଷ ପରେ, ବୈଶାଳୀରେ। ମହାମତି ଯଶ ମହାସ୍ଥବିରଙ୍କ ଉଦ୍‌ଯୋଗରେ ତଥା ରାଜା କାଳାଶୋକଙ୍କ ଉତ୍ସାହରେ ସେହି ମହାସମ୍ମିଳନୀରେ ସାତଶହ ଭିକ୍ଷୁ ଯୋଗ ଦେଇଥିଲେ। ପ୍ରଥମ ବୌଦ୍ଧ ମହାସଭାର ସମୀକ୍ଷା ଥିଲା ସେହି ସମ୍ମିଳନୀର ଉଦ୍ଦେଶ୍ୟ। ମହାପରିନିର୍ବାଣ ହୋଇଯାଇଛି ଠିକ୍ ଦୁଇଶହ ବର୍ଷ। ସମ୍ରାଟ ତୃତୀୟ ମହାସଭା ପାଇଁ ଆହ୍ୱାନ କରିଛନ୍ତି। ମୋଦଗଲ୍ଲିପୁତ୍ର ତିଷ୍ୟଙ୍କୁ ସେ ଅନୁରୋଧ କରିଛନ୍ତି ପୌରୋହିତ୍ୟ କରିବା ପାଇଁ। ଧର୍ମ ଏବଂ ବିନୟ ବ୍ୟତୀତ ଅଭିଧର୍ମପିଟକର ଭିନ୍ନ ଅସ୍ତିତ୍ୱ ପ୍ରଚାର କରିବାକୁ ଚାହାଁନ୍ତି ସମ୍ରାଟ। ତିଷ୍ୟ ସମ୍ମତ ହୋଇଛନ୍ତି ତାକୁ ସଙ୍କଳନ କରିବାପାଇଁ। ଧର୍ମର ବିକଳ୍ପ ହେବ ସୂତ୍ର ଏବଂ ଅଭିଧର୍ମ। ବିନୟ ଯେମିତି ଥିଲା, ରହିବ।

ସମ୍ରାଟଙ୍କ ଧାରଣା, ଏଥିରେ ତଥାଗତଙ୍କ ବାଣୀର ପୂର୍ଣ୍ଣ ମର୍ଯ୍ୟାଦା ରହିବ। ଆଜି ଏଇ ବିଷୟ ନେଇ ସେ ଚିନ୍ତିତ।

ତିଷ୍ୟା ମୁଗ୍ଧ ଦୃଷ୍ଟିରେ ଶିବିକାର ବାତାୟନ ବାଟେ ପ୍ରକୃତିକୁ ଉପଭୋଗ କରୁଥିଲେ। ଏତେ ଆଦର, ଏତେ ଆପ୍ୟାୟନ ସେ କେବେ ପାଇନାହାଁନ୍ତି। କୌଣସି ଦ୍ରବ୍ୟର ପ୍ରୟୋଜନ ଅନୁଭୂତ ହେବା ପୂର୍ବରୁ ହିଁ ତାହା ପୂରଣ କରାହେଉଛି। ସତକୁ ସତ ନିଜକୁ ମହାରାଣୀ ବୋଲି ବୋଧେ ହେଉଥିଲା ତାଙ୍କର। ଗୋଟିକ ପରେ ଗୋଟିଏ ରାଜ୍ୟ ସେମାନେ ଅତିକ୍ରମ କରୁଥିଲେ। ବନ୍ୟାସ୍ରୋତ ପରି ପଥେ ପଥେ ଉତ୍ତରଙ୍କ ଅଭିବାଦନ। ଏସବୁ ସେଇ ଜରାଗ୍ରସ୍ତ ସମ୍ରାଟଙ୍କ ପାଇଁ। ଯେଉଁ ମଣିଷଟିକୁ ଦିନେ ଷୋଡ଼ଶ ଜନପଦ ଭୂମିର ପ୍ରତ୍ୟେକ ପ୍ରାଣ ଘୃଣାଚକ୍ଷୁରେ ଦେଖୁଥିଲା, ଆଜି କେଉଁ ଶକ୍ତି ବଳରେ ସେ ସେମାନଙ୍କୁ ଜୟ କରିନେଲେ ? ହୁଏତ ସମ୍ରାଟ ଠିକ୍ କହିଛନ୍ତି, ''ମୈତ୍ରୀ ଦ୍ୱାରା ହିଁ ଶତ୍ରୁତାର ଉପଶମ ହୁଏ।''

ପୃଥିବୀର ଇତିହାସ କହେ: ସମ୍ରାଟଙ୍କୁ କେବେ ହେଲେ ପ୍ରଜାମାନେ ନିଜ ଲୋକ ବୋଲି ମନେ କରନ୍ତି ନାହିଁ। ସମ୍ରାଟଙ୍କ ଭୋଗପାଇଁ ସେମାନଙ୍କୁ ଶ୍ରମ ଏବଂ ରକ୍ତ ମଧ ଦେବାକୁ ପଡ଼େ। କିନ୍ତୁ ଆଜି ସେ ଏ କଣ ଦେଖୁଛନ୍ତି ? ଅଗଣିତ ସାଧାରଣ ଗୃହୀ ମଣିଷ ରାସ୍ତା ଦୁଇ କଡ଼େ ଛିଡ଼ାହୋଇ ସମ୍ରାଟଙ୍କ ଜୟଧ୍ୱନି ଦେଉଛନ୍ତି। ସେମାନେ ଯେତେବେଳେ ଜାଣୁଛନ୍ତି, ଏ ଶୋଭାଯାତ୍ରାରେ ମହାରାଣୀ ତିଷ୍ୟା ମଧ ଅଛନ୍ତି, ସେତେବେଳେ ତାଙ୍କ ନାମରେ ମଧ ଜୟଧ୍ୱନି ଦେବାକୁ ସେମାନେ କୁଣ୍ଠାବୋଧ କରୁନାହାଁନ୍ତି। ହୁଏତ ସେଇ ଈଶ୍ୱରଙ୍କ ବାଣୀର ସଂସ୍ପର୍ଶ ସମ୍ରାଟଙ୍କୁ ସାଧାରଣ ଲୋକଙ୍କର ଏତେ ପ୍ରିୟ କରି ତୋଳିଛି। କିନ୍ତୁ ଏହା ସତ୍ତ୍ୱେ ବି ତିଷ୍ୟା ଅଧର ଦଂଶନ କଲେ। ଏ କେଉଁ ମଣିଷର ସମ୍ମାନର ଅଂଶୀଦାର ସେ ଆଜି ? ଜଣେ ଗଳିତ, ଲୋଳଚର୍ମ ବୃଦ୍ଧ, ଯାହାକୁ ଦେଖିଲେ ଯୌବନ କୁକୁରି ଉଠେ—ତା'ରି ପାଇଁ ସେ ଅପେକ୍ଷା କରିଥିଲେ ଏତେକାଳ ? ଏଇ ମଣିଷଟି ପାଇଁ ତାଙ୍କୁ ଅବଶିଷ୍ଟ ଜୀବନ କଟାଇବାକୁ ପଡ଼ିବ ବ୍ରହ୍ମଚାରିଣୀ ହୋଇ ? କଣ ପାଇଲେ ସେ ? କେବଳ ଏଇ ମହାରାଣୀର ସମ୍ମାନ, ବୈଭବ ଏବଂ ଆଉ କାହାର ଦାୟ ହୋଇ ରହିବାଠୁଁ ମୁକ୍ତି ?

ତିଷ୍ୟାଙ୍କ ଦୁଇଚକ୍ଷୁ ଝାପ୍‌ସା ହୋଇ ଆସୁଥିଲା । ତାଙ୍କ ସମ୍ମୁଖରୁ ପ୍ରକୃତିର ଅନାବିଳ ସୌନ୍ଦର୍ଯ୍ୟ କୁଆଡ଼େ ଉଭେଇ ଗଲା । ଲୁହର ପରଦା ମଣିଷକୁ ବଡ଼ ଏକାକୀ କରିଦିଏ । ଏଇ ବିଶାଳ ଶୋଭାଯାତ୍ରାର ମଧ୍ୟବର୍ତ୍ତୀ ସୁଦୃଶ୍ୟ ଶିବିକାରେ ବସି ମହାରାଣୀ ତିଷ୍ୟାଙ୍କ ହୃତ୍‌ପିଣ୍ଡ ଯେ କ୍ଷତବିକ୍ଷତ ହେଉଥିଲା, ତା' କେହି ଜାଣିପାରିଲେ ନାହିଁ । ତିଷ୍ୟାଙ୍କର ମନେହେଲା, ତଥାଗତ ଯଦି ଜୀବିତ ଥା'ନ୍ତେ, ତାହେଲେ ତାଙ୍କୁ ପ୍ରଶ୍ନ କରିଥାନ୍ତେ, ହୃଦୟ ନା ଧର୍ମ, କେଉଁଟି ଅଧିକ ଶ୍ରେୟ ?

ଶେଷ ଶିବିର ସ୍ଥାପିତ ହେଲା ଚମ୍ପାନଦୀ କୂଳରେ । ଦୁଇଟି ରାଜ୍ୟ, ଅଙ୍ଗ ଏବଂ ମଗଧର ସୀମା ନିର୍ଦ୍ଦେଶ କରିଛି ଏହି ନଦୀ । ଯେହେତୁ ଫାଲ୍‌ଗୁନ ମାସ, ନଦୀ ବେଶ୍ ଶାନ୍ତ । ଗ୍ରୀଷ୍ମର ଦାବଦାହ ସମୟରେ ନଦୀରେ ଜଳ ରହେନାହିଁ କହିଲେ ଚଳେ । ଏବେ ଇ ସହଜରେ ପାରିହୋଇ ହେବ । ଅବଶ୍ୟ ସମ୍ରାଟ ବର୍ଷାଋତୁ ପାଇଁ ଗୋଟିଏ ସ୍ଥାୟୀ ସେତୁ ନିର୍ମାଣ କରିଛନ୍ତି ।

ତିଷ୍ୟା ତାଙ୍କ ନିଜସ୍ୱ ଶିବିକାରେ ବିଶ୍ରାମ ନେଉଥିଲେ । ଦିନସାରା ଯାତ୍ରା, ହେଉନା ତାହା କେବଳ ଶିବିକାରେ ବସି ରହିବା, କିନ୍ତୁ ସେଥିରେ ବି କ୍ଳାନ୍ତିର ଉଦ୍ରେକ ହୁଏ । କେଶ ପରିଚର୍ଯ୍ୟା ପରେ ତିଷ୍ୟା ଦାସୀକୁ ବାତାୟନ ଉନ୍ମୁକ୍ତ କରିବାକୁ ନିର୍ଦ୍ଦେଶ ଦେଲେ । ଦାସୀ ଇତସ୍ତତଃ ହେଉଛି ଦେଖି ସେ ଜିଜ୍ଞାସା କଲେ, "କଣ ହେଲା, ମୁଁ କଣ କହିଲି ତୁମେ ଶୁଣି ପାରିଲନି ?"

ଦାସୀ ନତମସ୍ତକରେ କହିଲା, "ବାତାୟନର ଅନ୍ୟ ଦିଗରେ ନଦୀ...."

"ସେଥିରୁ କଣ ହେଲା ?"

"ମାର୍ଜନା କରିବେ, ବର୍ତ୍ତମାନ ତ ପବନ ବହୁଛି ନଦୀ ଆଡୁ । ସେଇ ପବନରେ ମହାରାଣୀଙ୍କ ଦେହ ଅସୁସ୍ଥ ହୋଇପାରେ ।"

ସଶବ୍ଦରେ ହସି ଉଠିଲେ ତିଷ୍ୟା । ତା'ପରେ ହଠାତ୍ ଖିଆଲ ହେଲା ମହାରାଣୀଙ୍କୁ ବୋଧହୁଏ ଏଭଳି ହସ ଶୋଭା ପାଏନା । ସେ ପୁଣିଥରେ ଗମ୍ଭୀର ହେବାର ଚେଷ୍ଟା କଲେ, "ଠିକ୍ ଅଛି, ସେ କଥା ମୁଁ ବୁଝିବି । ତୁମେ ବାତାୟନ ଖୋଲି ଦିଅ । ଆଉ ଶୁଣ, ମୁଁ ଯାହା କହିବି ତତ୍‌କ୍ଷଣାତ୍ ତାହା ହିଁ କରିବ । ନ ହେଲେ ଦୂର କରିଦେବି ।"

ଦାସୀ ଭୀତ ଏବଂ ସନ୍ତ୍ରସ୍ତ ଭଙ୍ଗୀରେ ବାତାୟନ ଉନ୍ମୁକ୍ତ କରି ଶିବିକାରୁ ବାହାରି ଗଲା ପରେ ତିଷ୍ୟା ମୁକୁର ଆଡ଼କୁ ଚାହିଁଲେ । ନା, ସତରେ ସେ ମହାରାଣୀ ଭଳି ଦିଶୁଛନ୍ତି । ଆଉ ଏହିଭଳି ହୁକୁମ ଏବଂ ମିଜାଜ୍‌ରେ କଥା ନ କହିଲେ ସେମାନେ ଶ୍ରଦ୍ଧା କରିବେ କାହିଁକି ?

ତିଷ୍ୟା ଲକ୍ଷ୍ୟ କରିଛନ୍ତି, ପ୍ରଥମେ ପ୍ରଥମେ ଦାସଦାସୀମାନଙ୍କ ମୁହଁରେ କେମିତି ଏକ କୌତୁକର ହସ ଥିଲା । କିନ୍ତୁ କ୍ରମଶଃ ସେଟା ଲୁପ୍ତ ହେଉଛି । ତାଙ୍କର ମିଜାଜ୍,

ସମ୍ରାଟଙ୍କ ସହ ସର୍ତ୍ତର କଥା ବୋଧହୁଏ ପ୍ରଚାରିତ ହୋଇଯାଇଛି। ଏବେ ସେମାନେ ତାଙ୍କୁ ଭୟ କରୁଛନ୍ତି। ଭୟରୁ ବୀତଶ୍ରଦ୍ଧତା ଆସେ। ତିଷ୍ୟା ଆସନରୁ ଉଠି ବାତାୟନ ସାମ୍ନାକୁ ଗଲେ। ଜ୍ୟୋସ୍ନାପ୍ଲାବିତ ନଦୀର ଶରୀରରେ ସର୍ବଦା ଶିହରଣ, ବିଶେଷକରି ଯଦି ପବନ ବହୁଥାଏ। ତିଷ୍ୟା ଦେଖିଲେ ନଦୀର ଢେଉଗୁଡ଼ିକ ମନେହେଉଛି ଯେମିତି ତରଳ ରୂପାର ଧାରା! ରାତ୍ରିର ସ୍ନିଗ୍ଧତା ନେଇ ହେମାଳ ବତାସ ବହି ଆସୁଛି ନଦୀର ଦେହ ଛୁଇଁ। ତିଷ୍ୟା ହଠାତ୍ ଆବିଷ୍କାର କଲେ ଏଇ ପ୍ରକୃତିର ଏକ ସ୍ୱତନ୍ତ୍ର ଚେହେରା ରହିଛି। ଏଠି ରୁକ୍ଷତା ନାହିଁ କହିଲେ ଚଳେ। ଅଦ୍ଭୁତ ଶ୍ୟାମଳ ଏବଂ ସ୍ନିଗ୍ଧ ଚେହେରା, ସର୍ବତ୍ର। ଏଇମିତି ରାତିରେ ଜହ୍ନ ଆଉ ନଦୀ ଆଡ଼କୁ ଚାହିଁ ରହୁ ରହୁ ସେ ଯେମିତି ନିଜର ଅଜ୍ଞାତରେ ଅତୀତକୁ ଫେରିଯାଉଥିଲେ।

ସେ ରାତି ମଧ ଥିଲା ଜହ୍ନର। ତେବେ ତା' ଜ୍ୟୋସ୍ନାରେ ଏତେ ଧାର ନ ଥିଲା। ସନ୍ଧ୍ୟାରୁ ହିଁ ଆକାଶରେ ଥିଲା ମେଘର ଯିବା ଆସିବା। କିନ୍ତୁ ସେ ରାତି ପୂର୍ବରୁ ବି ଘଟଣା ଅଛି। ଯା' ପରିଣତିରେ ତିରିଶ ବର୍ଷକାଳ ବ୍ରହ୍ମଚାରିଣୀ ଭଳି କଟେଇବାକୁ ପଡ଼ିଲା ତାଙ୍କୁ। ଆଖି ବନ୍ଦ କଲେ ତିଷ୍ୟା। ଆଉ ଚକିତରେ ଗୋଟିଏ ପଞ୍ଚଦଶୀର ସ୍ମୃତି ଚୁପ୍‌ଚାପ୍ ଆସି ଛିଡ଼ାହେଲା। ଗୋଟିଏ ଅତିସୁନ୍ଦରୀ ଏବଂ ଅତିଚଞ୍ଚଳା ପଞ୍ଚଦଶୀ।

ମାତୃ ବିୟୋଗ ହୋଇଥିଲା ପ୍ରାୟ ବାଳିକା ବୟସରେ। ପୁରୁଷମାନଙ୍କର ବହୁ ବିବାହରେ କୌଣସି ବାରଣ ନାହିଁ, ବରଂ ପ୍ରୌଢ଼ତ୍ୱରେ ପହଞ୍ଚିବା ପୂର୍ବରୁ ପତ୍ନୀ ବିୟୋଗ ହେଲେ ପୁନର୍ବିବାହ ନ କରିବାଟା ହିଁ ବ୍ୟତିକ୍ରମ। ପିତୃଦେବ ସେଇ ପଥର ପଥିକ ହେଲେ। ପତ୍ନୀ ବିୟୋଗ ପରେ ସେ ତାଙ୍କ କାର୍ଯ୍ୟ ନେଇ ଅଧିକ ବ୍ୟସ୍ତ ରହିଲେ। ଦିନରାତି ଶଲ୍ୟତନ୍ତ୍ରାଗାରରେ ଅସୁସ୍ଥ ଲୋକମାନଙ୍କ ସେବାରେ ନିଜକୁ ନିୟୋଜିତ କଲେ।

ମାତୃହରା ବାଳିକା ଯେ ଦାସଦାସୀମାନଙ୍କ ନିକଟରେ ମଣିଷ ହେବାକୁ ଯାଇ ଆହୁରି ବଦମାସ ହୋଇ ଉଠୁଛି, ସେ କଥା ସେ ଖିଆଲ କରିନଥିଲେ। ଯେତେବେଳେ ତାଙ୍କ ନିକଟରେ ଅଭିଯୋଗ ସବୁ ଆସିବାକୁ ଲାଗିଲା, ସେ ବିଚଳିତ ହେଲେ। ଦୁରନ୍ତ ବାଳିକା କାହା ଉଦ୍ୟାନରୁ ଫଳ ଚୋରାଇଛି, କିନ୍ତୁ ନ ଖାଇ ଅଯଥା ନଷ୍ଟ କରି ହିଁ ଆନନ୍ଦିତ। ସମବୟସୀ ବାଳକମାନଙ୍କ ସହିତ ଦିନରାତି ଇଆଡ଼େ

ସିଆଡ଼େ ଘୂରିବୁଲୁଛି। ନଗରୀର ଲୋକେ ଦେଖନ୍ତି ଗୋଟିଏ ପରମା ସୁନ୍ଦରୀ ବାଳିକାର ସଙ୍ଗ ପାଇବା ପାଇଁ ବାଳକମାନେ ବିପୁଳ ଉତ୍‌ସାହରେ ଯେଉଁସବୁ କାଣ୍ଡ କରୁଛନ୍ତି, ତାହା ଆଦୌ ସହନୀୟ ନୁହେଁ। ସାମାନ୍ୟତମ ଗୁରୁ ଗୁରୁଜନ ଜ୍ଞାନ ସୁଦ୍ଧା ନାହିଁ ବାଳିକାର। ଗୁରୁଜନମାନଙ୍କ ମୁହଁ ଉପରେ ଏମିତି ସବୁ କଥା କହେ, ଯାହା ସହ୍ୟ କରିବା କଷ୍ଟ।

ପିତୃଦେବ ଅଭିଯୁକ୍ତ ହୋଇ କନ୍ୟା ଆଡ଼କୁ ନଜର ଦେଲେ। କେତେବେଳେ ଯେ ସମୟର ଇସାରାରେ ଯୌବନ ତା'ଦେହରେ ପ୍ରବେଶ କରିଛି, ଏତେଦିନ ପିତୃଦେବ ତା' ଖିଆଲ କରିନାହାନ୍ତି। ଏଇ ବୟସ ବିବାହର ଉପଯୁକ୍ତ ବୟସ। କିନ୍ତୁ ଏଇ ବଲ୍‌ଗାହରା ଅଭବ୍ୟା ବାଳିକାକୁ କେଉଁ ପରିବାରର ବା ଦୁର୍ମତି ହେବ ବଧୂ ରୂପେ ଗ୍ରହଣ କରିବାକୁ? ତାକୁ ଶିକ୍ଷା, ଶିକ୍ଷିତା ଏବଂ ମାର୍ଜିତା କରିବା ଆଶୁପ୍ରୟୋଜନ। ନଚେତ ସୁଗୃହରେ ବିବାହ ଦେଇ ହେବନାହିଁ। ମାତୃହୀନା ବାଳିକା ଉପରେ ସେ କ୍ରୋଧ ପ୍ରକାଶ କରି ପାରିଲେ ନାହିଁ। ଶେଷରେ ସ୍ଥିର କଲେ ବାଳିକାର ମାନସିକ ପରିବର୍ତ୍ତନ ପାଇଁ ତାକୁ ଗୁରୁ ଗୃହକୁ ପ୍ରେରଣ କରିବେ।

ଏକଶତ ଯୋଜନ ଦୂରରେ ଏକ ଗଭୀର ଅରଣ୍ୟ ମଧ୍ୟରେ ବିଶୁଦ୍ଧୀକରଣ ବିଦ୍ୟାଳୟ ସ୍ଥାପିତ ହୋଇଛି। ଯେଉଁ ସବୁ ବାଳକ ବାଳିକାମାନଙ୍କୁ କୌଣସି ପ୍ରକାରରେ ଶିକ୍ଷାଦାନ ସମ୍ଭବ ନୁହେଁ, ସେମାନଙ୍କର ଚରିତ୍ରଗଠନରେ ଏଇ ବିଦ୍ୟାଳୟ ସାହାଯ୍ୟ କରେ। ଦେଶର ବିଭିନ୍ନ ପ୍ରାନ୍ତରୁ ବାଳକ-ବାଳିକାମାନଙ୍କୁ ସେଠାରେ ପଠା ହୋଇଛି। ଆଶ୍ରମର କଠିନ ଜୀବନଯାତ୍ରା ପ୍ରତ୍ୟେକଙ୍କୁ ବିନା ପ୍ରତିବାଦରେ ଯାପନ କରିବାକୁ ପଡ଼େ। ଏଇ ଶିକ୍ଷାର୍ଥୀମାନଙ୍କ ମଧ୍ୟରେ ଯେମିତି ବୈଶ୍ୟ ବାଳକମାନେ ଅଛନ୍ତି, ସେମିତି ରାଜପୁତ୍ରମାନଙ୍କର ମଧ୍ୟ ଅଭାବ ନାହିଁ। ବିଦ୍ୟାଳୟର ପ୍ରଧାନ କିମ୍ବା ଆଶ୍ରମାଧ୍ୟକ୍ଷ ପ୍ରବୀଣ ଏବଂ କଠୋର ଲୋକ। ତାଙ୍କ ଶିକ୍ଷାଦାନ ପ୍ରକ୍ରିୟା ଏମିତି ସରଳ ଏବଂ ବାସ୍ତବ ଯେ, ସେଠୁ ଫେରି ଛାତ୍ରମାନେ ଏ ସମାଜରେ ସୁପ୍ରତିଷ୍ଠିତ ହୋଇଛନ୍ତି। ଆଶ୍ରମର ଦୁଇଟି ଭାଗ। ବାଳକ ଏବଂ ବାଳିକାମାନେ ପୃଥକଭାବେ ଅବସ୍ଥାନ କରନ୍ତି। ଏକମାତ୍ର ପାଠାଭ୍ୟାସ ବ୍ୟତୀତ ସେମାନଙ୍କର ମିଳିତ ହେବାର ସୁଯୋଗ ଘଟିଥାଏ ମାତ୍ର କେତୋଟି ଅନୁଷ୍ଠାନରେ।

ପିତୃଦେବ ସିଦ୍ଧାନ୍ତ ନେଲେ କନ୍ୟାକୁ ସେଇ ଆଶ୍ରମକୁ ପ୍ରେରଣ କରିବେ। ଶ୍ରବଣମାତ୍ରେ କନ୍ୟା ବିଦ୍ରୋହୀ ହୋଇଥିଲା, କିନ୍ତୁ ଜୀବନରେ ପ୍ରଥମ ଥର ପାଇଁ ସେ ତାକୁ ବାଧ୍ୟ କଲେ। ବନ୍ଦିନୀ ସିଂହୀ ଭଳି ସେ ଆଶ୍ରମକୁ ଆସିଲା। ଏକଶହ ଯୋଜନ ପଥ କମ୍ ଦୀର୍ଘ ନୁହେଁ। ଆଶ୍ରମରେ ପ୍ରବେଶ ପୂର୍ବରୁ ଗୋଟିଏ ଦିନ କଟିଯାଏ ଅରଣ୍ୟ ଅତିକ୍ରମ କରିବାକୁ। ସୂର୍ଯ୍ୟାସ୍ତ ପରେ ସେଇ ଅରଣ୍ୟ ପଥରେ ପାଦ ଦେବା କଥା କେହି ଚିନ୍ତା ବି କରନ୍ତି ନାହିଁ। ହିଂସ୍ର ଜନ୍ତୁରେ ପରିପୂର୍ଣ୍ଣ ଅରଣ୍ୟ ଶେଷରେ ଏକ ବିଶାଳ ସରୋବର ପାର୍ଶ୍ୱରେ ସେଇ ଆଶ୍ରମ।

ଗୃହତ୍ୟାଗ ସମୟରେ ବିଦ୍ରୋହର ଚେଷ୍ଟା କଲେ ମଧ୍ୟ ଅରଣ୍ୟ ପ୍ରବେଶ ପରେ ବାଳିକା 'କୌତୁକ ଅନୁଭବ କଲା। ଏଇ ପ୍ରଥମଥର ସେ ପରିଚିତ ପରିବେଶ ବାହାରକୁ ଯାଉଛି। ତାର ମନେହେଲା, ଏଠି ଆସି ଭଲ ଇ ହୋଇଛି। ଜନ୍ମାବଧି ଗୋଟିଏ ଜାଗାରେ ବାସ କରି ଚିଟା ଲାଗୁଥିଲା। ଯା'ହେଉ, ସେଥିରୁ ଅନ୍ତତଃ ମୁକ୍ତି ମିଳିଲା। ତାକୁ ସଂଶୋଧନର ପ୍ରୟାସ କଠୋର ହେଲେ, ଏଇ ଅରଣ୍ୟରେ ଏବେ ସ୍ୱଚ୍ଛନ୍ଦରେ ଲୁଚି ରହିହେବ।

ଆଶ୍ରମାଧ୍ୟକ୍ଷଙ୍କୁ ଦେଖି କିନ୍ତୁ ବାଳିକାକୁ ଭଲ ଲାଗିଲା। ବୃଦ୍ଧ, ଶୁଦ୍ଧ, ସଦାଚାରୀ ଏବଂ ମୁହଁରେ ସବୁବେଳେ ହସ ଲାଗି ରହିଛି। ପ୍ରଥମ ଦର୍ଶନରେ ସେ କହିଲେ, "ତମକୁ ପାଇ ମୋତେ ଖୁବ୍ ଭଲ ଲାଗୁଛି। ତୁମ ସହିତ କେତେକ ବାଳିକା ରହିବେ, ଯେଉଁମାନେ ନିହାତି ଅଶିଷ୍ଟ। ତୁମେ କିନ୍ତୁ ସେମାନଙ୍କୁ ବନ୍ଧୁ କରିନେବ। କାରଣ ମୁଁ ମନେକରେ ସମସ୍ତ ମଣିଷ ମଧ୍ୟରେ ଗୋଟିଏ କୋମଳ ପ୍ରାଣ ଅଛି। ଆମେ ସେଟା ଆବିଷ୍କାର କରିପାରୁନା ବୋଲି ବିବ୍ରତ ହେଉ।"

ବାଳିକା ଦେଖିଲା, ସେମାନଙ୍କୁ ଯେଉଁ ଗୃହରେ ରହିବାକୁ ଦିଆ ହୋଇଛି, ତା ଆଦୌ ବିଳାସବହୁଳ ନୁହେଁ, ଅଥଚ୍ ଅସୁବିଧା କିଛି ହେଉନାହିଁ। ଏଇ ଗଭୀର ଅରଣ୍ୟରେ ଏହାଠାରୁ ଭଲ କିଛି କଳ୍ପନା ମଧ୍ୟ କରାଯାଇ ପାରେନା। ତା' ସଙ୍ଗିନୀମାନେ ସମସ୍ତେ ନବାଗତା। ପୁରୁଣା ଯେଉଁମାନେ, ସେମାନଙ୍କୁ ଅଲଗା ରହିବାକୁ ପଡ଼େ। ନବାଗତାମାନେ ସମସ୍ତେ ତା'ଠୁଁ ବୟସରେ ସାନ। ସୁତରାଂ ଅବିଳମ୍ବେ ସେ ସେମାନଙ୍କ ଉପରେ କର୍ତ୍ତୃତ୍ୱ ଜାହିର କରିବାକୁ ଲାଗିଲା।

କିଶୋର ଏବଂ କିଶୋରୀମାନଙ୍କର ଅବସ୍ଥାନ ପରସ୍ପରର ବିପରୀତମୁଖୀ। ଦୁଇପକ୍ଷକୁ ପରସ୍ପରର ଇଲାକାକୁ ଯିବା ଆସିବା ଉପରେ ନିଷେଧାଜ୍ଞା ଅଛି।

ପରଦିନ ପ୍ରଭାତରେ ପ୍ରଥମ ପାଠ ଗ୍ରହଣ ପୂର୍ବରୁ ନବାଗତମାନଙ୍କର ପରିଚୟ କରେଇ ଦେଉଥିଲେ ଅଧ୍ୟକ୍ଷ। ଗୋଟିଏ ପାଖରେ ବାଳିକାମାନେ, ଅନ୍ୟ ପାଖରେ ବାଳକ ଏବଂ କିଶୋରମାନେ ବସିଛନ୍ତି। ପ୍ରଥମେ ବାଳିକାମାନଙ୍କର ନାଁ ଧରି ଡାକୁଥିଲେ ଅଧ୍ୟକ୍ଷ। ସେତେବେଳେ ସେମାନଙ୍କୁ ଆଗେଇଯାଇ ଅଧ୍ୟକ୍ଷଙ୍କ ପାଖରେ ଛିଡ଼ାହୋଇ ସହପାଠୀ ଏବଂ ପାଠିନୀମାନଙ୍କୁ ଅଭିବାଦନ ଜଣେଇବାକୁ ପଡ଼େ। ବାଳିକା ନିଜ ନାମ ଶୁଣିବାମାତ୍ରେ ଅପରପ୍ରାନ୍ତକୁ ଚାହିଁଲା। ସେଠାରେ ଛାତ୍ରମାନେ ସମସ୍ତେ ଏକାଠି ବସିଛନ୍ତି, କେବଳ ଜଣଙ୍କ ବ୍ୟତୀତ। ସେ ଦଳ ବାହାରେ ମୁଣ୍ଡତଳକୁ କରି ଏମିତି ଭଙ୍ଗୀରେ ରହିଛି, ଯେମିତି ପିଞ୍ଜରାବଦ୍ଧ ସିଂହ। ଯଦିଓ ସେ ଗମ୍ଭୀର ଏବଂ ମୁହଁର ଅଧିକାଂଶ ଦୃଷ୍ଟି ଆଢୁଆଳରେ—କିନ୍ତୁ ତାକୁ ଦେଖି ବୁଝି ହେଉଥିଲା ଯେ ସେ ଦଳର ଅନ୍ୟ ଶିକ୍ଷାର୍ଥୀମାନଙ୍କଠାରୁ ପୃଥକ୍। ତା' ପୋଷାକ ଅନ୍ୟ ଆଶ୍ରମ ବାଳକଙ୍କ ଭଳି; କିନ୍ତୁ ତଥାପି ଯେମିତି ଦୃଷ୍ଟି ଲାଖି ରହେ।

ସେ ଧୀରେ ଧୀରେ ଆଶ୍ରମାଧ୍ୟକ୍ଷଙ୍କ ପାଖରେ ଯାଇ ଛିଡ଼ା ହେଲା। ଅଧ୍ୟକ୍ଷ ତାର ପରିଚୟ ଦେଲେ। କହିଲେ, ''ଏଇ ନବାଗତା ଆଶ୍ରମ ବାଳିକାର ନାଁ ତିଷ୍ୟା। ଅଳ୍ପ ବୟସରେ ମାତୃହରା। ତୁମେ ସମସ୍ତେ ଯାକୁ ଆପଣାର କରିନିଅ। ତିଷ୍ୟାର ପିତୃଦେବ ଜଣେ ବିଶିଷ୍ଟ ଶଲ୍ୟବିଦ୍। ଜାଣେନା, ସେ ପିତୃଦେବଙ୍କ କାର୍ଯ୍ୟକଳାପ କେତେଟା ଦେଖିଛି। ତଥାପି ଆଶା କରିବି ଆମ ଭିତରୁ କାହାରି ଯଦି ଅସୁସ୍ଥତା ପାଇଁ ପ୍ରୟୋଜନ ହେବ, ସେ ଆଗେଇ ଆସିବ। ତା' ସୌନ୍ଦର୍ଯ୍ୟ କେବଳ ଶରୀରରେ ସୀମାବଦ୍ଧ ନୁହେଁ, କାମରେ ମଧ୍ୟ ପ୍ରକାଶିତ ହେବ।''

ତିଷ୍ୟା ଅନ୍ତରରେ କେମିତି ଏକ ପ୍ରଶାନ୍ତିର ପ୍ରଲେପ ପଡ଼ିଲା। ସେ ସହପାଠୀ ଏବଂ ପାଠିନୀମାନଙ୍କୁ ଅଭିବାଦନ ଜଣାଇ ଏବଂ ଅଧ୍ୟକ୍ଷଙ୍କୁ ପ୍ରଣାମ କରି ନିଜ ସ୍ଥାନକୁ ଫେରି ଆସିବା ବାଟରେ ଆଖି କୋଣରେ ଚାହିଁ ଦେଖିଲା, ସେଇ ଆବଦ୍ଧ ସିଂହ ଥରେ ହେଲେ ବି ମୁହଁ ଉଠେଇନି, ତାକୁ ଦେଖିନି, ତା'କଥା ଶୁଣିଛିକି ନା—ସନ୍ଦେହ।

ଏହାପରେ ଶିକ୍ଷାର୍ଥୀମାନଙ୍କର ପରିଚୟ କରେଇ ଦେଉଥିଲେ ଅଧ୍ୟକ୍ଷ। ଜଣ ଜଣ କରି ସମସ୍ତେ ଯେତେବେଳେ ପରିଚିତ ହୋଇଗଲେ, ସେତେବେଳେ ସେ କହିଲେ, ''ଏଥର ତୁମେମାନେ ଯାହା ସହିତ ପରିଚିତ ହେବ, ସେ ଆମର ଗର୍ବ। ହୁଏତ ଭବିଷ୍ୟତ ତା' ପାଇଁ ସ୍ୱର୍ଣ୍ଣାକ୍ଷରରେ ଲେଖି ରଖିଛି ଉଜ୍ଜ୍ୱଳ ବାକ୍ୟମାଳା। ରାଜକୁମାର, ଏଠାକୁ ଆସ।''

ପ୍ରଥମରେ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ ପିଲାଟି ଆଡୁ। କିନ୍ତୁ ଅନ୍ୟମାନେ କିଛିଟା ବିସ୍ମୟବୋଳା ଆଖିରେ ଚାହିଁଲେ। ତିଷ୍ୟା କୌତୁକ ବୋଧ କଲା। ସେ ଠିକ୍ ଭାବିଥିଲା, ଏ ସ୍ୱତନ୍ତ୍ର, ଅନ୍ୟମାନଙ୍କ ସହ କୌଣସି ମେଳ ନାହିଁ। ରାଜକୁମାରମାନଙ୍କର ଏହିଭଳି ଚେହେରା ହୋଇପାରେ, ସେଟା ତାର ବୁଝିବା ଉଚିତ ଥିଲା। ତେବେ ରାଜକୁମାର ଯେ ଖୁବ୍ ଅସୁଖୀ, ସେଟା ତାର ବ୍ୟବହାରରୁ ପ୍ରକାଶ ପାଉଛି। ତିଷ୍ୟା ଜାଣି ସାରିଲାଣି, ପିତା ମାତାମାନେ ଯେତେବେଳେ ସନ୍ତାନମାନଙ୍କ ଦୌରାତ୍ମ୍ୟରେ ଆଉ ପାରି ଉଠନ୍ତି ନାହିଁ, ସେତେବେଳେ ସେମାନଙ୍କୁ ସଂଶୋଧନ କରିବା ପାଇଁ ଏଠାକୁ ପଠାନ୍ତି। ତାର ଜାଣିବାକୁ ଇଚ୍ଛା ହେଉଥିଲା, ରାଜକୁମାର କି ଅନ୍ୟାୟ କରିଛନ୍ତି ?

ଦ୍ୱିତୀୟ ଥର ଆହ୍ୱାନ ପରେ ମୁହଁ ଟେକି ଚାହିଁଲା ରାଜକୁମାର। ଯେମିତି ତାକୁ ଅକାରଣରେ ବିରକ୍ତ କରାହେଉଛି। କିନ୍ତୁ ସେ ଉଠି ଛିଡ଼ା ହେଲା। ପଚାରିଲା, ''ମୋତେ କଣ କରିବାକୁ ହେବ ?''

ସମସ୍ତେ ଲକ୍ଷ୍ୟ କଲେ ରାଜକୁମାର ସ୍ଥାନ ତ୍ୟାଗ କରି ଅଧ୍ୟକ୍ଷଙ୍କ ପାଖରେ ଯାଇ ଛିଡ଼ା ହେଲା ନାହିଁ, ତା କଥା କହିବା ଭଙ୍ଗୀରେ ସାମାନ୍ୟ ନମ୍ରଭାବ ମଧ୍ୟ

ନାହିଁ। ଅଧକ୍ଷ କିନ୍ତୁ ଆଦୌ ଉତ୍ତେଜିତ ହେଲେନାହିଁ। ସେ କହିଲେ, "ଏଠାକୁ ଆସ। ତୁମର ସତୀର୍ଥମାନଙ୍କ ସହ ପରିଚିତ ହୁଅ। ଏମାନଙ୍କ ସହିତ ହିଁ ତୁମକୁ ଦିନଯାପନ କରିବାକୁ ପଡ଼ିବ।"

"ନା, ମୁଁ ଯେତେବେଳେ ଏଠି ଆସିବାକୁ ବାଧ୍ୟ ହୋଇଛି, ସେତେବେଳେ ନିଜ ମନମୁତାବକ ରହିବି। ତା' ଛଡ଼ା ରାଜା କେତେବେଳେ ବି ସାଧାରଣ ଲୋକମାନଙ୍କୁ ଅଭିବାଦନ କରେ ନାହିଁ। ଆପଣ ଏମାନଙ୍କୁ କହି ଦିଅନ୍ତୁ ମୋତେ ଯେମିତି ବିରକ୍ତ ନ କରନ୍ତି।"

ପ୍ରତିଟି ଶବ୍ଦ ପଛରେ ଯେତିକି କ୍ରୋଧ ଥିଲା, ସେତିକି ବି ଥିଲା ଉପେକ୍ଷା।

ଗୁଞ୍ଜନ ଉଠିଲା ଶିକ୍ଷାର୍ଥୀମାନଙ୍କ ମଧ୍ୟରେ। ଅଧକ୍ଷ ହାତଟେକି ସେମାନଙ୍କୁ ଶାନ୍ତ ହେବାପାଇଁ ଇଙ୍ଗିତ କଲେ। ତା'ପରେ ମୃଦୁ ହସି କହିଲେ, "ଏଇ ଆଶ୍ରମରେ ଶିକ୍ଷାର୍ଥୀମାନେ ପହଞ୍ଚିଲାକ୍ଷଣି ସେମାନଙ୍କ ମଧ୍ୟରେ କୌଣସି ଭେଦାଭେଦ ରହିବ ନାହିଁ। ତୁମେ ରାଜକୁମାର ଥିଲ ଏବଂ ରହିବ। କିନ୍ତୁ ଏଇ ମୁହୂର୍ତ୍ତରେ ମୋ ପାଖରେ ତୁମେ ଜଣେ ସାଧାରଣ ଛାତ୍ରଠୁଁ ଆଦୌ ଅଧିକ କିଛି ନୁହଁ। ତୁମ ପିତା ମଧ୍ୟ ଏ ବିଷୟରେ ଅବଗତ ଅଛନ୍ତି। ଅନ୍ୟ ଶତପୁତ୍ର ନେଇ ସେ ବିବ୍ରତ ନୁହଁନ୍ତି, କିନ୍ତୁ ତୁମକୁ ଏଠି ପଠେଇବା ପାଇଁ ସେ ବାଧ ହୋଇଛନ୍ତି। ମୁଁ ତୁମର ସମସ୍ତ କ୍ରିୟାକଳାପ ଜାଣେ। ମୁଁ ବିଶ୍ୱାସ କରେ, ମଣିଷ ଭୁଲ କରେ ଏବଂ ମଣିଷ ହିଁ ତା ସଂଶୋଧନ କରେ। ତୁମେ ଗିରିବ୍ରଜ ବା ରାଜଗୃହ ଅଥବା ପାଟଳିପୁତ୍ରରେ କ'ଣ କରିଛ, ତା ଭାବିବାକୁ ଚେଷ୍ଟା କର। ଆଶ୍ରମର ସୁଶୃଙ୍ଖଳ ପରିବେଶ ନିଶ୍ଚିତଭାବେ ତୁମ ମନରେ ଅନୁଶୋଚନା ଆଣିଦେବ। ଏଠି ତୁମକୁ ସମସ୍ତଙ୍କ ସହ ମିଳିମିଶି କାମ କରିବାକୁ ହେବ। କୌଣସି ଅନ୍ୟାୟ କଲେ ତୁମକୁ ବି ଶାସ୍ତି ଗ୍ରହଣ କରିବାକୁ ହେବ। କିନ୍ତୁ ମୋତେ ସେ ପରିସ୍ଥିତିକୁ ନ ନେଇଯିବା ଭଳି ଶୁଭବୁଦ୍ଧି ତୁମର ଉଦୟ ହେଉ।" କଥାଗୁଡ଼ିକ କହି ଅଧକ୍ଷ ଅନ୍ୟମାନଙ୍କ ଆଡ଼କୁ ମୁହଁ ଫେରେଇ କହିଲେ, "ମୁଁ ଏତେବେଳଯାଏଁ ଯା' ସହିତ ଆଲୋଚନା କରୁଥିଲି, ସେ ମଗଧର ରାଜକୁମାର।"

ମଗଧର ରାଜକୁମାର!

ପରେ ସଙ୍ଗିନୀମାନଙ୍କ ମଧ୍ୟରୁ ଜଣଙ୍କଠାରୁ ରାଜକୁମାରଙ୍କ ଗଳ୍ପ ଶୁଣିଲା ତିଷ୍ୟା। ଝିଅଟି ରହେ ଚମ୍ପା ନଦୀର ଅନ୍ୟ ଏକ ପ୍ରାନ୍ତରେ; ଅଙ୍ଗ ରାଜ୍ୟର ରାଜଧାନୀ ଚମ୍ପା ନଗରୀରେ। ମଗଧ ଏବଂ ଅଙ୍ଗ ପାଖାପାଖି ରାଜ୍ୟ ଥିଲା ଏକଦା। ବର୍ତ୍ତମାନ ମଗଧର ଅନ୍ତର୍ଗତ ବୋଲି ଝିଅଟି ଏଇ ରାଜକୁମାର ବିଷୟରେ ନାନା ତଥ୍ୟ ଜାଣିଛି। ପାଟଳିପୁତ୍ର ଏବଂ ରାଜଗୃହର ନାଗରିକମାନେ ଏଇ ପ୍ରାୟ ତରୁଣ ରାଜକୁମାରର ଅତ୍ୟାଚାରରେ ବିବ୍ରତ। ପଥ ମଧ୍ୟରେ କାହାରି ରଥ ଦେଖିଲେ, ତାର ସାରଥିକୁ

ବଳ ପ୍ରୟୋଗରେ ନିଷ୍କ୍ରିୟ କରି ରାଜକୁମାର ନିଜେ ଏମିତି ବେଗରେ ରଥ ଚାଳନା କରନ୍ତି ଯେ ପଥଯାତ୍ରୀଙ୍କ ପ୍ରାଣ ସଂଶୟ– ସଙ୍କୁଳ ହୋଇଉଠେ ଏବଂ ଏଥିରେ ପୁଣି ରାଜକୁମାର ପାଉଥିଲେ କାଳେ ପ୍ରଚୁର ଆନନ୍ଦ। ସ୍ତ୍ରୀ ଲୋକମାନେ ଚମ୍ପା ନଦୀରେ ଅବଗାହନ ପାଇଁ ଯିବାକୁ ଭୟ କରୁଥିଲେ। ରାଜକୁମାର ସେମାନଙ୍କ ଉପରେ ଅତ୍ୟାଚାର କରି କେବଳ ଖୁସୀ ହେଉ ନ ଥିଲେ, ଅତ୍ୟାଚାରର ପରିଣାମ ମଧ୍ୟ ଉପଭୋଗ କରୁଥିଲେ। ଏସବୁ ଅତ୍ୟାଚାର ହେଉଥିଲା ସମ୍ପୂର୍ଣ୍ଣ ଅକାରଣରେ। ରାଜକୁମାରଙ୍କ ଖିଆଲ ହେଉଥିଲା, ତେଣୁ ସେ କରୁଥିଲେ। ପୁତ୍ର ବିରୁଦ୍ଧରେ ଅନେକଙ୍କ କ୍ଷୋଭ କଥା ସମ୍ରାଟ ଜାଣିଥିଲେ। କିନ୍ତୁ ଯେତେବେଳେ ଗୋଟିଏ ସାମାନ୍ୟ କାରଣରେ ରାଜକୁମାର ଏକ ବ୍ରାହ୍ମଣର ଆଙ୍ଗୁଳି କାଟି ପକେଇଲେ ସେତେବେଳେ ସେ ପ୍ରକୃତରେ କ୍ରୁଦ୍ଧ ହୋଇ ରାଜକୁମାରଙ୍କୁ ଏଠି ପଠେଇଦେଲେ ସଂଶୋଧନ ପାଇଁ। ଶୁଣାଯାଉଛି, ରାଜା ଅଧକ୍ଷଙ୍କୁ ରାଜକୁମାରଙ୍କ ଶାସନ ବିଷୟରେ ପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି।

ସଙ୍ଗିନୀ ତାକୁ ସତର୍କ କରିଦେଲା, ଏଇ ରାଜକୁମାର ଶୃଗାଳ ଭଳି ଧୂର୍ତ୍ତ, ସାପ ଭଳି ଶଇତାନ ଆଉ ସିଂହ ଭଳି ଶକ୍ତିଶାଳୀ। ଅତଏବ ଏମିତି ଲୋକଠୁଁ ଶତହସ୍ତ ଦୂରରେ ରହିବା ହିଁ ଭଲ।

ବସ୍ତୁତଃ, ସେ ଆଶ୍ରମକୁ ଯେଉଁମାନେ ହିଁ ଆସିଛନ୍ତି, ସେମାନଙ୍କର ଅତୀତରେ କିଛି ନା କିଛି ଗର୍ହିତ କାର୍ଯ୍ୟର ସ୍ମୃତି ଥିଲା। କିନ୍ତୁ ଅଧିକାଂଶ ଥିଲେ ଚଞ୍ଚଳ, ଅବାଧ୍ୟ, ଅବିଷ୍ଟ। ଅପରାଧ ଥିଲା, କିନ୍ତୁ ତା ଅତି ସାମାନ୍ୟ। ପିତାମାତାମାନେ ବିବ୍ରତ ହୋଇ ଏଠି ପଠାନ୍ତି ସଂଶୋଧନ ଆଶାରେ। କିନ୍ତୁ ରାଜକୁମାର ଯେଉଁ ଅପରାଧ କରିଆସିଛନ୍ତି, ସାଧାରଣ ମଣିଷ ହୋଇଥିଲେ କଠୋର ଶାସ୍ତିବିଧାନ ହୋଇଥାନ୍ତା ତତ୍‌କ୍ଷଣାତ୍। ଏଠି ଆସିବାର ଆଉ ସୁଯୋଗ ଘଟି ନଥାନ୍ତା।

ଏସବୁ କଥା ଯେତେ ଶୁଣିଛି, ସେତେ ମନେ ହୋଇଛି ଏଇ ରୂପବାନ ରାଜକୁମାର ସାଧାରଣ ମଣିଷଠୁଁ ବହୁତ ବହୁତ ଅଲଗା। ଅଦ୍ଭୁତ ଆକର୍ଷଣ ଅଛି ତାଙ୍କ ଚାହାଣୀରେ ପଦକ୍ଷେପରେ। ପ୍ରତିଦିନ ସେ ଯେତେବେଳେ ଶୁଣୁଥିଲା, ରାଜକୁମାର ଆଜି ଆଶ୍ରମର ଶୃଙ୍ଖଳା ଭଙ୍ଗ କରିଛନ୍ତି ସେ ଭାରି ଖୁସି ହେଉଥିଲା। କେବଳ ସେ ନୁହେଁ। ତାର ସଙ୍ଗିନୀମାନଙ୍କ ମଧ୍ୟରୁ ଅନେକ ଇ ରାଜକୁମାରଙ୍କ ଆଡ଼କୁ ସପ୍ରଶଂସ ଆଖିରେ ଚାହିଁ ରହୁଥିଲେ। କିନ୍ତୁ ତିଷ୍ୟାର ଆତ୍ମବିଶ୍ୱାସ ଥିଲା କେହି ତା ଭଳି ସୁନ୍ଦରୀ ନୁହଁନ୍ତି।

ଏଠି ଯଦି ରାଜକୁମାର କୌଣସି ସ୍ତ୍ରୀ ଲୋକ ପ୍ରତି ଆସକ୍ତି ହୋଇପଡ଼ିବେ, ତା'ହେଲେ ତାକୁ ହିଁ ନିର୍ବାଚନ କରିବେ। ଅବଶ୍ୟ ସେମିତି ପ୍ରସ୍ତାବ ଆସିଲେ ହିଁ ସେ ପ୍ରତ୍ୟାଖ୍ୟାନ କରିବ। ପ୍ରତ୍ୟାଖ୍ୟାନ ଯେ ଆକର୍ଷଣ ବଢ଼େଇଦିଏ, ସେଇ ଅଳ୍ପ ବୟସରେ ହିଁ ତିଷ୍ୟା ତା' ଜାଣିଯାଇଥିଲା।

ରାଜକୁମାର ପାଠଗ୍ରହଣ ଅପେକ୍ଷା ଶାସ୍ତି ଗ୍ରହଣ କରୁଥିଲେ ଅଧିକ। ଅଧ୍ୟକ୍ଷ-ପତ୍ନୀଙ୍କ ବୟସ ହେଲାଣି। ତାଙ୍କ ପ୍ରତି ଅଶାଳୀନ କଟୁକ୍ତି କରିବା ଅପରାଧରେ ରାଜକୁମାରଙ୍କୁ ଅଧ୍ୟକ୍ଷ ସାରାଦିନ କାଷ୍ଠ ଛେଦନର ଆଦେଶ ଦେଲେ। ସତୀର୍ଥକୁ ମୁଷ୍ଟ୍ୟାଘାତ କରିବା ଅପରାଧରେ ଦିନେ ତାଙ୍କୁ ଉପବାସରେ କଟେଇବାକୁ ପଡ଼ିଲା। ନିତ୍ୟ ତାଙ୍କର ଅପରାଧ ଆଉ ଶାସ୍ତି ଲାଗି ରହିଥିଲା। ତା'ଛଡ଼ା ଅପରାଧ ବଡ଼ ସଂକ୍ରାମକ। ଅନ୍ୟାନ୍ୟ ସବୁ ସଙ୍ଗୀ ରାଜକୁମାରଙ୍କ କାର୍ଯ୍ୟରେ ଉଦ୍ଦୀପ୍ତ ହେବାମାତ୍ରେ ଅଧ୍ୟକ୍ଷ ସେମାନଙ୍କୁ କଡ଼ାଭାବରେ ସତର୍କ କରିଦେଲେ। ଅଶିଷ୍ଟ ଏବଂ ଆଇନଭଙ୍ଗକାରୀମାନଙ୍କୁ ଶାସ୍ତି ଦେବାପାଇଁ ଗୋଟିଏ ବାହିନୀ ଅଧ୍ୟକ୍ଷଙ୍କ ଆଦେଶ ଅପେକ୍ଷାରେ ରହିଲେ।

ଦିନେ ଅବସ୍ଥା ଚରମରେ ପହଞ୍ଚିଲା। ଜଣେ ଶିକ୍ଷାର୍ଥୀ ସହିତ ରାଜକୁମାରଙ୍କ ବିତର୍କ ହେଉଥିଲା ଦେବତାମାନଙ୍କୁ ନେଇ। ଶିକ୍ଷାର୍ଥୀଟି କହୁଥିଲା, "କାର୍ତ୍ତିକ ହେଲେ ସୁନ୍ଦର ଦେବତା, କିନ୍ତୁ ଇନ୍ଦ୍ରଙ୍କଠୁଁ ଅଧିକ ସୁନ୍ଦର ନୁହଁନ୍ତି। ଏହା ସତ୍ତ୍ୱେ ବି ଲୋକେ ରୂପ କଥା ଉଠିଲା ମାତ୍ରେ କାର୍ତ୍ତିକଙ୍କ ସହିତ ତୁଳନା କରିଥାନ୍ତି।"

ରାଜକୁମାର ଉତ୍ତର ଦେଇଥିଲେ ଇନ୍ଦ୍ର ବା କାର୍ତ୍ତିକଠୁଁ ସେ ଅନେକ ବେଶୀ ସୁନ୍ଦର। ଶିକ୍ଷାର୍ଥୀଟି ପ୍ରତିବାଦ କରିଥିଲା, ଦେବତାମାନଙ୍କ ସହ ମଣିଷର ତୁଳନା କରିବା ଅନୁଚିତ।

ରାଜକୁମାର ଅବଜ୍ଞାର ସହିତ କହିଥିଲେ, "କିଏ ଦେବତା? ଇନ୍ଦ୍ର? ସେ ତ ନପୁଂସକ। ନପୁଂସକ ପୁଣି କଣ ଦେବତା ହୋଇପାରେ? ତା'ଛଡ଼ା ଦେବତା ଫେବତା ବୋଲି କିଛି ନାହିଁ। ସେ ସବୁ ବ୍ରାହ୍ମଣମାନଙ୍କ ମନଗଢ଼ା ଗଳ୍ପ। ତୁମମାନଙ୍କ ଭଳି ଅଜ୍ଞମାନେ ସେଥିରେ ବିଶ୍ୱାସ କରନ୍ତି।"

ଦେବତାଙ୍କ ପ୍ରତି ଏଇଭଳି ଅପମାନଜନକ କଥା ଶୁଣି ସେଇ ବ୍ରାହ୍ମଣତନୟ ଶିକ୍ଷାର୍ଥୀ କ୍ଷିପ୍ତ ହୋଇ କିଛି କହିବାରୁ ରାଜକୁମାର ତାକୁ ଦୁଇ ହାତରେ ଶୂନ୍ୟକୁ ଉଠେଇ ମଲ୍ଲମାନଙ୍କ ଭଳି ବୁଲେଇ ବୁଲେଇ ଏମିତିଭାବେ ପକେଇଲେ ଯେ, ବିଚାରାର ଅବସ୍ଥା ସାଂଘାତିକ ହୋଇପଡ଼ିଲା। ଘଟଣାଟି ଶୁଣିବାମାତ୍ରେ ଅଧ୍ୟକ୍ଷ ଭୀଷଣ କ୍ରୁଦ୍ଧ ହେଲେ। ସେ ତତ୍‌କ୍ଷଣାତ୍ ଶାସ୍ତି ଘୋଷଣା କଲେ। ଆଶ୍ରମ ନିକଟରେ ହିଁ ଯେଉଁ ବିଶାଳ ସରୋବର, ତାର ଠିକ୍ ମଝିରେ ସାମାନ୍ୟ ସ୍ଥଳଭୂମି ମୁଣ୍ଡ ଟେକିଛି, ଦ୍ୱୀପ ଭଳି। ଇଦାନୀ ସେଇ ସରୋବରରେ ସର୍ପ ସଂଖ୍ୟା ବୃଦ୍ଧି ପାଇଥିବାରୁ ଆଶ୍ରମର ଅନ୍ତେବାସୀମାନଙ୍କୁ ସରୋବରକୁ ଯିବା ନିଷେଧ କରାଯାଇଛି। ଅଧ୍ୟକ୍ଷ ରାଜକୁମାରଙ୍କୁ

ଗୋଟିଏ ଡିଙ୍ଗିରେ ବନ୍ଧ ଅବସ୍ଥାରେ ଚଢ଼େଇ ତାଙ୍କ ବାହିନୀ ସାହାଯ୍ୟରେ ପଠେଇଦେଲେ ସେଇ ଦ୍ୱୀପଟିକୁ। କୂଳରୁ ସମସ୍ତେ ଦେଖିଲେ, ରାଜକୁମାରଙ୍କୁ ଦ୍ୱୀପରେ ଓହ୍ଲେଇ ଦେବାମାତ୍ରେ ଭୂମିରେ ମୁହଁମାଡ଼ି ସେ ଶୋଇପଡ଼ିଲେ। ଦ୍ୱୀପରୁ କୂଳକୁ ଆସିବା ପାଇଁ ଡିଙ୍ଗିଟିକୁ ସମୟ ଲାଗିଲା ୨୫ ପଳ। ଅଧକ୍ଷ ଜାଣିନେଲେ, ସେ ସ୍ଥଳଭୂମି ପରିଷ୍କାର। ସର୍ପ ଅବସ୍ଥାନର କୌଣସି ଚିହ୍ନ ନାହିଁ। ପ୍ରହରୀମାନେ ରାଜକୁମାରଙ୍କୁ ସେଠାରେ ଓହ୍ଲେଇ ଦେଇ ହସ୍ତର ବନ୍ଧନ ଖୋଲି ଦେଇ ଆସିଥିଲେ। କିନ୍ତୁ ରାଜକୁମାର ତାଙ୍କ ପାଦର ବନ୍ଧନ ଖୋଲିବାର ପ୍ରୟୋଜନ ବୋଧ ନ କରି ଶୋଇ ପଡ଼ିଲେ। ଅଧକ୍ଷଙ୍କ ଆଦେଶ, ସେଇ ଦ୍ୱୀପରେ ରାଜକୁମାରଙ୍କୁ ତିନିଦିନ ତିନିରାତି ସମ୍ପୂର୍ଣ୍ଣ ଅନାହାରରେ ଏକାକୀ କଟାଇବାକୁ ହେବ। କେହି ତାଙ୍କୁ କୌଣସି ପ୍ରକାର ସାହାଯ୍ୟ କରିବାକୁ ଯିବେ ନାହିଁ। ସେଇ ଦ୍ୱୀପରୁ ସନ୍ତରଣ କରି ପଳେଇ ଯିବାର କୌଣସି ଉପାୟ ନାହିଁ। କାରଣ ସରୋବରରେ ଏତେ ଜଳ ଯେ ସନ୍ତରଣ କରିବା ଭୀଷଣ କଷ୍ଟ। ଏବଂ ତା ସହିତ ରହିଛି ସର୍ପଦଂଶନର ଭୟ। ତା'ଛଡ଼ା ଯଦିବା କେହି ସେ ପଥ ସନ୍ତରଣ କରି ଚାଲିଆସେ, ତେବେ ତାକୁ ଅରଣ୍ୟରେ ଲୁଚି ରହିବାକୁ ପଡ଼ିବ। ସେଟା ଆହୁରି ମାରାତ୍ମକ। ତେବେ ସାରାଦିନ ରାଜକୁମାର ଏକା ଭଙ୍ଗୀରେ ଶୋଇ ରହିଲେ।

ଦ୍ୱିତୀୟ ଦିନ ମଧ୍ୟ ସେଇ ଏକା ଦୃଶ୍ୟ। ଏତେ ଦୂରରୁ ବୁଝାଯାଉନି ରାଜକୁମାରଙ୍କ ଶରୀରରେ ପ୍ରାଣ ଅଛି କି ନା! କାରଣ ଗତକାଲିର ଭଙ୍ଗୀରେ ହିଁ ସେ ସେମିତି ଶାୟିତ। ଖାଦ୍ୟ ବିନା ଜଣେ ମଣିଷ ତିନିଦିନ କଟେଇ ଦେଇପାରେ ବାଧହୋଇ, କିନ୍ତୁ ଜଳ ବିନା ବଞ୍ଚିବା କଷ୍ଟସାଧ। ରାଜକୁମାର ଜଳ ଗ୍ରହଣ କରୁନାହାଁନ୍ତି, ହଲଚଲ ବି ହେଉନାହାଁନ୍ତି। ଅବଶ୍ୟ ଏଇ ସରୋବରର ଜଳକୁ ଆଶ୍ରମରେ ପାନୀୟ ଭାବରେ ବ୍ୟବହାର କଲାବେଳେ ଶୁଦ୍ଧ କରି ନିଆ ହୁଏ। କିନ୍ତୁ ପ୍ରୟୋଜନ ବେଳେ ସେମିତି ପାନ କରି ହୁଏ।

ରାଜକୁମାରଙ୍କ ଅବସ୍ଥା ଅପରାହ୍ଣରେ କେମିତି ଅଛି ତା' ଦେଖିବା ପାଇଁ ଅଧକ୍ଷ ତିନିଜଣ ଶିକ୍ଷାର୍ଥୀଙ୍କୁ ଦ୍ୱୀପକୁ ପଠାଇଲେ। ସେମାନେ ଦ୍ୱୀପରୁ ଫେରିଆସି କହିଲେ, ଅନେକ ଥର ଡାକିବା ସତ୍ତ୍ୱେ ରାଜକୁମାର କୌଣସି ଉତ୍ତର ଦେଲେନାହିଁ। ତେବେ ତାଙ୍କ ଦେହରେ ପ୍ରାଣ ଅଛି, କାରଣ ନିଃଶ୍ୱାସ ପ୍ରଶ୍ୱାସ ନେଲାବେଳେ ତାଙ୍କ ବକ୍ଷଦେଶ କମ୍ପିତ ହେଉଥିଲା। ହୁଏତ ଅଧକ୍ଷ କିଛିଟା କୋମଳ ହୋଇଥିଲେ, କିନ୍ତୁ ରାଜକୁମାର ଜୀବିତ ଏବଂ ଉତ୍ତର ଦେଇ ନ ଥିବାରୁ ବର୍ତ୍ତମାନ ବି ସେ ଅବାଧତା କରୁଛନ୍ତି ଦେଖି, ସେ ତାଙ୍କ ଆଦେଶ କାର୍ଯ୍ୟକାରୀ କରିବାକୁ ମନସ୍ଥ କଲେ। ଏଇଭଳି ଏକ ଦୃଷ୍ଟାନ୍ତ ଶିକ୍ଷାର୍ଥୀମାନଙ୍କ ସାମ୍ନାରେ ରହିଲେ ଭବିଷ୍ୟତରେ ସେମାନେ ସତର୍କ ହେବେ।

କିନ୍ତୁ ସେ ରାତିରେ ନିଦ ଆସୁ ନ ଥିଲା ତିଷ୍ୟାର। କେବଳ ମନେ ହେଉଥିଲା, ରାଜକୁମାର ଯେଉଁ ଭଙ୍ଗୀରେ ଶୋଇ ରହିଛନ୍ତି, କୌଣସି ସର୍ପ ଯଦି ତାଙ୍କୁ ଦଂଶନ କରେ ତେବେ ସେ ସାମାନ୍ୟ ପ୍ରତିରୋଧ ମଧ୍ୟ କରି ପାରିବେ ନାହିଁ। ତାଙ୍କ କାର୍ତ୍ତିକ-କାନ୍ତି ଶରୀର ବିଷରେ ନୀଳ ହୋଇଯିବ, ଏକଥା ଭାବିବା ମାତ୍ରେ ଇ ସେ ଶିହରି ଉଠିଲା। ଆଜିକି ଦୁଇଦିନ ଦୁଇରାତି ରାଜକୁମାର ଅନାହାରରେ। ତାଙ୍କ ମୁଖାବୟବ ନିଶ୍ଚୟ ଶୀର୍ଣ୍ଣ ହୋଇ ପାରୁ ନ ଥିଲା। ଶେଷକୁ ଶଯ୍ୟା ତ୍ୟାଗ କରି ସେ ନିଃଶବ୍ଦରେ ବାହାରକୁ ବାହାରି ଆସିଲା। ଜହ୍ନରାତି ନୁହେଁ। କିନ୍ତୁ ଆକାଶ ନିର୍ମେଘ ଥିବାରୁ ତାରା ଆଲୁଅରେ ଚାଲିବାକୁ ଅସୁବିଧା ହେଉ ନ ଥିଲା। ସେତେବେଳକୁ ରାତ୍ରିର ଶେଷ ପ୍ରହର। ଅନ୍ଧକାର ତରଳ ହୋଇ ଆସୁଥିଲା।

ତିଷ୍ୟାର ଭାରି ଇଚ୍ଛା ହେଉଥିଲା, ରାଜକୁମାରଙ୍କୁ ଥରେ ପାଖରୁ ଦେଖିବ। ଆଜି ଦିନସାରା ଖରାରେ ପଡ଼ିରହିବେ ରାଜକୁମାର। ଆଗାମୀ କାଲି ପ୍ରଭାତରେ ତାଙ୍କୁ ସେଠୁ ଅଣାଯିବ। କିନ୍ତୁ ସେ ସୁଯୋଗ ଯଦି ନ ମିଳେ! ରାଜକୁମାରଙ୍କ ଶାସ୍ତି କମେଇବା ପାଇଁ ଅଧକ୍ଷଙ୍କୁ ଅନୁରୋଧ କଲା ଭଳି ସାହସ ତାର ନାହିଁ। କିନ୍ତୁ ସେ ଡିଙ୍ଗିଟି ନେଇ ଚୁପ୍ କରି ଚାଲି ଯାଇପାରେ। ଦ୍ୱୀପ କୂଳରେ ଡିଙ୍ଗି ରଖି ସେ ଦେଖିପାରେ କୌଣସି ସର୍ପ ରାଜକୁମାରଙ୍କ ଆଡ଼କୁ ଆଗେଇ ଯାଉଛି କି ନାହିଁ। କିମ୍ବା ସେ ରାଜକୁମାରଙ୍କୁ ସତର୍କ ହୋଇ ରହିବାକୁ ଅନୁରୋଧ କରିପାରେ।

ନିଃଶବ୍ଦରେ ଅରଣ୍ୟର ପାଦଚଲା ରାସ୍ତାରେ ତିଷ୍ୟା ସରୋବର ସାମ୍ନାରେ ଆସି ଛିଡ଼ା ହେଲା। ଦୂରରୁ ଦ୍ୱୀପଟି ଦିଶୁଛି ଅସ୍ପଷ୍ଟ। ଖୁବ୍ ନିରୀକ୍ଷଣ କଲେ ଜଣାଯାଏ, କେହି ଜଣେ ଚୁପ୍‌ଚାପ୍ ଶୋଇ ରହିଛି। ସରୋବର କୂଳରେ କୌଣସି ପ୍ରହରୀ ନାହିଁ। ତିଷ୍ୟା ଡିଙ୍ଗିଟି ବନ୍ଧନ ମୁକ୍ତ କଲା। ତା'ପରେ ଧୀରେ ଧୀରେ ଆଗେଇ ଚାଲିଲା ଦ୍ୱୀପ ଅଭିମୁଖେ। ଛପ୍‌ଛପ୍ ଶବ୍ଦ ହେଉଥିଲା ଜଳରେ। ଏହା ପୂର୍ବରୁ ସେ ଡିଙ୍ଗିରେ କେବେହେଲେ ଚଢ଼ିନାହିଁ। ତଥାପି ବିଶେଷ ଅସୁବିଧା ହେଉ ନ ଥିଲା। କେବଳ ମଝିରେ ମଝିରେ ଡିଙ୍ଗିଟି ଭାରି ଟଳମଳ ହେଉଥିଲା। ତିଷ୍ୟା ଦେଖିଲା ଦ୍ୱୀପଟି ଆଗେଇ ଆସୁଛି। ଜଳ ସ୍ଥିର। କୌଣସି ଶ୍ୱାପଦର ଚିହ୍ନ ନାହିଁ।

ଦ୍ୱୀପ କୂଳରେ ଡିଙ୍ଗି ରଖି ସେ ଦେଖିଲା ସୁଦର୍ଶନ ତରୁଣ ଶୋଇ ରହିଛି କି ଅବହେଳାରେ! ଏଇ ଦୁଇଟି ଦିନ ରାଜକୁମାରଙ୍କ ବୟସ ବଢ଼େଇ ଦେଇଛି,

ଆଉ ତାଙ୍କ ଦେହରେ ଆଣିଛି ପାର୍ଥିବ ସୌନ୍ଦର୍ଯ୍ୟ। କିନ୍ତୁ କୌଣସି ସ୍ପନ୍ଦନ କାହିଁକି ନାହିଁ ଦେହରେ? ତେବେ କଣ କୌଣସି ବିଷଧର ଦଂଶନ କରିଦେଇଛି ଇତି ମଧ୍ୟରେ? ତିଷ୍ୟାର ଛାତି କମ୍ପିଉଠିଲା। କିଛି ନ ଭାବି ସେ ଦ୍ୱୀପକୁ ଓହ୍ଲେଇ ପଡ଼ିଲା ଡିଙ୍ଗିରୁ। ଦ୍ରୁତ ପଦରେ ରାଜପୁତ୍ରଙ୍କ ନିକଟକୁ ଆସିଲା ପରେ ସେ ବୁଝିପାରିଲା ରାଜକୁମାର ଜୀବିତ। ସ୍ୱସ୍ତିର ନିଃଶ୍ୱାସ ପଡ଼ିଲା। ଦୂରରେ ସରୋବରର ଅନ୍ୟ କୂଳ ଆଡ଼କୁ ଚାହିଁବାରୁ ଚମକି ପଡ଼ିଲା ସେ। ସେଠାରେ ସେଇ ଶେଷ ଅନ୍ଧକାରରେ ମଧ୍ୟ ସମବେତ ହୋଇଛନ୍ତି କେତେକେ। ଚିତ୍କାର କରି ସେମାନେ କିଛି କହୁଛନ୍ତି। ଅର୍ଥାତ୍ ଆଶ୍ରମବାସୀମାନେ ବୁଝି ପାରିଛନ୍ତି, ସେ ଏଠାକୁ ଆସିଛି। ଏବଂ ଏତେବେଳକୁ ତିଷ୍ୟାର ଖିଆଲ ହେଲା ସେ ଅନ୍ୟାୟ କରିଛି। ଅଧ୍ୟକ୍ଷ ଏଇ କାରଣରୁ ତାକୁ ଶାସ୍ତି ଦେଇପାରନ୍ତି। ଆଚ୍ଛା, କି ଶାସ୍ତି ଦେବେ ସେ? ଏଇ ଦ୍ୱୀପରେ ଯଦି ତାକୁ ରହିବାକୁ ହୁଏ ରାଜକୁମାର ସହିତ, ତା'ହେଲେ ଖାଦ୍ୟ-ପାନୀୟର କଣ ବିଶେଷ ପ୍ରୟୋଜନ ହେବ? ଏଇ ସମୟରେ ଆଖିରେ ପଡ଼ିଲା, ବିରାଟ ଗୋଟାଏ କୀଟ ରାଜକୁମାରଙ୍କ ପିଠି ଉପର ଦେଇ ସମ୍ରାଟର ଭଙ୍ଗୀରେ ଚାଲିଯାଉଛି। ଦ୍ରୁତ ନଇଁପଡ଼ି ସେ କୀଟଟିକୁ ବିତାଡ଼ିତ କରିବାକୁ ଯାଇ ରାଜକୁମାରଙ୍କ ପିଠିରେ ଆଘାତ କଲା। ସଙ୍ଗେ ସଙ୍ଗେ ରାଜକୁମାରଙ୍କ ଡାହାଣ ହାତ ତାକୁ ଆକର୍ଷଣ କଲା। ସେଇ ଆକର୍ଷଣରେ ସେ ଛିଟ୍‌କି ପଡ଼ିଲା ରାଜକୁମାରଙ୍କ ଦେହ ଉପରେ। ତିଷ୍ୟା ପ୍ରତିବାଦରେ ଚିତ୍କାର କରି ଉଠିଲା।

ତା' କଣ୍ଠସ୍ୱରରେ ସଚକିତ ହୋଇ ରାଜକୁମାର କହିଲେ—"ବାଃ, ଚମତ୍କାର! ତୁମେ ଆସିଛ ସୁନ୍ଦରୀ? ସାଙ୍ଗରେ ଆଉ କିଏ?" ଦୁଇ ହାତରେ ତାକୁ ଜଡ଼େଇ ଧରି ରାଜକୁମାର ଉଠି ବସିଲେ, "କେହି ନାହିଁ? ଏକୁଟିଆ? ପଠେଇଲା କିଏ?"

"ଛାଡ଼ିଦିଅ, ଛାଡ଼ିଦିଅ ମୋତେ", ଚିତ୍କାର କରିଉଠିଲା ତିଷ୍ୟା। ରାଜକୁମାରଙ୍କ ହାତ ସେତେବେଳକୁ ନିର୍ମମ ଏବଂ ଲୋଭୀ ହୋଇଉଠିଛି। ଏଇ ପ୍ରଥମ ଥର କେହି ତାର ଯୌବନର ଅହଂକାରରେ ହାତ ଦେଲା। ଆଉ ସଙ୍ଗେ ସଙ୍ଗେ ସ୍ଥିର ହୋଇଗଲା ତିଷ୍ୟା। ସମଗ୍ର ଶରୀରର ସବୁ ପ୍ରତିରୋଧ ଶକ୍ତି କୁଆଡ଼େ ଉଭେଇଗଲା। ଏଇ ଦେହଟା ଯେମିତି ତା'ର ନୁହେଁ, ଏମିତି ଭାବରେ ଶକ୍ତିହୀନ ସେ କେବେ ହୋଇନି!

ରାଜକୁମାର ଯେ ଅସ୍ଥିର ଏବଂ ବୋଧହୀନ, ତା' ବୁଝି ପାରୁଥିଲା ସେ। ଯେମିତି ଗୋଟିଏ ସିଂହ ହରିଣୀଟିକୁ ଧରି କେଉଁ ଭାବରେ କ୍ଷୁନ୍ନିବୃତ୍ତି କରିବ, ତାହା ଭାବି ପାରୁନି। ଶେଷ ମୁହୂର୍ତ୍ତରେ ସେ ବାଧା ଦେବାର ଚେଷ୍ଟା କଲା। କିନ୍ତୁ ଯେଉଁ ବାଘ ରକ୍ତର ଗନ୍ଧ ପାଇ ଯାଇଛି, ତା'କୁ ନିବୃତ୍ତ କରିବାର ସାଧ୍ୟ କାହାର! ସେଇ ମୁହୂର୍ତ୍ତରେ ଶରୀରରେ ସାମାନ୍ୟତମ ଆନନ୍ଦ ପରିବର୍ତ୍ତେ ତୀବ୍ର ଯନ୍ତ୍ରଣା ସଞ୍ଚରି ଯିବାରୁ

ତିଷ୍ୟା ନିଃଶବ୍ଦରେ କାନ୍ଦିଉଠିଲା ଦାନ୍ତରେ ଦାନ୍ତ ଚାପି। ଅନଭିଜ୍ଞ ସେ ତରୁଣ ନିଃଶେଷ ହେବା ମାତ୍ରେ ବିହ୍ୱଳ ଏବଂ କ୍ଳାନ୍ତ ଆଖିରେ ତା' ଆଡ଼କୁ ଚାହିଁଲେ। ତା'ପରେ ସେ ଲମ୍ଫମାରି ଡିଙ୍ଗିରେ ଉଠିବସିଲେ। କିନ୍ତୁ ସେତେବେଳକୁ ସରୋବର ତୀରରେ ଜନସମାଗମ ହେଲାଣି। ରାତି ଶେଷହୋଇ ଭୋର୍ ହେଲାଣି।



ତିଷ୍ୟା ସେଇମିତି ନିଶ୍ଚଳ ଭାବେ ଚିତ୍ ହୋଇ ଶୋଇଥିଲା। ସେ ବୁଝି ପାରୁଥିଲା ରାଜକୁମାର ନିକଟରେ ନାହାଁନ୍ତି। ନିର୍ଜନ ଦ୍ୱୀପରେ ଖୋଲା ଆକାଶ ଆଡ଼କୁ ଚାହିଁ, ଯନ୍ତ୍ରଣା ସହିତ ଆଉ ଏକ ସୁଖର ଅନୁଭୂତିକୁ ସେ ଆବିଷ୍କାର କଲା। ହଠାତ୍ ଆଘାତର ଅସାଡ଼ତା କଟିଯିବା ପରେ ଦୁଇ ଭିନ୍ନ ଏବଂ ବିପରୀତ ଅନୁଭୂତିର ମିଶ୍ରଣ ମଧ୍ୟରେ ଏକପ୍ରକାର ବିଚିତ୍ର ଅବବୋଧ ସେ ଅନୁଭବ କଲା।

ତିଷ୍ୟାକୁ ତୀରକୁ ନେଇ ଆସିଲେ ପ୍ରହରୀମାନେ। ସେତେବେଳେ ବି ତାର ବେଶବାସ ଛିନ୍ନଭିନ୍ନ; ମୁହଁ ଦୁଇ ପାପୁଲି ଆଢୁଆଳରେ। ଅଧ୍ୟକ୍ଷ କଠୋର ଗଳାରେ ନିର୍ଦ୍ଦେଶ ଦେଲେ ସଙ୍ଗିନୀମାନଙ୍କୁ, ''ଯାଅ, ତାର ବେଶବାସ ସଜାଡ଼ି ନେଇ ଆସ। ବର୍ତ୍ତମାନ। ଏ ଅନାଚାର ମୁଁ ସହ୍ୟ କରିବି ନାହିଁ।''

ଏକାନ୍ତରେ ସଙ୍ଗିନୀମାନଙ୍କ ପାଖରେ ଭାଙ୍ଗି ପଡୁ ପଡୁ ନିଜକୁ ସମ୍ଭାଳି ନେଲା ତିଷ୍ୟା। ସେ ବୁଝି ପାରୁଥିଲା, କିପ୍ରକାର ଚରମ ଶାସ୍ତି ତା ପାଇଁ ଅପେକ୍ଷା କରି ରହିଛି। ହୁଏତ ଅଧ୍ୟକ୍ଷ ତାକୁ ବିତାଡ଼ିତ କରିବେ ବର୍ତ୍ତମାନ। ଏଇ ମୁହୂର୍ତ୍ତରେ ଆତ୍ମହତ୍ୟା କରିବା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ। ପିତୃଦେବଙ୍କ ସାମ୍ନାରେ ସେ ଛିଡ଼ାହେବ କେଉଁ ମୁହଁରେ ?

ସଙ୍ଗିନୀମାନେ ନାନା ପ୍ରଶ୍ନ କରୁଥିଲେ ବେଶ ପରିବର୍ତ୍ତନ ବେଳେ। କାହିଁକି ସେ ଦ୍ୱୀପକୁ ଗଲା ? ସେ ଯେ ନିରପରାଧ, ତାର ତ କୌଣସି ପ୍ରମାଣ ନାହିଁ। ତା' ସହିତ କ'ଣ ରାଜକୁମାରଙ୍କର ଗୋପନ ପ୍ରଣୟ ଆରମ୍ଭ ହୋଇଥିଲା ? ଯଦି ହୋଇଥାଏ, ତେବେ ସେଟା କେବେଠୁଁ? ଦ୍ୱୀପରେ ଠିକ୍ କଣ କଣ ଘଟିଥିଲା, ତା' ଜାଣିବାକୁ ବ୍ୟଗ୍ର ହୋଇ ଉଠିଥିଲେ ସେମାନେ। ରାଜକୁମାର କେଉଁଭଳି ଭାବେ ତା'ର କୌମାର୍ଯ୍ୟ ହରଣ କରିଥିଲେ, ତା'ର ବିବରଣୀ ଚାହୁଁଥିଲେ ଲୋଭୀ ଭଳି! କିନ୍ତୁ ତିଷ୍ୟା ନିର୍ବାକ। ସେ ଶୁଣିଲା, ରାଜକୁମାର ପଳାୟନ କରିବାକୁ ଚାହିଁ ନାହାଁନ୍ତି। ପ୍ରହରୀମାନେ ତାଙ୍କୁ ଧରିଛନ୍ତି। ଏଇ ମୁହୂର୍ତ୍ତରେ ସେ ବନ୍ଧା ହୋଇ ରହିଛନ୍ତି ଆଶ୍ରମର ମୁକ୍ତ ଚତ୍ୱରରେ ଗୋଟିଏ ଖୁଣ୍ଟ ସହିତ। ତିଷ୍ୟାର ବେଶ ପରିବର୍ତ୍ତନ ପରେ ଅଧ୍ୟକ୍ଷଙ୍କ ଆଦେଶ ଆସିଲା, ତାକୁ ସେଇ ବ୍ରାହ୍ମ ମୁହୂର୍ତ୍ତରେ ଉପାସନା କେନ୍ଦ୍ରକୁ ନେଇଯିବା ପାଇଁ। ସେତେବେଳେ ତା' ଦେହରେ ଯନ୍ତ୍ରଣା ହେଉଥିଲା ପଦକ୍ଷେପ କଲାମାତ୍ରେ। କିନ୍ତୁ ସେକଥା କହିବାକୁ ସାହସ ହୋଇନି।

ତିଷ୍ୟା ଦେଖି ପାରିଲା, ରାଜକୁମାର ଉଦ୍ଧତ ଭଙ୍ଗୀରେ ଛିଡ଼ା ହୋଇଛନ୍ତି। ତାଙ୍କର ଦୁଇ ହାତ ରଜ୍ଜୁରେ ବନ୍ଧା, କିନ୍ତୁ ମୁହଁର ପେଶୀ ଶକ୍ତ। ତିଷ୍ୟାକୁ ସେଠାକୁ ନେଇଯିବା ପରେ ଅଧ୍ୟକ୍ଷ ଜିଜ୍ଞାସା କଲେ, ରାଜକୁମାରଙ୍କ ବିରୁଦ୍ଧରେ ତମର କୌଣସି ଅଭିଯୋଗ ଅଛି ?

ଅଭିଯୋଗ! ତିଷ୍ୟା କ'ଣ କରିବ ଭାବିପାରୁ ନ ଥିଲା। ଜାଣିଶୁଣି ଯିଏ ନିଜର ମୃତ୍ୟୁ ଡାକି ଆଣେ, ଅଗ୍ନିରେ ଆଙ୍ଗୁଳି ରଖେ, ସେ କାହା ବିରୁଦ୍ଧରେ ଅଭିଯୋଗ କରିବ ? ତିଷ୍ୟା ଧୀରେ ଧୀରେ ମୁଣ୍ଡ ହଲାଇଲା। ନା, କାହାରି ବିରୁଦ୍ଧରେ ତାର କୌଣସି ଅଭିଯୋଗ ନାହିଁ!

ଅଧ୍ୟକ୍ଷ ପ୍ରଶ୍ନ କଲେ, ''କାହିଁକି ବିନା ଅନୁମତିରେ ଡିଙ୍ଗି ନେଇ ରାତ୍ରିର ଅନ୍ଧକାରରେ ତୁମେ ରାଜକୁମାରଙ୍କ ପାଖକୁ ଯାଇଥିଲ ? ତୁମେ କ'ଣ ଏ ଗର୍ହିତ କାର୍ଯ୍ୟ କରିବା ପୂର୍ବରୁ ଟିକିଏ ହେଲେ ସୁଦ୍ଧା ଚିନ୍ତା କରିନଥିଲ ?''

ତିଷ୍ୟା ଏଥର ମୁଣ୍ଡ ହଲାଇଲା। ନା, ସତରେ ସେ କିଛି ଚିନ୍ତା କରିନି।

ଅଧ୍ୟକ୍ଷ କହିଲେ, ''ଏଥର ତୁମକୁ ଗୋଟିଏ ପ୍ରଶ୍ନ ପଚାରିବି। ଏ କଥା ଉଚ୍ଚାରଣ କରିବାକୁ ମୋର ରୁଚିକୁ ବାଧୁଛି। କିନ୍ତୁ ନ୍ୟାୟ ବିଚାର ପାଇଁ ଏ ପ୍ରଶ୍ନ ନ ପଚାରି ମୋର ଉପାୟ ନାହିଁ। ରାଜକୁମାର କ'ଣ ତୁମର ଚରମ କ୍ଷତି କରିଛି ?''

କ'ଣ ଉତ୍ତର ଦେଇ ପାରିଥାନ୍ତା ତିଷ୍ୟା ? କିଛି ଭାବି ନ ପାରି ସେ ପୂର୍ବ ଦୁଇଥର ଭଳି ନୀରବରେ ମୁଣ୍ଡ ହଲେଇବାରୁ ସମସ୍ତ ଶିକ୍ଷାର୍ଥୀ ଏବଂ ଶିକ୍ଷାର୍ଥିନୀଙ୍କ ମୁହଁରୁ ଛିଟିକି ଆସୁଥିବା ବିସ୍ମୟର ଶବ୍ଦ ତା' କାନରେ ବାଜିଲା ।

ଅଧ୍ୟକ୍ଷ କହିଲେ, "ନିଜର କ୍ଷତି ସ୍ୱୀକାର କରି ମଧ୍ୟ ତୁମେ ରାଜକୁମାରକୁ ବଞ୍ଚେଇବାର ଚେଷ୍ଟା କରୁଛ। ସେଥିପାଇଁ ମୁଁ କିନ୍ତୁ ତୁମର ପ୍ରଶଂସା କରି ପାରିଲି ନାହିଁ। ତୁମର ପରିଧେୟ ପ୍ରମାଣ କରୁଛି ନାରୀତ୍ୱର ଅମୂଲ୍ୟ ସମ୍ପଦ ତୁମେ ହରେଇଛ। ଏ ଅବସ୍ଥାରେ ଯେ କୌଣସି ଶାସ୍ତି ମୁଁ ରାଜକୁମାରକୁ ଦେଇପାରେ। କିନ୍ତୁ ସେଥିରେ ତା' ଅପରାଧ ହ୍ରାସ ପାଇବ ନାହିଁ। ତୁମର ଭବିଷ୍ୟତ ହିଁ ଅନ୍ଧକାର ହେବ। କାରଣ ଧର୍ଷିତା ରମଣୀକୁ ମଣିଷ ସବୁଦିନ ସନ୍ଦେହ ଆଖିରେ ଦେଖିଥାଏ। ତେଣୁ ସବୁଆଡ଼ୁ ଚିନ୍ତା କରି ମୁଁ ସ୍ଥିର କରିଛି ଆଜି ଏଇ ବ୍ରାହ୍ମ ମୁହୂର୍ତ୍ତରେ ଶାସ୍ତ୍ରମତେ ରାଜକୁମାର ସହିତ ତୁମକୁ ପରିଣୟ ସୂତ୍ରରେ ଆବଦ୍ଧ ହେବାକୁ ପଡ଼ିବ।"

ଠିକ୍ ସେତିକିବେଳେ ତରୁଣ ଅଥଚ କଠିନ ସ୍ୱର ଭାସି ଆସିଲା, "ନା, ଏ ହୋଇ ପାରେ ନା।"

ସମସ୍ତେ ଚକିତ। ତିଷ୍ୟା ମଧ୍ୟ ମୁହଁ ଟେକି ରାଜକୁମାରଙ୍କୁ ଦେଖିଲା। ଏତେ ସମୟ ଏତେ ମଣିଷ ସାମ୍ନାରେ ଲଜ୍ଜାରେ ଆଉ ଅପମାନରେ ସେ ଛିଡ଼ା ହେବାକୁ ବାଧ୍ୟ ହୋଇଥିଲା, କିନ୍ତୁ ବର୍ତ୍ତମାନ ଏଇ ବାକ୍ୟ ଶୁଣିବା ମାତ୍ରେ ମନେହେଲା ସେ ସବୁ ଯା' ତୁଳନାରେ କିଛି ନୁହେଁ।

ଅଧ୍ୟକ୍ଷ ଜିଜ୍ଞାସା କଲେ, "ତୁମେ ତିଷ୍ୟାକୁ ବିବାହ କରିବାକୁ ଅନିଚ୍ଛୁକ ?"

"ହଁ।" ସ୍ପଷ୍ଟ କଥା

"କାରଣ କହି ପାରିବ ?"

"ନିଶ୍ଚୟ। ମୁଁ ରାଜପୁତ୍ର। ଜଣେ ସାମାନ୍ୟ ପରାମାଣିକ କନ୍ୟା ସହିତ ମୋର ବିବାହ ହୋଇପାରେନା।" ନିର୍ମମ ଶବ୍ଦଗୁଡ଼ିକ ଯେମିତି ତୀକ୍ଷ୍ଣଧାର ତୀର ଭଳି ବିଦ୍ଧ କଲା ତିଷ୍ୟାକୁ। ଗୁଞ୍ଜନ ଉଠିଲା ସମବେତ ଦର୍ଶକ-ଶ୍ରୋତାଙ୍କ ଭିତରେ।

ହାତଟେକି ସେମାନଙ୍କୁ ଶାନ୍ତ କଲେ ଅଧ୍ୟକ୍ଷ। ତା'ପରେ ଦୃଢ଼ କଣ୍ଠରେ କହିଲେ—"ଆପତ୍ତି ଅଗ୍ରାହ୍ୟ ହେଲା। ମୁଁ ତୁମକୁ ବିବାହ କରିବାକୁ ବାଧ୍ୟ କରିବି। ଏହା ହିଁ ହେବ ତୁମର ଚୂଡ଼ାନ୍ତ ଶାସ୍ତି ଏବଂ ବିବାହ ସମ୍ପୂର୍ଣ୍ଣ ହେବା ପରେ ତୁମେମାନେ ମଗଧ ଅଭିମୁଖେ ଯାତ୍ରା କରିବ। ମୁଁ ତୁମର ପିତୃଦେବଙ୍କୁ ସମ୍ବାଦ ପ୍ରେରଣ କରିଛି, ସେ ଯେମିତି ପୁତ୍ରବଧୂ ପାଇଁ ଅପେକ୍ଷା କରନ୍ତି।"

ପାଟଳିପୁତ୍ରର ଜନସାଧାରଣ ଅତି ଉତ୍ସାହରେ ସେମାନଙ୍କ ନୂତନ ରାଣୀଙ୍କୁ ଗ୍ରହଣ କରିଥିଲେ। କିନ୍ତୁ ଯେତେବେଳେ ସେମାନେ ଜାଣିଲେ ଯେ ନୂତନ ରାଣୀ ହିଁ ମହାରାଣୀର ସମ୍ମାନ ପାଉଛନ୍ତି, ସେତେବେଳେ ସେମାନେ ବିକ୍ଷୁବ୍ଧ ହେଲେ। ମହାରାଣୀ ପଦ୍ମାବତୀ

ଜୀବିତ ରହିବା ସତ୍ତ୍ୱେ ସମ୍ରାଟ ଏ ସମ୍ମାନ ଆଉ କାହାକୁ ଦେବେ, ଏକଥା ସେମାନଙ୍କ କଳ୍ପନାରୁ ମଧ୍ୟ ଆସିନଥିଲା। ପଦ୍ମାବତୀଙ୍କୁ ହେୟ କରାଯାଇଛି—ଏ ଗୁଞ୍ଜନ ଉଠିଲେ ବି, ସମ୍ରାଟ ଯେଉଁଭଳି ଭାବେ ଧର୍ମସଭା ନେଇ ବ୍ୟସ୍ତ ହୋଇ ପଡ଼ିଲେ, ସେଥିରେ ବ୍ୟାପାରଟା ଆଉ ଗୁରୁତ୍ୱ ପାଇଲା ନାହିଁ।

ପାଟଳିପୁତ୍ରର ନାଗରିକମାନଙ୍କ ମଧ୍ୟରେ ସ୍ୱାଭାବିକଭାବେ ବୌଦ୍ଧଧର୍ମାବଲମ୍ବୀ ମାନଙ୍କ ସଂଖ୍ୟା ହିଁ ଅଧିକ। ନାରୀମାନଙ୍କୁ ସନ୍ନ୍ୟାସ କିମ୍ବା ମଠରେ ପ୍ରବେଶାଧିକାର ଦେବା ବ୍ୟାପାରରେ ତଥାଗତଙ୍କ ଆପତ୍ତି ଥିଲା, କିନ୍ତୁ ସେମାନଙ୍କୁ ଗୃହୀ ହୋଇ ଦୀକ୍ଷା ଗ୍ରହଣ କରିବାକୁ ସେ ଉତ୍ସାହ ଦେଇଥିଲେ। ବୋଧିସତ୍ତ୍ୱଙ୍କୁ ନେଇ ନାଗରିକମାନଙ୍କର ଅହଙ୍କାର ଅଛି। ସେମାନଙ୍କ ବିଶ୍ୱାସ, ବୋଧିସତ୍ତ୍ୱ ଅତ୍ୟନ୍ତ ଆପଣାର ମଣିଷ। ସେ ପାଣ୍ଡବ ପାହାଡ଼ ଛାୟାରେ ଭିକ୍ଷାଲବ୍ଧ ଅନ୍ନ ଗ୍ରହଣ କରିଥିଲେ। ଏହି ପାଣ୍ଡବ ପାହାଡ଼ ପାଟଳିପୁତ୍ର ନିକଟରେ ହିଁ ଅବସ୍ଥିତ। ସେତେବେଳେ ବି ତଥାଗତ ହୋଇ ନାହାଁନ୍ତି ସେ, ବୋଧିଜ୍ଞାନ ଅର୍ଜିତ ହୋଇନି। ସେଇ ସମୟରେ ସଦ୍ୟ ସଂସାର ତ୍ୟାଗ କରିଥିଲେ ଆଦିତ୍ୟବନ୍ଧୁ। ତା'ପରେ ସମ୍ୟକ ଜ୍ଞାନ ଲାଭ କରି ସେ ପ୍ରତ୍ୟାଗମନ କରିଥିଲେ ଏଠି। ବେଲୁବନ ଉଦ୍ୟାନରେ ବିହାର ନିର୍ମାଣ କରି କିଛିକାଳ ଅବସ୍ଥାନ କରିଥିଲେ ସେ। ମଗଧବାସୀ ଏସବୁ କଥା ସ୍ମରଣ ରଖିଛନ୍ତି। ତାଙ୍କ କଥା ସେମାନେ ଗର୍ବର ସହିତ ଉଚ୍ଚାରଣ କରନ୍ତି।

ବୁଦ୍ଧଙ୍କ ପୂର୍ବରୁ ବୈଦିକ କ୍ରିୟାକଳାପରେ ଦେଶ ଥିଲା ତ୍ରସ୍ତ। ଯଜ୍ଞାନୁଷ୍ଠାନର ଆଧିକ୍ୟ ଏବଂ ବ୍ରାହ୍ମଣମାନଙ୍କ ଅତ୍ୟାଚାରରେ ଧର୍ମ ଜନପ୍ରିୟତା ହରେଇଥିଲା। ବ୍ରାହ୍ମଣମାନେ ପ୍ରଚାର କରିଥିଲେ, ସୁଷ୍ଠୁ ଯଜ୍ଞାନୁଷ୍ଠାନ ମାଧ୍ୟମରେ ହିଁ ଧନାଗମ ହେବ, ସ୍ୱାସ୍ଥ୍ୟ ତେଜୋମୟ, ପରଲୋକରେ ସୁଖ ଓ ଶାନ୍ତି ମିଳିପାରିବ। କିନ୍ତୁ ଏ ସବୁ କ୍ରିୟାକାଣ୍ଡରେ ସାଧାରଣ ମଣିଷ କେବେ ବି ତୃପ୍ତ ହୋଇନାହିଁ। ଶେଷକୁ ଚାରି ଆଶ୍ରମରେ ଜୀବନକୁ ଭାଗ କରି ମଣିଷର କାର୍ଯ୍ୟକଳାପ ଗୁଡ଼ିକୁ ଗୋଟିଏ ଶୃଙ୍ଖଳରେ ବାନ୍ଧିବାର ଚେଷ୍ଟା କରାହେଲା। କିନ୍ତୁ ଶୂଦ୍ରମାନେ ରହିଲେ ଅବହେଳିତ। ବ୍ରାହ୍ମଣ ଏବଂ ସେମାନଙ୍କ ସ୍ୱାର୍ଥପାଇଁ କ୍ଷତ୍ରିୟମାନେ ଆଧିପତ୍ୟ ଚଳେଇଲେ। ଜାତିଭେଦ ପ୍ରଥା ଏଇ ସମୟରେ ଜନ୍ମଗତ ହୋଇପଡ଼ିଲା। ମହିଳାମାନେ ବିବେଚିତ ହେଲେ ଗାର୍ହସ୍ଥ୍ୟ ସମ୍ପତ୍ତି ଭାବରେ।

ଏ ଅବସ୍ଥାରେ ବୁଦ୍ଧଙ୍କ ଅମୃତବାକ୍ୟ, ଯା' କେବଳ ହୃଦୟକୁ ଶାନ୍ତ କରେନା, ଜୀବନକୁ ମଧ୍ୟ ସହଜ କରିଦିଏ, ଜନସାଧାରଣଙ୍କୁ ଶ୍ରେୟତର ବୋଲି ମନେ ହୋଇଥିଲା। ଭାରତବର୍ଷର ମଣିଷ ପ୍ରଥମଥର ନିଜକୁ ସମ୍ମାନିତ ଦୃଷ୍ଟିରେ ଦେଖିବାକୁ ଚାହିଁଲେ। ଫଳରେ ସେ ଜୀବିତ ରହିଲାବେଳେ ତ ନିଶ୍ଚୟ, ତାଙ୍କ ମହାପରିନିର୍ବାଣ ପରେ ମଧ୍ୟ ବୌଦ୍ଧଭିକ୍ଷୁମାନଙ୍କ ପ୍ରଚାରିତ ଧର୍ମ ଏବଂ ବିନୟ ସର୍ବତ୍ର ସ୍ୱୀକୃତ ହୋଇଥିଲା।

ସମ୍ରାଟ ଯେତେବେଳେ ରାଜତ୍ୱର ଦଶମ ବର୍ଷରେ ଉରୁବେଲା ଗ୍ରାମର ସମ୍ବୋଧିବୃକ୍ଷ ସନ୍ଦର୍ଶନରେ ଯାଇଥିଲେ ସେତେବେଳେ ପାଟଳିପୁତ୍ରର ମଣିଷ ତାଙ୍କର ଅନୁଗମନ କରିଥିଲେ। ତଥାଗତ ନିରଞ୍ଜନା ନଦୀ କୂଳରେ ଗୋଟିଏ ବଟବୃକ୍ଷ ତଳେ ବସି ବୋଧିଜ୍ଞାନ ଲାଭ କରନ୍ତି। ସେଇ ବୃକ୍ଷ ବୋଧିବୃକ୍ଷ। ଯେ କୌଣସି ବୌଦ୍ଧ ନିକଟରେ ତା' ଅତି ପବିତ୍ର। ସମ୍ରାଟ ତାଙ୍କ ପରିବର୍ତ୍ତିତ ଜୀବନରେ ତଥାଗତଙ୍କ ଧର୍ମ ଏବଂ ଆଦର୍ଶ ପ୍ରଚାରରେ ସର୍ବଶକ୍ତି ବ୍ୟୟ କରିଛନ୍ତି। ପ୍ରଜାମାନେ ସମ୍ରାଟଙ୍କ ଅନୁଗତ।

ଦିବସ-ରଜନୀ ଏବେ ପାଟଳିପୁତ୍ରର ରାଜପଥରେ ବୁଦ୍ଧଙ୍କ ଉପାସନା ସଙ୍ଗୀତ ଏବଂ ବିହାରରେ ବୁଦ୍ଧଙ୍କ ବାଣୀ ଶୁଣାଯାଉଛି। ପ୍ରାର୍ଥନାର ମନ୍ତ୍ର ଧ୍ୱନିତ ହେଉଛି ଶ୍ରଦ୍ଧା ସହକାରେ। ଅତି ମନୋରମ ପରିବେଶ। କିନ୍ତୁ ଏସବୁ ସତ୍ତ୍ୱେ ମହାରାଣୀ ତିଷ୍ୟା ସମ୍ପୂର୍ଣ୍ଣ ଏକାକିନୀ ତାଙ୍କ ପ୍ରାସାଦରେ। ସର୍ତ୍ତାନୁସାରେ ତାଙ୍କ ବାସସ୍ଥାନ ରାଜପ୍ରାସାଦ ନିକଟରେ ନୁହେଁ, କିନ୍ତୁ ଅତୀବ ମର୍ଯ୍ୟାଦା ସମ୍ପନ୍ନ। ତାଙ୍କର ପରିଚାରିକାଗଣ କେବଳ ତାଙ୍କରି ଆଦେଶ ପାଳନ କରନ୍ତି। ମୂଳ ପ୍ରାସାଦ ସହିତ ସେମାନଙ୍କର କୌଣସି ସମ୍ପର୍କ ନାହିଁ।

ଧର୍ମସଭା ଶେଷ ହେଲା। କେତେ ଭକ୍ତ ଆସିଲେ। ସନ୍ନ୍ୟାସୀମାନେ ପଦଧୂଳି ନେଲେ। ଅନେକ ଆଲୋଚନା ପରେ ବୌଦ୍ଧଧର୍ମକୁ ସୁସ୍ଥିତ କରିବାପାଇଁ ଏକ ଶୃଙ୍ଖଳିତ ନିୟମାବଳୀ ପ୍ରଣୀତ ହେଲା, କିନ୍ତୁ ସେସବୁ ମହାରାଣୀଙ୍କ ମନରେ କୌଣସି ପ୍ରତିକ୍ରିୟା ସୃଷ୍ଟି କଲା ନାହିଁ।

ସେ ରହିଛନ୍ତି ନିଜ ଭଳି, ନିଜ ମନ ମୁତାବକ। ଏମିତିକି ରାଜଧାନୀରେ ଅବସ୍ଥାନ ସମୟରେ ସେ ଅନ୍ୟାନ୍ୟ ଅନ୍ତଃପୁରବାସିନୀଙ୍କ ସହିତ ତ ଦୂରର କଥା, ରାଣୀ ପଦ୍ମାବତୀଙ୍କ ସହିତ ମଧ୍ୟ ପରିଚିତ ହେବାର ବାସନା ପ୍ରକାଶ କରିନାହାଁନ୍ତି।

ଧର୍ମସଭା କାର୍ଯ୍ୟ ଶେଷ ହେବାପରେ ସମ୍ରାଟଙ୍କୁ ମନ୍ତ୍ରୀ ଖଲ୍ଲାଟକ ସ୍ମରଣ କରାଇ ଦେଲେ, ନୂତନ ମହାରାଣୀଙ୍କ ଅଭିଷେକ ଅସମ୍ପୂର୍ଣ୍ଣ ଅଛି। ରାଜସଭାରେ ମନ୍ତ୍ରୀ, ଅମାତ୍ୟ ଏବଂ ଆତ୍ମୀୟମାନଙ୍କ ସହିତ ପରିଚିତ କରାଇଦେବା ମାଧ୍ୟମରେ ହିଁ ସମ୍ରାଟ ତାଙ୍କୁ ସ୍ୱୀକୃତି ଦେଇପାରନ୍ତି।

ସମ୍ରାଟଙ୍କ ଚେତନା ଫେରିଲା। ସେ ଧର୍ମସଭା ନେଇ ଏତେ ବ୍ୟସ୍ତ ହୋଇ ପଡ଼ିଥିଲେ ଯେ, ତିଷ୍ୟାଙ୍କ ସମ୍ପର୍କରେ କିଛି ସ୍ମରଣ କରିନାହାଁନ୍ତି। ବର୍ତ୍ତମାନ ସେ ସ୍ମୃତିର ଅପରାଧଭାରରୁ ମୁକ୍ତ। ତାଙ୍କ ମନରେ କୌଣସି ପାପବୋଧ ନ ଥିଲେ ମଧ୍ୟ ଚିତ୍ତ-ଦୁର୍ବଳତାରୁ ସେ ମୁକ୍ତ ହୋଇନାହାଁନ୍ତି। କାରଣ ତିଷ୍ୟାଙ୍କ କଥା ମନେ ପଡ଼ିଲା ମାତ୍ରେ ସେଇ ଉଜ୍ଜ୍ୱଳ ଲାବଣ୍ୟବତୀର ଚେହେରା ତାଙ୍କୁ ଦୁର୍ବଳ କରିପକାଇଲା। ଏତେ ସୁନ୍ଦରୀ ଜଣେ ରମଣୀ ତାଙ୍କରି ଦ୍ୱାରା ଧର୍ଷିତା ହୋଇ ଏତେକାଳ ଅପେକ୍ଷାରେ ଥିଲା ? କିନ୍ତୁ ସେ ରମଣୀର ମନ ସେ ପାଇବେ ନାହିଁ। ଯେଉଁ ଘୃଣା ଏବଂ

ଉପେକ୍ଷାର ଭାଷା ସେ ଶୁଣିଛନ୍ତି, ଅଭିବ୍ୟକ୍ତି ସ୍ୱଚକ୍ଷୁରେ ଦେଖିଛନ୍ତି, ତା ସହ୍ୟ କରିବା ତାଙ୍କ ପକ୍ଷରେ କଷ୍ଟସାଧ୍ୟ। ସେ ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ। କେବଳ ପ୍ରାର୍ଥନା କରନ୍ତି ଚିତ୍ତ ସଂସ୍କାରମୁକ୍ତ ହେଉ, ତୃଷ୍ଣା କ୍ଷୟ ହେଉ। କିନ୍ତୁ ସେ ସମସ୍ତ ବିଭ୍ରାନ୍ତ ହେଉଛି, ଏଇ ମୁହୂର୍ତ୍ତରେ ତିଷ୍ୟାଙ୍କ କଥା ସ୍ମରଣରେ ଆସିବା ମାତ୍ରେ। କି ଅଦ୍ଭୁତ ଏକ ଚୁମ୍ବକୀୟ ଶକ୍ତି ଅଛି ସେଇ ରମଣୀ ଭିତରେ! ନିଷେଧାଜ୍ଞା ଅଛି, ସେ ତିଷ୍ୟାଙ୍କ ପ୍ରାସାଦରେ ପ୍ରବେଶ କରି ପାରିବେ ନାହିଁ ବିନାନୁମତିରେ। ଅବଶ୍ୟ ପ୍ରବେଶର ବାସନା ମଧ୍ୟ ତାଙ୍କର ନାହିଁ। ଶରୀର କ୍ଷମତା ହରେଇଲେ ମନ ବୃଥାରେ ହିଁ ଚଞ୍ଚଳ ହୁଏ।

ସମ୍ରାଟ ସମ୍ବାଦ ପ୍ରେରଣ କଲେ। ମହାରାଣୀଙ୍କର ଯଦି ଆପତ୍ତି ନ ଥାଏ, ଆଗାମୀ ଶୁକ୍ଳ ପଞ୍ଚମୀର ପ୍ରଭାତରେ ସେ ଅଭିଷେକର ବ୍ୟବସ୍ଥା କରିବାକୁ ଚାହାଁନ୍ତି। ସେଇ ସମୟରେ ଅଭିଷେକ କକ୍ଷରେ ତାଙ୍କୁ ପରିଚିତ ହେବାକୁ ପଡ଼ିବ। ସେଦିନ ତାଙ୍କୁ କିଛି ସମୟ ଉପବେଶନ କରିବାକୁ ପଡ଼ିବ ତାଙ୍କ ପାଖ ସିଂହାସନରେ। ଏଭଳି ଭାବରେ ବିବ୍ରତ କରିବାକୁ ସମ୍ରାଟଙ୍କ ଅନିଚ୍ଛା ଥିଲା, କିନ୍ତୁ ଏଇ ଲୋକାଚାର ବିପକ୍ଷରେ ଯିବା ଉଚିତ ନୁହେଁ ବୋଲି ସେ ଅନୁରୋଧ ଜଣାଇଲେ, ଶୁକ୍ଳ-ପଞ୍ଚମୀ ପ୍ରଭାତରେ ପ୍ରସ୍ତୁତ ହେବାପାଇଁ।

ପ୍ରତ୍ୟୁତ୍ତରରେ ତିଷ୍ୟା ଜଣାଇଲେ, ସେ ସେଠାରେ ବସ୍ତୁତଃ ବନ୍ଦିନୀ ଦଶା ମଧ୍ୟରେ ଦିନାତିପାତ କରୁଛନ୍ତି। ସେ କ୍ଷେତ୍ରରେ ସମ୍ରାଟ ଯାହା କହୁଛନ୍ତି ତାହା ମାନ୍ୟ କରିବା ଛଡ଼ା ଅନ୍ୟ ଉପାୟ ନାହିଁ। ତେବେ ବନ୍ଦିନୀ ଦଶା ମଧ୍ୟରେ ସୁଦ୍ଧା ଶାନ୍ତିରେ ଅଛନ୍ତି ସେ। ବୃଦ୍ଧ ଜରାଗ୍ରସ୍ତ ସ୍ୱାମୀଙ୍କୁ ପ୍ରତିଦିନ ଦେଖିବାର ଦୁର୍ଭାଗ୍ୟରୁ ଅନ୍ତତଃ ଅବ୍ୟାହତି ପାଇଛନ୍ତି। ସେଇ ପ୍ରଭାତରେ ସମ୍ରାଟ ଯେମିତି ଅକାରଣରେ ତାଙ୍କୁ ବିରକ୍ତ ନ କରନ୍ତି।

ପତ୍ରଟି ପାଇ ସମ୍ରାଟ ଅତ୍ୟନ୍ତ ଅପମାନିତ ବୋଧ କଲେ। ସେ ତତ୍‌କ୍ଷଣାତ୍ ଉପଗୁପ୍ତଙ୍କ ସମୀପକୁ ଗଲେ। ସମସ୍ତ କଥା ଶୁଣି ଉପଗୁପ୍ତ କହିଲେ, ''ଯାହା ସତ୍ୟ ତା' ନିର୍ମମ। ତା'ବୋଲି ସତ୍ୟକୁ ଅସ୍ୱୀକାର କରିବାର କୌଣସି ଯୁକ୍ତି ନାହିଁ। ତୁମ କର୍ତ୍ତବ୍ୟ ତୁମେ କରିଯାଅ। ଏହି ଦେହରୂପୀ ଜୀର୍ଣ୍ଣ ପିଞ୍ଜରାଟିକୁ ଏଇଠି ହିଁ ତ୍ୟାଗ କରି ଯିବାକୁ ପଡ଼େ। ସେଇ ପ୍ରସ୍ଥାନର ପଥ ପବିତ୍ର କର।''

ଅତଏବ ରାଜ୍ୟର ସର୍ବତ୍ର ପ୍ରଚାରିତ ହେଲା ଶୁକ୍ଳ-ପଞ୍ଚମୀ ପ୍ରଭାତରେ ମହାରାଣୀ ତିଷ୍ୟା ପରିଚିତ ହେବେ। ଆୟୋଜନ ସମ୍ପୂର୍ଣ୍ଣ ହେଲା। ବିଶେଷ ଶକଟରେ ମହାରାଣୀ ଆସିଲେ ତାଙ୍କ ପ୍ରାସାଦରୁ। ସତରେ ଆଜି ସେ ସାମ୍ରାଜ୍ଞୀ ଭଳି ଦିଶୁଥିଲେ। ରାଣୀ ବେଶରେ ତାଙ୍କର ରୂପ ଆହୁରି ଶାଣିତ, ଆହୁରି ଉଜ୍ଜ୍ୱଳ ହୋଇ ଉଠିଥିଲା। ପୁଷ୍ପ ସଜ୍ଜିତ ପଥରେ ସେ ଯେତେବେଳେ ସିଂହାସନ ଆଡ଼କୁ ଆଗେଇ ଆସିଲେ ସେତେବେଳେ

ରକ୍ତପଦ୍ମକୁ ମଧ ତାଙ୍କ ଚରଣ ନିକଟରେ ମ୍ଳାନ ମନେ ହେଉଥିଲା। ପ୍ରଥାନୁଯାୟୀ ସମ୍ରାଟଙ୍କ ଆସନର ସାମାନ୍ୟ ନିମ୍ନରେ ମହାରାଣୀଙ୍କ ଆସନ। ଅଭିଷେକ କକ୍ଷ ସେତେବେଳେ ପରିପୂର୍ଣ୍ଣ। କିନ୍ତୁ ଉପସ୍ଥିତ ଲୋକେ ଲକ୍ଷ୍ୟ କଲେ ମହାରାଣୀ ଥରଟିଏ ହେଲେ ସମ୍ରାଟଙ୍କଆଡ଼କୁ ଚାହିଁଲେ ନାହିଁ। ଉଦ୍ଧତ ଭଙ୍ଗୀ! ସମାନ୍ୟ କୃତଜ୍ଞତାର ଚିହ୍ନ ସୁଦ୍ଧା ନାହିଁ। କିନ୍ତୁ ସୁନ୍ଦରୀ ରମଣୀ ଭିତରେ ଯଦି ଚୁମ୍ବକ ଥାଏ, ତା'ହେଲେ ମୁହୂର୍ତ୍ତକ ମଧରେ ତା ଦୋଷ ସ୍ଖଳିତ ହୋଇଯାଏ। ସେମାନେ ଜୟଧ୍ୱନି ଦେଲେ। ସମ୍ରାଟଙ୍କ ଦୀର୍ଘଜୀବନ କାମନା କଲେ। ତା'ପରେ ଉପଗୁପ୍ତ ଦଣ୍ଡାୟମାନ ହେଲେ ଆଶୀର୍ବାଦ ବାଣୀ ଉଚ୍ଚାରଣ କରିବା ପାଇଁ। ସମ୍ରାଟ ବ୍ୟସ୍ତ ବିବ୍ରତ ସ୍ୱରରେ ମହାରାଣୀଙ୍କୁ କହିଲେ, ''ଗୁରୁଦେବ ଉପଗୁପ୍ତ। ଯାଅ, ଆଶୀର୍ବାଦ ଗ୍ରହଣ କର।''



ଈଷତ୍ ବିରକ୍ତ ତିଷ୍ୟା ଦୃଷ୍ଟି ନିକ୍ଷେପ କଲେ। ସମ୍ରାଟ ସହିତ ତାଙ୍କର ସର୍ତ୍ତ ଥିଲା, କୌଣସି ଧର୍ମାନୁଷ୍ଠାନରେ ସମ୍ରାଟ ତାଙ୍କୁ ବାଧ କରିବେ ନାହିଁ। ଏଇ ବିଶ୍ୱାଚ

ପୃଥିବୀରେ ସେ ତଥାଗତଙ୍କ ବାଣୀ ପ୍ରଚାର କରନ୍ତୁ। ତାଙ୍କ ଧର୍ମଯାତ୍ରାର ରଥ ଦିଗନ୍ତସ୍ପର୍ଶୀ ହେଉ, ତିଷ୍ୟାର ସେଥିରେ କିଛି ଯାଏ ଆସେନା, କିନ୍ତୁ ତା'ଭଳି ଏକ ସାମାନ୍ୟ ନାରୀହୃଦୟ ଜୟ କରିବାକୁ ସମ୍ରାଟ ଯେମିତି ଅକ୍ଷମ ହୁଅନ୍ତି ଚିରକାଳ। ସମ୍ରାଟ କଣ ସେ ସର୍ତ୍ତ ଲଙ୍ଘନର ଚେଷ୍ଟା କରୁଛନ୍ତି? ଏଇ ଅଭିଷେକ ସଭାର ଛଳନାରେ ତାଙ୍କୁ କଣ ବଶୀଭୂତ କରିବାର ଚେଷ୍ଟା କରାହେଉଛି?

କିନ୍ତୁ ସଭାର ସମସ୍ତେ ତାଙ୍କୁ ଦେଖୁଛନ୍ତି। ତିଷ୍ୟା ମଧ ଦେଖିଲେ ଜଣେ ସୌମ୍ୟକାନ୍ତି ସନ୍ନ୍ୟାସୀ ସ୍ମିତମୁଖରେ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି, — ଯାହାଙ୍କ ଦୃଷ୍ଟିରେ ଅପାର ସ୍ନେହ, କ୍ଷମା ଏବଂ ପ୍ରେମର ସ୍ପର୍ଶ। ଈଶ୍ୱର କେମିତି ତିଷ୍ୟା ଜାଣନ୍ତିନି, ବୁଦ୍ଧଙ୍କୁ ଦେଖିବାର ସୁଯୋଗ ହୋଇନି, କାରଣ ସେ ଦୁଇଶତ ବର୍ଷ ପୂର୍ବରୁ ହିଁ ଗତ ହୋଇଛନ୍ତି। କିନ୍ତୁ ଏଇ ସନ୍ନ୍ୟାସୀ ଯେ ପବିତ୍ରତମ ମଣିଷ — ଏ କଥା ବୁଝିବାରେ ଅସୁବିଧା ହୁଏ ନାହିଁ।

ତିଷ୍ୟା ଆସନରୁ ଉଠି ଛିଡ଼ା ହେଲେ। ତା'ପରେ ନମ୍ରଭଙ୍ଗୀରେ ଉପଗୁପ୍ତଙ୍କ ସାମ୍ନାରେ ଅବନତ ହେଲେ। ଉପଗୁପ୍ତ ଆଶୀର୍ବାଦ ଉଚ୍ଚାରଣ କଲେ, ''ପ୍ରିୟବାକ୍ୟ ଉଚ୍ଚାରଣ କର, କାର୍ପଣ୍ୟ ପରିହାର କର, ଦାନଶୀଳା ହୁଅ, ସତ୍ୟରେ ସ୍ଥିର ରୁହ, ଈର୍ଷା ଏବଂ କ୍ରୋଧ ପରିତ୍ୟାଗ କର।'' ତା'ପରେ ନିଜ ମନେମନେ ଉଚ୍ଚାରଣ କଲେ, ''ମୁଁ ବୁଦ୍ଧଙ୍କ ଶରଣ ଗ୍ରହଣ କରିଛି, ମୁଁ ଧର୍ମର ଶରଣ ଗ୍ରହଣ କରିଛି, ମୁଁ ସଙ୍ଘର ଶରଣ ଗ୍ରହଣ କରିଛି।''

ଆଶୀର୍ବାଦ କରି ଉପଗୁପ୍ତ ଏବଂ ଅନ୍ୟାନ୍ୟ ଶିଷ୍ୟମାନେ ପ୍ରସ୍ଥାନ କରିବାପରେ ତିଷ୍ୟା ନିଜ ଆସନକୁ ଫେରି ଆସିଲେ। ତା ହୃଦୟ ଯେପରି ଉଦ୍‌ଭ୍ରାନ୍ତ। ସନ୍ନ୍ୟାସୀଙ୍କ ଅମୃତବାକ୍ୟ ଶ୍ରବଣମାତ୍ରେ ରକ୍ତରେ ଅଦ୍ଭୁତ ସ୍ଥିରତା ବିରାଜ କରୁଛି। ଜ୍ଞାନଚକ୍ଷୁ ଉନ୍ମୋଚନ ପରଠୁଁ ଏଇ ପ୍ରଥମ ଥର ଯେ ଯେମିତି ଶାନ୍ତିର ଛାୟାରେ ଛିଡ଼ାହେଲେ। ତିଷ୍ୟା ଅନ୍ୟମନସ୍କଭାବେ ସମ୍ରାଟଙ୍କ ଆଡ଼କୁ ଚାହିଁବା ମାତ୍ରେଇ ସବୁ ବୋଧ ମ୍ଳାନ ହୋଇଗଲା। ତିକ୍ତ ଏକ ଢେଉ ତାଙ୍କୁ ଭସେଇ ନେଇଗଲା। ତାଙ୍କର ବିଦ୍ରୋହୀ ମନ ପୁଣି ସ୍ଥାନ ଅଧିକାର କଲା। ଏଇ ଜରାଗ୍ରସ୍ତ ବୃଦ୍ଧର ତଥାଗତଙ୍କ ଶରଣ ନେବା ଭିନ୍ନ ଅନ୍ୟ ଉପାୟ ନାହିଁ। ଜୀବନର ସବୁ ରସ ଭୋଗ କରି ଜୀର୍ଣ୍ଣ ହେବାପରେ ତଥାଗତଙ୍କୁ ଜାବୁଡ଼ି ଧରିବାର କାରଣ ରହିବା ହିଁ ସ୍ୱାଭାବିକ। ନୂଆ ଅତ୍ୟାଚାର କରିବାର ସାଧ୍ୟ ଯେ ତାଙ୍କର ସରି ଆସିଥିଲା। ଶାର୍ଦ୍ଦୂଳ ଯେତେବେଳେ ହିଁ ମାଂସରେ ଅନାସକ୍ତ ହୁଏ, ଯେତେବେଳେ ତାର ନଖଦନ୍ତ ଖସିଯାଏ।

ଏଇ ସମୟରେ ଘୋଷକ ଘୋଷଣା ସୁରୁ କଲେ। ସମ୍ରାଟଙ୍କ ମନ୍ତ୍ରୀ, ଅମଲା ଏବଂ ସାମ୍ରାଜ୍ୟର ବିଖ୍ୟାତ ଲୋକମାନେ ଜଣେ ଜଣେ କରି ସେମାନଙ୍କ ଶ୍ରଦ୍ଧାର୍ଘ୍ୟ ମହାରାଣୀଙ୍କୁ ନିବେଦନ କରିଯିବାକୁ ଲାଗିଲେ। ପ୍ରତି ଅର୍ଘ୍ୟ ନିବେଦିତ ହେବା ପୂର୍ବରୁ

ମହାରାଣୀଙ୍କୁ ସେଇ ବ୍ୟକ୍ତିର ପରିଚୟ ପ୍ରଦାନ କରା ହେଉଥିଲା। ଏସବୁ କିଛି ତିଷ୍ୟାଙ୍କ କାନକୁ ଯାଇ ନ ଥିଲା, ଅର୍ଘ୍ୟ ଆଡ଼କୁ ମଧ ଦୃଷ୍ଟି ନଥିଲା। ଏତେ ବଡ଼ ସୌଭାଗ୍ୟର ଅଧିକାରିଣୀ ହେବା ସତ୍ତ୍ୱେବି ନିଜକୁ ତାଙ୍କର ନିଃସ୍ୱ ମନେହେଉଥିଲା। ତାଙ୍କର ଇଚ୍ଛା ହେଉଥିଲା, ଉପଗୁପ୍ତଙ୍କୁ ପଚାରିବେ — ସାରାଜୀବନ ଯିଏ ତୃଷିତ ହୋଇ ସାମାନ୍ୟ ଜଳ ପାଇଁ କାଙ୍ଗାଳ, ତାକୁ ଟୋପାଏ ଅମୃତ କେତେଟା ତୃପ୍ତ କରିବ? ଏଇ ଅମୃତର କୌଣସି ପ୍ରୟୋଜନ ନାହିଁ, ବରଂ ତୃଷ୍ଣାର ଯେଉଁ ଜ୍ୱାଳା, ସେଥିରେ ଜଳି ଯିବା ତା'ଠାରୁ ଅନେକ ସୁଖଦାୟକ।

ସମ୍ମାନ ପ୍ରଦର୍ଶନର ଶୋଭାଯାତ୍ରା ଯେତେବେଳେ ଶେଷ ହେଲା, ସଭାକାର୍ଯ୍ୟ ସାଙ୍ଗପ୍ରାୟ, ସେତେବେଳେ ଘୋଷକ ଘୋଷଣା କଲା, ଜୀବକର ଆମ୍ରବନରୁ ରାଜକୁମାର ଏଇମାତ୍ର ଉପସ୍ଥିତ ହୋଇଛନ୍ତି ମହାରାଣୀଙ୍କୁ ଶ୍ରଦ୍ଧାଜ୍ଞାପନ କରିବାପାଇଁ। ଶ୍ରବଣମାତ୍ରେ ତିଷ୍ୟାଙ୍କ ବିରକ୍ତି ବଢ଼ିଲା। ସମ୍ରାଟ କଣ ତାଙ୍କୁ ପାରିବାରିକ ବନ୍ଧନରେ ଆବଦ୍ଧ କରିବାକୁ ଚାହୁଁଛନ୍ତି? କିନ୍ତୁ ସେହି ମୁହୂର୍ତ୍ତରେ ତାଙ୍କ ଦୃଷ୍ଟି ପ୍ରଧାନ ପ୍ରବେଶ ପଥରେ ପଡ଼ିବା ମାତ୍ରେ ସମସ୍ତ ଦେହରେ ଅଜସ୍ର କଦମ୍ବ ବିକଶିତ ହୋଇଉଠିଲା। ବୈଶାଖର ଶେଷ ଅପରାହ୍ନରେ ଯେମିତି ଅନ୍ଧକାର-ଆକାଶ ବିଦୀର୍ଣ୍ଣ କରୁଥିବା ବିଦ୍ୟୁତ୍‌ରେ ଚମକିତ ହୁଏ ପୃଥିବୀ, ସେମିତି ତାଙ୍କ ହୃଦୟ, ତାଙ୍କ ଶରୀର ହଠାତ୍ ଇ ଶିହରିତ ହୋଇ ଉଠିଲା।

ଏ କାହାକୁ ଦେଖୁଛନ୍ତି ସେ?

ତତ୍‌କ୍ଷଣାତ୍ ଚକ୍ଷୁ ବନ୍ଦ କରିବାମାତ୍ରେ ଏକ ପ୍ରାୟ ତରୁଣ ରାଜକୁମାରଙ୍କୁ ଦେଖି ପାରିଲେ ସେ। ଅଧକ୍ଷଙ୍କ ନିର୍ଦ୍ଦେଶ ଶୁଣି ଯିଏ ଅବାଧ ଭଙ୍ଗୀରେ ପ୍ରତିବାଦ କରିଥିଲେ, ପ୍ରଭାତ ହୋଇ ଆସୁଥିବା ଆବ୍‌ଛା ଅନ୍ଧକାରରେ ଯିଏ ତାଙ୍କ ମୁହଁ ଦୁଇ ହାତରେ ଧରି ଆକଣ୍ଠ ଚୁମ୍ବନ କରିଥିଲେ ସିଂହର ଉତ୍ତାପରେ, ରଜ୍ଜୁବଦ୍ଧ ଅବସ୍ଥାରେ ମଧ ଯିଏ ଅଧକ୍ଷଙ୍କ ନିର୍ଦ୍ଦେଶ ମାନିବାକୁ ରାଜି ନ ଥିଲେ, ମଗଧ ସୀମାରେ ଯିଏ ତାଙ୍କୁ ଅବହେଳାରେ ପରିତ୍ୟାଗ କରିଗଲେ, ସେଇ ସୁଦର୍ଶନ ସତେ ଯେପରି ତାଙ୍କ ସମ୍ମୁଖରେ! ଯାହାଙ୍କ ପାଇଁ ସେ ତିରିଶ ବର୍ଷ ପ୍ରତୀକ୍ଷା କରି ରହିଛନ୍ତି ବ୍ରହ୍ମଚାରିଣୀ ହୋଇ!

ତିଷ୍ୟା ବିସ୍ମୃତା ହେଲେ ସେ ରାଜସଭାରେ ଆସୀନା। ସେ ବିସ୍ମୃତା ହେଲେ ତାଙ୍କ ଦକ୍ଷିଣରେ ସ୍ୱୟଂ ସମ୍ରାଟ, ସମ୍ମୁଖରେ ଏବଂ ଦୁଇ ପାର୍ଶ୍ୱରେ ସାମ୍ରାଜ୍ୟର ବିଦଗ୍ଧଜନ। ତାଙ୍କର ମନେପଡ଼ିଲା, "ନିବ୍ରୁତା ନୂନା ସା ନାରୀ, ଯସସାୟଂ ଇଦିଶୋ ପତି।" ଏଇଭଳି ସ୍ୱାମୀ ପାଇଲେ ହିଁ ନାରୀ ହୃଦୟ ପରିତୃପ୍ତ ବା ନିର୍ବାପିତ ହୁଏ। ଏଇ ସେଇ ପୁରୁଷ ଯିଏ ତାଙ୍କ ସ୍ୱପ୍ନର ସଙ୍ଗୀ, ଜାଗରଣର କଳ୍ପନା, ତାଙ୍କର ପ୍ରତି ପଳବିପଳର ଆକାଙ୍‌କ୍ଷା। ଯାଙ୍କୁ ସ୍ମରଣରେ ରଖି ତାଙ୍କର

ପ୍ରତିଟି ଦିବସ ରାତ୍ରି କଟିଛି। ସେଇ ଆକାଙ୍‌କ୍ଷିତ ପୁରୁଷ ବର୍ତ୍ତମାନ ତାଙ୍କ ସମ୍ମୁଖରେ। ତିଷ୍ୟା ଆବେଗରେ ଉଠି ଛିଡ଼ାହେଲେ। ତାଙ୍କର ଅଧର ସ୍ଫୁରିତ ହେଲା, ନାସା ଈଷତ୍‌ସ୍ଫୀତ। କିନ୍ତୁ ସେ ଆବିଷ୍କାର କଲେ ତାଙ୍କ କଣ୍ଠରେ କୌଣସି ସ୍ୱର ନାହିଁ, ଯେମିତି ପୃଥିବୀର ସବୁ ମରୁଭୂମି ଏକତ୍ରିତ ହୋଇ ସେଠି ବସା ବାନ୍ଧିଛନ୍ତି। ତାଙ୍କ ଚକ୍ଷୁ ସାମ୍ନାରେ ଯେମିତି ଆଉ କିଛି ନାହିଁ। ସମଗ୍ର ଜଗତ୍ ସଂସାର ଉଭେଇ ଗଲା। ଯେମିତି ତାଙ୍କର ଈଶ୍ୱର ଦର୍ଶନ ହେଲା। ସମସ୍ତ ଶରୀରରେ କମ୍ପନ। ଦୁଇପାଦ ଅଚଳ, ନିସ୍ତେଜ। ଊର୍ଦ୍ଧାଙ୍ଗର ଭାର ସମ୍ଭାଳି ନ ପାରି ସେ ପୁଣି ବସିପଡ଼ିଲେ।

ସୁଦର୍ଶନ ତରୁଣ ଦୃଢ଼ ପଦକ୍ଷେପରେ ସମ୍ମୁଖରେ ଆସି ଛିଡ଼ା ହେଲେ। ତାଙ୍କ ଅଙ୍ଗରେ ରାଜଭୂଷଣ ନାହିଁ, କିନ୍ତୁ ଯାହା ଅଛି, ସେଥିରେ ସୁରୁଚି ସ୍ପଷ୍ଟ। ତାଙ୍କ ପଦକ୍ଷେପରେ ଔଦ୍ଧତ୍ୟ ନାହିଁ, କିନ୍ତୁ ଆସ୍ଥା ଅଛି ପରିଷ୍କାର। ସିଂହାସନ ତଳେ ଛିଡ଼ାହୋଇ ସେ ନତଜାନୁ ହେଲେ। କିନ୍ତୁ ଏ ସବୁ କିଛି ଯେମିତି ତିଷ୍ୟା ଦେଖୁ ନ ଥିଲେ ଅଥବା ଦେଖିବାର ଶକ୍ତି ନ ଥିଲା। ରାଜପୁତ୍ର ଯେତେବେଳେ ଶ୍ରଦ୍ଧାର୍ଘ୍ୟ ଭାବରେ ଏକ ସଦ୍ୟ ପ୍ରସ୍ଫୁଟିତ ଶ୍ୱେତଗୋଲାପ ନିବେଦନ କଲେ, ସେତେବେଳେ ସ୍ତୂପୀକୃତ ଅନ୍ୟାନ୍ୟ ମହାର୍ଘ୍ୟ ମ୍ଳାନ ହୋଇଗଲା। ସମ୍ରାଟଙ୍କୁ ପ୍ରଣାମ କରି ରାଜକୁମାର ତିଷ୍ୟାଙ୍କ ସମ୍ମୁଖରେ ନତଜାନୁ ହେଲେ, ''ମହାରାଣୀ ମୋ ଜନନୀ। ମୁଁ ପ୍ରାର୍ଥନା କରୁଛି ତଥାଗତ ଯେମିତି ତାଙ୍କୁ ଶାନ୍ତି ଦିଅନ୍ତି।''

ତା'ପରେ ଶିଷ୍ଟ ଭଙ୍ଗୀରେ ସେ ଧୀରେ ଧୀରେ ରାଜସଭାରୁ ପ୍ରସ୍ଥାନ କଲେ।

ସସମ୍ମାନରେ ତିଷ୍ୟା ଯେତେବେଳେ ଫେରି ଆସିଲେ ତାଙ୍କ ପ୍ରାସାଦକୁ, ସେତେବେଳେ ସୁଦ୍ଧା ତାଙ୍କ ଚେତନା ପରିଚ୍ଛନ୍ନ ହୋଇନି। ବାରମ୍ବାର ମନେ ହେବାକୁ ଲାଗିଲା, ଏତେଦିନର ଅପେକ୍ଷା ଆଜି ତାଙ୍କର ସାର୍ଥକ। ଅବଶେଷରେ ସେଇ ନୟନ ମନୋହର ରାଜକୁମାରଙ୍କ ଦର୍ଶନ ପାଇଲେ ସେ। ଅବିକଳ ସେଇ ରାଜକୁମାର। ହୁଏତ ସେଇଭଳି ଉଦ୍ଧତ ଅବାଧଭଙ୍ଗୀ ନାହିଁ, କିନ୍ତୁ ମୁହଁର ଗଠନ, କେଶ ବିନ୍ୟାସର ଭଙ୍ଗୀ, ଦେହର ବର୍ଣ୍ଣସବୁ ଏକା। ଏମିତିକି ଚାଲିବା ଭଙ୍ଗୀଟି ମଧ୍ୟ ସମାନ। ତିଷ୍ୟା ବେଶ ପରିବର୍ତ୍ତନ ନ କରି ଶଯ୍ୟାରେ ମୁହଁ ଗୁଞ୍ଜି ଶୋଇ ରହିଲେ ବହୁସମୟ। ତାଙ୍କ ହୃଦୟ କେବଳ ରାଜକୁମାରଙ୍କ ଦର୍ଶନପିଆସୀ ହୋଇଉଠୁଥିଲା। ଯେଉଁ ଅଗ୍ନିକଣିକାକୁ ତିରିଶ ବର୍ଷ ସେ କୃପଣ ଭଳି ପବନ ଏବଂ ଜଳର ଆକ୍ରମଣରୁ ରକ୍ଷା କରିଥିଲେ, ସେଇ ଅଗ୍ନିକଣିକା ବର୍ତ୍ତମାନ ହଠାତ୍ ବିଶାଳ ଆକାର ଧାରଣ କରି ତାଙ୍କୁ ଇ ଦଗ୍ଧ କରୁଛି।

ଏଇ ସମୟରେ ତିଷ୍ୟାଙ୍କ ପ୍ରଧାନ ପରିଚାରିକା ସୁପ୍ରବାସା ବିନୀତ କଣ୍ଠରେ କହିଲା, ''ମହାରାଣୀ ! ଶଯ୍ୟାତ୍ୟାଗ କରନ୍ତୁ ; ଆହାର ପ୍ରସ୍ତୁତ।''

ତିଷ୍ୟା ସେମିତି ଶଯ୍ୟାରେ ମୁହଁ ଗୁଞ୍ଜି ରଖି ଉତ୍ତର ଦେଲେ, ''ନା, ଆଜି ଆଉ କିଛି ଖାଦ୍ୟ ଗ୍ରହଣ କରିବିନି। କ୍ଷୁଧା ନାହିଁ। ତମେ ସବୁ ଯାଅ। ମୋତେ ଟିକେ ଏକାକୀ ରହିବାକୁ ଦିଅ।''

ସୁପ୍ରବାସା ବିଚକ୍ଷଣା। କିନ୍ତୁ ତଥାପି ସେ ମହାରାଣୀଙ୍କ ଏ ପରିବର୍ତ୍ତନର କାରଣ ଆବିଷ୍କାର କରିପାରିଲା ନାହିଁ। ମହାରାଣୀ ଅସୁଖୀ, କିଛିଟା ବିରୂପ ସ୍ୱଭାବୀ। କିନ୍ତୁ ସେମାନଙ୍କ ପ୍ରତି କେବେହେଲେ ରୂଢ଼ ବ୍ୟବହାର କରି ନାହାଁନ୍ତି। ଆଜି ରାଜସଭାରେ ସେ ମହାରାଣୀଙ୍କ ପଛରେ ଥିଲା। ସେଠାରେ ତ କୌଣସି ଅଶୋଭନ ବ୍ୟାପାର ଘଟିନାହିଁ। କେବଳ ରାଜପୁତ୍ରଙ୍କୁ ଦେଖିବାମାତ୍ରେ ମହାରାଣୀଙ୍କ ଆସନତ୍ୟାଗ ତା' ନଜର୍‌ରେ ପଡ଼ିଥିଲା। କନିଷ୍ଠ ଜନକୁ ଦେଖି କେହି ଏଭଳି ସମ୍ମାନ ପ୍ରଦର୍ଶନ କରେ ନାହିଁ। ତେବେ ଏଟା ମଧ୍ୟ ଠିକ୍, ସନ୍ନ୍ୟାସୀ ଉପଗୁପ୍ତଙ୍କ ନିକଟରୁ ଆଶୀର୍ବାଣୀ ଗ୍ରହଣ କରିବା ପାଇଁ ମହାରାଣୀ ଆଉ ଟିକିଏ କମ କାଳକ୍ଷେପଣ କରିଥିଲେ ଶୋଭନ ହୋଇଥାନ୍ତା। ତା'ହେଲେ କି କାରଣ ରହିଛି, ମଧ୍ୟାହ୍ନ ଆହାର ପରିତ୍ୟାଗ କରି ଶଯ୍ୟାରେ ପଡ଼ିରହିବାର ?

ସୁପ୍ରବାସା ନାରୀ। ସେ ଜାଣେ, ବିଶେଷ କାରଣ ବ୍ୟତୀତ ନାରୀ ଏଇ ଭଙ୍ଗୀରେ ଶୟନ କରେନାହିଁ, ଆହାରରେ ଅନିଚ୍ଛା ଜଣାଏ ନାହିଁ। କିନ୍ତୁ ଏଇ ମୁହୂର୍ତ୍ତରେ ମହାରାଣୀଙ୍କୁ ବିରକ୍ତ ନ କରିବା ହିଁ ଶ୍ରେୟ ମନେକଲା ସେ।

ଶେଷ ଦ୍ୱିପ୍ରହର ବେଳକୁ ତିଷ୍ୟା ଆଉ ଶଯ୍ୟାରେ ରହି ପାରିଲେ ନାହିଁ। କୌଣସିମତେ ତାଙ୍କ ଚିତ୍ତରେ ଶାନ୍ତି ଆସୁନି, ଅଙ୍ଗର ଜ୍ୱାଳା କମୁନି। ସେ ଯେଉଁ ଆଡ଼କୁ ଚାହୁଁଛନ୍ତି, ଅନ୍ଧକାରାଛନ୍ନ ଦ୍ୱୀପରେ ଶାୟିତ ରାଜକୁମାରଙ୍କୁ ହିଁ ଦେଖୁଛନ୍ତି। ଚକ୍ଷୁ ମୁଦିଲା ମାତ୍ରେ ସେଇ ସୁଦର୍ଶନ ସାମ୍ନାରେ ଛିଡ଼ା ହୋଇ ତାଙ୍କ ଆଡ଼କୁ ଚାହିଁ ରହୁଛନ୍ତି। ତିରିଶ ବର୍ଷ ଧରି ଲାଳିତ ଏକ ଛବି ଯେମିତି ଆଜି ତାଙ୍କ ଚାରିପାଖରେ ନିଜକୁ ଆଉରି ବର୍ଣ୍ଣାଢ୍ୟ ଭାବରେ ମେଲି ଧରିଛି !

ତିଷ୍ୟା ତାଙ୍କ ବିଶାଳ କେଶରାଶି ବନ୍ଧନମୁକ୍ତ କଲେ। ଅଜସ୍ର ନାଗୁଣୀ ଭଳି ତାଙ୍କ ପୃଷ୍ଠଦେଶ ଅତିକ୍ରମି, ନିତମ୍ବ ଆବୃତ କରି ଜାନୁପର୍ଯ୍ୟନ୍ତ ଓହ୍ଲେଇ ଆସିଲା। ବହୁକ୍ଷଣ ଅଭୁକ୍ତ ରହିଥିବା ଫଳରେ ତାଙ୍କ ମୁଖ ଶୁଷ୍କ ହୋଇପଡ଼ିଥିଲା। ଅବରୁଦ୍ଧ କ୍ରନ୍ଦନ ତାଙ୍କ ଆଖିପତାକୁ ସ୍ଫୀତ କରିଥିଲା। ହଠାତ୍ ତାଙ୍କ କାନରେ କିଛି ଶବ୍ଦ ପ୍ରବେଶ କଲା। କେଉଁମାନେ ଯେମିତି ନିତାନ୍ତ ବ୍ୟସ୍ତ ହୋଇ ନିକଟରେ ହିଁ କେଉଁଠି କଥାବାର୍ତ୍ତା ହେଉଛନ୍ତି ! ସେ ସୁପ୍ରବାସାକୁ ଡାକିବାକୁ ଯାଇ ଆବିଷ୍କାର କଲେ, ତାଙ୍କ କଣ୍ଠସ୍ୱର ଖୁବ୍ ଦୁର୍ବଳ ଶୁଭୁଛି; ନିଜ ପାଖରେ ହିଁ ଅପରିଚିତ !

ସୁପ୍ରବାସା ଦ୍ରୁତ ପଦରେ ସାମ୍ନାରେ ଆସି ଛିଡ଼ା ହେଲା। ସେ ମହାରାଣୀଙ୍କୁ ପର୍ଯ୍ୟବେକ୍ଷଣ କରି ମଧ୍ୟ କୌଣସି ସୂତ୍ର ଖୋଜି ପାଇଲା ନାହିଁ, ଏ ପରିବର୍ତ୍ତନର। ତିଷ୍ୟା କହିଲେ, ''କେଉଁମାନେ କଥାବାର୍ତ୍ତା କରୁଛନ୍ତି ? କଣ ପାଇଁ ଏ ସୋରଗୋଳ ?''

ସୁପ୍ପବାସା କହିଲା, ''ସୋରଶଦ୍ଧ ନୁହେଁ ମହାରାଣୀ, ଆଜି ସନ୍ଧ୍ୟାରେ ଆମ ପାଖ ଉଦ୍ୟାନରେ ଅଭିନୟର ବ୍ୟବସ୍ଥା ହୋଇଛି। ପ୍ରତି ଶୁକ୍ଳପକ୍ଷ ପଞ୍ଚମୀ ତିଥିରେ ଏହିଭଳି ଆୟୋଜନ କରାହୁଏ। ସମ୍ରାଟ ତ ନିଶ୍ଚୟ, ସନ୍ନ୍ୟାସୀ ଉପଗୁପ୍ତ ମଧ୍ୟ ପ୍ରଧାନ ଦର୍ଶକ ଭାବରେ ଉପସ୍ଥିତ ରହନ୍ତି।''

ତିଷ୍ୟା ଆଶ୍ଚର୍ଯ୍ୟ ହେଲେ, ''ସତରେ ? ଆମ ପାଖ ଉଦ୍ୟାନରେ ?''

''ହଁ। ଆପଣ ସେଇ ବାତାୟନ ନିକଟକୁ ଆସିଲେ ଇ ଦେଖି ପାରିବେ।''

ତିଷ୍ୟା ଭୂମିରେ ପାଦ ରଖିବା ମାତ୍ରେ ଜାଣିପାରିଲେ, ତାଙ୍କ ଶରୀର ସମ୍ପୂର୍ଣ୍ଣ ସୁସ୍ଥ ନାହିଁ। କ୍ଳାନ୍ତି ବୋଧ କରୁଛନ୍ତି। ଧୀରେ ଧୀରେ ବାତାୟନ ନିକଟରେ ଯାଇ ଛିଡ଼ା ହେଲେ ସେ। ତଳେ ସବୁଜ ଗାଲିଚା ଭଳି ପ୍ରାନ୍ତର। ତା' ଚାରିପଟରେ ଉଦ୍ୟାନ। ପ୍ରାନ୍ତରରେ ଶ୍ରମିକମାନଙ୍କ କାର୍ଯ୍ୟ ତଦାରଖ କରୁଛନ୍ତି କେତେକ ରାଜକର୍ମଚାରୀ। ଦର୍ଶକମାନଙ୍କ ଆସନ, ଅଭିନୟ ମଞ୍ଚ, ଏବଂ ବେଶ ପରିବର୍ତ୍ତନ ପାଇଁ କକ୍ଷ ନିର୍ମାଣ କରାହେଉଛି ଆଜି ସନ୍ଧ୍ୟା ପାଇଁ।

ତିଷ୍ୟା ଦେଖିଲେ ତାଙ୍କ ପ୍ରାସାଦକୁ ଲାଗି ବେଶ ପରିବର୍ତ୍ତନ କକ୍ଷ ନିର୍ମିତ ହେଉଛି। ବେଶ ପରିବର୍ତ୍ତନ କକ୍ଷର ପ୍ରବେଶପଥ ମଧ୍ୟ ପ୍ରାସାଦକୁ ଲାଗି। ବିରକ୍ତ ହେଲେ ତିଷ୍ୟା। ବିନାନୁମତିରେ ସେମାନେ ଏ କାର୍ଯ୍ୟ କରୁଛନ୍ତି କାହିଁକି ? ତା'ଛଡ଼ା ଏ ନଗରୀରେ କଣ ଆଉ କୌଣସି ଉଦ୍ୟାନ ନ ଥିଲା ? ବାଛି ବାଛି ସମ୍ରାଟ ଏଇ ଉଦ୍ୟାନକୁ ହିଁ ନିର୍ବାଚିତ କଲେ, କଣ ତାଙ୍କୁ ଆନନ୍ଦ ଦେବାପାଇଁ ? ବୃଦ୍ଧର କି ସଉକ ? ସେ ଜିଜ୍ଞାସା କଲେ, ''ସୁପ୍ପବାସା, ଏଇ ଉଦ୍ୟାନରେ ଏହା ପୂର୍ବରୁ କେବେ ଅଭିନୟ ହୋଇଛି ?''

''ହଁ, ମହାରାଣୀ।''

ତିଷ୍ୟା ଓଷ୍ଠ ଦଂଶନ କଲେ। ସେ ସ୍ଥିର କଲେ ଉଦ୍ୟାନ ପଟକୁ ତାଙ୍କ ପ୍ରାସାଦର ସମସ୍ତ ବାତାୟନ ବନ୍ଦ ରହିବ ଆଜି ସନ୍ଧ୍ୟାରେ। ସମ୍ରାଟ ଯେତେ ଇଚ୍ଛା ପ୍ରମୋଦ କରନ୍ତୁ, ତାଙ୍କର କିଛି ଯାଏ ଆସେନା। କିନ୍ତୁ କୌତୂହଳ ମଧ୍ୟ ହେଲା, କି ଅଭିନୟ ହେଉଛି ଆଜି ? ପ୍ରଶ୍ନ କରିବାରୁ ସୁପ୍ପବାସା ଜଣେଇଲା, ତଥାଗତଙ୍କ ଜୀବନର ନାନା ଘଟଣା ହିଁ ଅଭିନୟର ବିଷୟବସ୍ତୁ। ସେ ଶୁଣିଛି, ଆଜି ସୁଜାତା ଏବଂ ତଥାଗତଙ୍କ ସମ୍ପର୍କ କଥା ଅଭିନୀତ ହେବ।

ତିଷ୍ୟା ଜିଜ୍ଞାସା କଲେ—''ସତରେ ? ତଥାଗତଙ୍କ ଭୂମିକାରେ ଅଭିନୟ କରିବାର ସ୍ପର୍ଦ୍ଧା ଏଇ ରାଜ୍ୟର କେଉଁ ଅଭିନେତାର ଅଛି ?''

ସୁପ୍ପବାସା କହିଲା, ''ରାଜକୁମାର ଯେତେବେଳେ ଅଭିନୟ କରନ୍ତି, ସେତେବେଳେ ଅଭିନୟ ବି ସତ୍ୟ ବୋଲି ମନେହୁଏ।

ସଙ୍ଗେ ସଙ୍ଗେ ସଚକିତା ହେଲେ ତିଷ୍ୟା; ''ରାଜକୁମାର ? ରାଜକୁମାର ଅଭିନୟ କରିବେ ?''

''ହଁ, ସେ ତ ଉଦ୍ୟୋକ୍ତା ।''

ଅନ୍ୟମନସ୍କ ତିଷ୍ୟା ଜିଜ୍ଞାସା କଲେ, ''ରାଜକୁମାରଙ୍କ ସମ୍ପର୍କରେ କଣ ଜାଣିଛୁ କହିଲୁ ମୋତେ ।''

ସୁପ୍ପବାସା ଆଶ୍ଚର୍ଯ୍ୟ ହେଲା । ରାଜକୁମାରଙ୍କ ସମ୍ପର୍କରେ ମଗଧର ସମସ୍ତେ ଅବହିତ ଆଉ ମହାରାଣୀ ଜାଣନ୍ତି ନାହିଁ! ତା'ହେଲେ ରାଜସଭାରେ ତାଙ୍କୁ ଦେଖିଲା ମାତ୍ରେ ମହାରାଣୀ ଦଣ୍ଡାୟମାନ ହୋଇ ପଡ଼ିଥିଲେ କାହିଁକି ? କିନ୍ତୁ ପରିଚାରିକା ଭାବରେ ସେ ଶିଖିଛି, ସବୁଠି କୌତୂହଳ ପ୍ରଦର୍ଶନ କରିବା ବୁଦ୍ଧିମତୀର କାର୍ଯ୍ୟ ନୁହେଁ। ସେ ଜଣେଇଲା, ରାଜକୁମାରଙ୍କ ଭଳି ପୁରୁଷ କେବଳ ପାଟଳିପୁତ୍ରରେ କାହିଁକି ମଗଧରେ ମଧ୍ୟ ଅଛନ୍ତି କି ନାହିଁ ସନ୍ଦେହ। ଏତେ ସୁନ୍ଦର କାନ୍ତି, ସୁକଣ୍ଠ ଏବଂ ଏତେ ସୁମିଷ୍ଟ ବ୍ୟବହାର କ୍ୱଚିତ୍ କାହାରି ନିକଟରେ ଦେଖାଯାଏ। ରାଜକୁମାର ହୋଇ ମଧ୍ୟ ସେ ଯୁଦ୍ଧବିଦ୍ୟା ଶିଖି ନାହାଁନ୍ତି, ଅସ୍ତ୍ର ଧାରଣ କରିନାହାଁନ୍ତି। କିନ୍ତୁ ତାଙ୍କ ପରି ଶାସ୍ତ୍ରବିତ୍ ଏ ରାଜ୍ୟରେ ବିରଳ। ସେ ହେଲେ ପ୍ରକୃତ ଅର୍ଥରେ ବୌଦ୍ଧ। ବୁଦ୍ଧଙ୍କ ପାଇଁ ସେ ଜୀବନ ଦେଇପାରନ୍ତି। ସମ୍ରାଟ ଜ୍ୟେଷ୍ଠ ରାଜକୁମାର ଏବଂ ଜ୍ୟେଷ୍ଠା ରାଜକୁମାରୀଙ୍କୁ ଧର୍ମପ୍ରଚାର ପାଇଁ ବିଦେଶକୁ ପଠାଇଛନ୍ତି। ସେମାନେ କେବେ ଫେରିବେ, କେହି ଜାଣନ୍ତି ନାହିଁ। ସମସ୍ତେ ଆଶା କରନ୍ତି ରାଜକୁମାର ପିତାଙ୍କ ଦାୟିତ୍ୱ ଗ୍ରହଣ କରିବେ। କିନ୍ତୁ ଯେଉଁ ମଣିଷ ଦିବାରାତ୍ର ଧର୍ମ ଆଉ ପୋଥିପତ୍ର ନେଇ ବ୍ୟସ୍ତ, ସେ କେମିତି ରାଜ୍ୟ ଶାସନ କରିବ ? ସମ୍ରାଟ ମଧ ଏ ବିଷୟରେ ବିବ୍ରତ ବୋଲି ଶୁଣାଯାଏ।

ତିଷ୍ୟା ଏ ସମସ୍ତ କଥା ମନୋଯୋଗ ସହକାରେ ଶୁଣିଲେ। ତା'ପରେ ମନକୁ ମନ କହିଲେ, ''ସେ ଆଜି ଏଠି ଅଭିନୟ କରିବେ ?''

''ହଁ ମହାରାଣୀ, କେବଳ ସେ ଏକାକୀ ନୁହଁନ୍ତି। କାଞ୍ଚନମାଳା ମଧ୍ୟ ଅଭିନୟରେ ଅଂଶଗ୍ରହଣ କରିବେ।'' ସୁପ୍ପବାସା ଜଣେଇଲା।

''କାଞ୍ଚନମାଳା ? ସେ ପୁଣି କିଏ ?'' ମୁହଁ ଗମ୍ଭୀର ହୋଇ ଉଠିଲା ତିଷ୍ୟାଙ୍କର।

''ଆପଣ ଜାଣି ନାହାଁନ୍ତି,'' ବିସ୍ମିତ କଣ୍ଠ ସୁପ୍ପବାସାର, ''ରାଜକୁମାରଙ୍କ ପତ୍ନୀ ସେ। ବର୍ତ୍ତମାନ ସୁଦ୍ଧା ବୟସରେ କିଶୋରୀ। କିନ୍ତୁ ନୃତ୍ୟଗୀତାଦିରେ ନିପୁଣା।''

ତିଷ୍ୟା ଓଷ୍ଠ ଦଂଶନ କଲେ। ତା'ହେଲେ ରାଜକୁମାର ବିବାହିତ ? ଶୁଣିବା ମାତ୍ରେ ତାଙ୍କ ସର୍ବାଙ୍ଗରେ ଯେମିତି ନିଆଁ ଜଳି ଉଠିଲା। କପାଳରେ ତୀବ୍ର ଯନ୍ତ୍ରଣା। ରାଜକୁମାର ବିବାହିତ ! ସେ କଣ କରିପାରନ୍ତି ? କଣ କରାଯାଇପାରେ ? ରାଜକୁମାରଙ୍କ ପତ୍ନୀ କଣ ସୁନ୍ଦରୀ ? ତାଙ୍କଠାରୁ ବି ବଳି ସୁନ୍ଦରୀ ?

ତିଷ୍ୟାଙ୍କ ଛାତିରେ ତୀବ୍ର ଜ୍ୱାଳା....ଏବଂ ଏ ଜ୍ୱାଳାରୁ କେମିତି ମୁକ୍ତି ମିଳିବ, ଏ କଥା ସେ ନିଜେ ମଧ ଜାଣି ନାହାଁନ୍ତି।

ଏଇ ସମୟରେ ଦେଖାଗଲା, ଜଣେ ରାଜକର୍ମଚାରୀ ପ୍ରହରୀମାନଙ୍କ ସହିତ ଉଦ୍ୟାନରେ ଆସି ପହଞ୍ଚିଲେ। ଭାବଭଙ୍ଗୀରେ ଔଦ୍ଧତ୍ୟ ସ୍ପଷ୍ଟ। ଚେହେରାରୁ ବୁଝାଯାଏ ଲୋକଟି ସରଳ ନୁହେଁ। ଉପସ୍ଥିତ ଶ୍ରମିକମାନେ ତାଙ୍କୁ ଦେଖିବାମାତ୍ରେ ତଟସ୍ଥ ହୋଇ ସେମାନଙ୍କ କାର୍ଯ୍ୟ କରିବାକୁ ଲାଗିଲେ। ତିଷ୍ୟାଙ୍କର ମନେ ହେଲା, ଏଇ ନଗରୀରେ ଆସିବା ପରଠୁଁ ସେ ଏଇ ପ୍ରଥମ ଥର କାହାକୁ ଦେଖିଲେ, ଯିଏ ବ୍ୟତିକ୍ରମ। ଲୋକଟି ହୁକୁମ ଦେଉଥିଲା ଏବଂ ମଝିରେ ମଝିରେ ଏଇ ପ୍ରାସାଦ ଆଡ଼କୁ ଦୃଷ୍ଟି ପହଁରେଇ ନେଉଥିଲା। ତିଷ୍ୟା ଯେହେତୁ ନାରୀ, ସେହେତୁ ସେ ଦୃଷ୍ଟିରେ ଲୋଭର ଛାୟା ଦେଖିପାରିଲେ। ସେ ସୁପ୍ରବାସାକୁ ଜିଜ୍ଞାସା କଲେ, ''ଲୋକଟି କିଏ ?''

''ମହାମାନ୍ୟ ଖଲ୍ଲାତକ। ସମ୍ରାଟଙ୍କ ମନ୍ତ୍ରୀ।''

''ଲୋକଟି କେମିତି ?''

ସୁପ୍ରବାସା ମହାରାଣୀଙ୍କ ଆଡ଼କୁ ଚାହିଁଲା। ଖଲ୍ଲାତକଙ୍କ ସମ୍ପର୍କରେ ସେ ଯାହା ଜାଣିଛି, ତା' କହିବା ଉଚିତ ହେବ କି ? ବିଶେଷତଃ ଖଲ୍ଲାତକ ଇତିମଧ୍ୟରେ ଦୁଇଥର ଲୋକ ପଠେଇ ଖବର ନେଇଛନ୍ତି ମହାରାଣୀଙ୍କର କୌଣସି ପ୍ରକାର ଅସୁବିଧା ହେଉଛି କି ନାହିଁ! କିନ୍ତୁ ଖଲ୍ଲାତକ ନିତାନ୍ତ ନିଷ୍ଠୁର ପ୍ରକୃତିର ଲୋକ। ସମ୍ରାଟଙ୍କ ସହିତ ତାଙ୍କର ଯେ ମାନସିକ ବିରୋଧ ରହିଛି, ଏକଥା ସମସ୍ତେ ଜାଣନ୍ତି। କିନ୍ତୁ ଯେହେତୁ ଲୋକଟି ଅତ୍ୟନ୍ତ କର୍ମଠ ଏବଂ କୁଶଳୀ ରାଜନୀତିଜ୍ଞ, ସେଇଥିପାଇଁ ସମ୍ରାଟ ତାଙ୍କୁ ପଦଚ୍ୟୁତ କରିନାହାଁନ୍ତି। ବୌଦ୍ଧଧର୍ମର ସବୁ ଅନୁଶାସନ ମାନିବାକୁ ରାଜି ନୁହଁନ୍ତି ଖଲ୍ଲାତକ। ସେ ମନେ କରନ୍ତି, ରାଜାର ଧର୍ମ ସନ୍ନ୍ୟାସୀର ନୁହେଁ। ରାଜା ରାଜ୍ୟ ଶାସନ କରିବେ ରାଜନୈତିକ ନେତାର ଆଖିରେ, ଆମରଣ ବିସ୍ତାର କରିଚାଲିବେ ରାଜ୍ୟର ସୀମା। ଖଲ୍ଲାତକ ବୌଦ୍ଧଧର୍ମରେ ଯେତେଟା ଅନୁରକ୍ତ ନୁହଁନ୍ତି, ତା'ଠୁଁ ଢେର ବେଶୀ ବ୍ରାହ୍ମଣ୍ୟ ଧର୍ମରେ ଆସକ୍ତ। ସଂକ୍ଷେପରେ ସୁପ୍ରବାସା ଏସବୁ ତଥ୍ୟ, ତିଷ୍ୟାଙ୍କୁ ଜଣାଇବା ପରେ ତାଙ୍କ ଅଧରରେ ହସ ଫୁଟିଲା। ଚମତ୍କାର! ସମ୍ରାଟ ତାଙ୍କରି ଘରେ ଇ ସାପ ପୋଷିଛନ୍ତି! ସେ ଦୃଢ଼କଣ୍ଠରେ ଆଦେଶ ଦେଲେ, ''ଲୋକଟାକୁ ଡାକ। ମୁଁ କଥା ହେବି।''

ତିଷ୍ୟାଙ୍କ ଆଦେଶ ପାଳିତ ହେଲା। ଖଲ୍ଲାତକ ଆସିଛନ୍ତି ଜାଣି ତିଷ୍ୟା ଓହ୍ଲେଇ ଆସିଲେ ତଳ ମହଲାକୁ। ବୈଠକଖାନା ଘରେ ଖଲ୍ଲାତକ ଛିଡ଼ା ହୋଇଥିଲେ। ମୁହଁରେ କିଛିଟା ଅଧୈର୍ଯ୍ୟ ଭାବ। ମହାରାଣୀଙ୍କୁ ଦେଖିବା ମାତ୍ରେ ସେ ଅବନତ ହୋଇ ଅଭିବାଦନ କଲେ, ''ମହାରାଣୀଙ୍କ ଜୟ ହେଉ। ମହାରାଣୀ ଆଦେଶ କରନ୍ତୁ।''

''ଆପଣ ଖଲ୍ଲାତକ ?'' ତିଷ୍ୟା ଲୋକଟିକୁ ଲକ୍ଷ୍ୟ କରୁଥିଲେ। ଆଜି ପ୍ରଭାତରେ ଏ ନିଶ୍ଚୟ ରାଜସଭାରେ ଉପସ୍ଥିତ ଥିଲା, କିନ୍ତୁ ସେତେବେଳେ କାହାକୁ ଲକ୍ଷ୍ୟ କଲାଭଳି ମାନସିକ ଅବସ୍ଥା ତାଙ୍କର ନ ଥିଲା। ସୁପ୍ରବାସା ଠିକ୍ କହିଛି। ଯା' ମୁହଁର ପ୍ରତିଟି ରେଖା କହିଦିଏ, ଲୋଭର ଚେହେରା କେମିତି ହୋଇପାରେ।

ତିଷ୍ୟା ପରିଚୟ ପଚାରିଲେ। କିନ୍ତୁ ଲୋକଟି ସମୟ ନେଲା ଉତ୍ତର ଦେବାପାଇଁ। ତା'ପରେ ଯେମିତି ଅତିରିକ୍ତ ବିନୟ ସହକାରେ କହିଲା, ''ହଁ ମହାରାଣୀ। ସମ୍ରାଟଙ୍କ ମନ୍ତ୍ରୀ, ଆପଣଙ୍କ ଦାସାନୁଦାସ।''କଥା କହିବାବେଳେ କଣ ଟୁକୁରାଏ ଚଟୁଳ ହସ ମୁହୂର୍ତ୍ତକ ପାଇଁ ଫୁଟି ମିଳେଇ ଗଲା ?

''ମୁଁ ଜାଣିବାକୁ ଚାହେଁ, ମୋ ପିତୃଦେବଙ୍କୁ ସମସ୍ତ ସମ୍ବାଦ ଜଣା ହୋଇଛି 'କି ନାହିଁ? ଆଜି ରାଜସଭାର ଘଟଣା ସେ ଜାଣି ପାରିଛନ୍ତି କି ନାହିଁ?'' ତିଷ୍ୟାଙ୍କ କଣ୍ଠରେ କର୍ତ୍ତୃତ୍ୱ।

ଖଲ୍ଲାଟକ କିଛିଟା ବିସ୍ମିତ ଆଖିରେ ତାଙ୍କ ଆଡ଼କୁ ଚାହିଁ ତତ୍‌କ୍ଷଣାତ୍ ନିମ୍ନମୁଖୀ ହେଲେ। ''ସବୁ ଜଣା ହୋଇଛି ତାଙ୍କୁ। ଆଜି ହିଁ ମୁଁ ଏକ ବିଶେଷ ଦୂତ ମାର୍ଫତ ତାଙ୍କୁ ସବିଶେଷ ବୃତ୍ତାନ୍ତ ଜଣେଇଛି।''

''ଆପଣ ଏଥର ଯାଇ ପାରନ୍ତି।''

ଖଲ୍ଲାଟକ ପୁଣି ଅଭିବାଦନ ଜଣେଇ ଯେତେବେଳେ ଚାଲି ଯାଉଛନ୍ତି ସେତେବେଳେ ତିଷ୍ୟା ପୁଣିଥରେ ଡାକିଲେ ତାଙ୍କୁ, ''ଶୁଣନ୍ତୁ।''

''ଆଦେଶ କରନ୍ତୁ ମହାରାଣୀ!'' ସଙ୍ଗେ ସଙ୍ଗେ ବୁଲି ପଡ଼ିଲେ ଖଲ୍ଲାଟକ।

''ପାଖ ଉଦ୍ୟାନରେ ଅଭିନୟର ଆୟୋଜନ କରିବା ପୂର୍ବରୁ ମୋ' ନିକଟରୁ ଅନୁମତି ପ୍ରାର୍ଥନା କରିନାହାଁନ୍ତି କାହିଁକି? ଏଥିରେ ମୋର କୌଣସି ସୁବିଧା ଅସୁବିଧା ହେବ କି ନାହିଁ, ତା' ଜାଣିବାର ପ୍ରୟୋଜନ ଆପଣମାନଙ୍କର ନାହିଁ?'' ତିଷ୍ୟା କଠୋର ମୁଖରେ ଜାଣିବାକୁ ଚାହିଁଲେ। ତାଙ୍କର ମନେ ହେଉଥିଲା କୌଣସିମତେ ଯଦି ଆଜିର ଅଭିନୟ ସେ ବନ୍ଦ କରିଦେଇପାରନ୍ତି, ତେବେ ରାଜକୁମାର ତାଙ୍କର ନୃତ୍ୟଗୀତନିପୁଣା ପତ୍ନୀଙ୍କ ସହ ଆମୋଦ କରିବାରୁ ବଞ୍ଚିତ ହେବେ; ଅନ୍ତତଃ ଗୋଟିଏ ରାତି ପାଇଁ।

ଖଲ୍ଲାଟକଙ୍କ ଉତ୍ତର ପ୍ରସ୍ତୁତ ଥିଲା। କିନ୍ତୁ ସେ ଉତ୍ତର ଦେଲାବେଳେ ସୂକ୍ଷ୍ମ ହସଟିଏ ଦେଖି ପାରିଲେ ବୋଲି ମନେହେଲା ତିଷ୍ୟାଙ୍କର। ଖଲ୍ଲାଟକ କହିଲେ, ''ମାର୍ଜନା କରନ୍ତୁ ମହାରାଣୀ। ଏ'ଟା ଏଇ ଅଧମର ଅପରାଧ। ଅବଶ୍ୟ ଇ ଉଚିତ ଥିଲା ଆପଣଙ୍କ ଅନୁମତି ଭିକ୍ଷା କରିବା। ତେବେ କିଛି କିଛି କାର୍ଯ୍ୟ ମଣିଷ ଅଭ୍ୟାସବଶତଃ କରିଥାଏ। ଏଇ ଉଦ୍ୟାନରେ ରାଜକୁମାର ଦୀର୍ଘକାଳ ଧରି ଅଭିନୟ କରିଆସୁଛନ୍ତି। ମୁଁ ମଧ୍ୟ ଅଭ୍ୟସ୍ତ ହୋଇପଡ଼ିଛି ଆୟୋଜନ କରିବାରେ। ଦ୍ୱିତୀୟଥର ଏ ଭୁଲ ହେବନାହିଁ। ମୁଁ ସମ୍ରାଟଙ୍କୁ ଏ ସମ୍ବାଦ ନିବେଦନ କରିବି।''

''ନା, ତାର ପ୍ରୟୋଜନ ନାହିଁ। ବୁଦ୍ଧଙ୍କ ଜୀବନ ଆମ ସମସ୍ତଙ୍କର ଶ୍ରଦ୍ଧାର ବିଷୟ। କିନ୍ତୁ ମୋତେ ନିମନ୍ତ୍ରଣ ଜଣାଇବା ସମ୍ରାଟଙ୍କ କର୍ତ୍ତବ୍ୟ ଥିଲା।'' ତିଷ୍ୟା ବୁଝିପାରୁ ନ ଥିଲେ, କେମିତି ଅଭିନୟ ବନ୍ଦ କରାଯାଇପାରେ।

ଖଲ୍ଲାତକ କହିଲେ, ''ଆପଣ ଯଦି ଆଦେଶ ଦିଅନ୍ତି ତେବେ ମୁଁ ଅଭିନୟ ପାଇଁ ଅନ୍ୟ ଉଦ୍ୟାନ ନିର୍ବାଚନ କରିପାରେ। ସାମାନ୍ୟ ଅସୁବିଧା ହେବ ନିଶ୍ଚୟ; କିନ୍ତୁ ତା' ମହାରାଣୀଙ୍କ ବିରକ୍ତି ଉତ୍ପାଦନଠୁଁ ଅଧିକ ନୁହେଁ।''

ଅର୍ଥାତ୍ ଅଭିନୟ ବନ୍ଦ କରି ହେବ ନାହିଁ। ତିଷ୍ୟା ତତ୍‌କ୍ଷଣାତ୍ ଚିନ୍ତା କରିନେଲେ। ଯଦି ବନ୍ଦ କରା ନ ଯାଏ, ତେବେ ସେ କାହିଁକି ବଞ୍ଚିତ ହେବେ ସୁଦର୍ଶନ ରାଜକୁମାରଙ୍କ ଦର୍ଶନରୁ ? ତା'ଛଡ଼ା ଏଇ ସୁଯୋଗରେ ସେଇ ନୃତ୍ୟଗୀତ ପଟ୍ଟିୟସୀଙ୍କୁ ମଧ୍ୟ ଦେଖିହେବ। କିଏ ଅଧିକ ସୁନ୍ଦରୀ, ତା' ମଧ୍ୟ ତଉଲି ନେଇହେବ। ତିଷ୍ୟା କହିଲେ, ''ନା, ଆପଣଙ୍କୁ ଶେଷ ମୁହୂର୍ତ୍ତରେ କୌଣସି ପରିବର୍ତ୍ତନ କରିବାକୁ ପଡ଼ିବ ନାହିଁ। ଆପଣ କ'ଣ ଅଭିନୟ ସମୟରେ ଉପସ୍ଥିତ ରହିବେ ?''

''ନା ମହାରାଣୀ ! ମୋର ତା'ଠାରୁ ଆଉରି ଅନେକ ଜରୁରୀ କାର୍ଯ୍ୟ ଅଛି। ସମ୍ରାଟ ତାଙ୍କର ଧର୍ମମହାମାତ୍ୟମାନଙ୍କ ଉପରେ ନିର୍ଭର କରି ରହିପାରନ୍ତି, କିନ୍ତୁ ମୁଁ ଜାଣେ ରାଜ୍ୟ ଶାସନ ପାଇଁ ସଜାଗ ଚକ୍ଷୁ ଆବଶ୍ୟକ।''

''କିନ୍ତୁ ମୁଁ ଉପସ୍ଥିତ ରହିପାରେ ଇଚ୍ଛା ହେଲେ। ଆପଣ ମୋ ପ୍ରାସାଦରୁ ଉଦ୍ୟାନକୁ ଯିବା ପାଇଁ ଗୋଟିଏ ଦ୍ୱାର ନିର୍ମାଣ କରି ଦିଅନ୍ତୁ। ମୁଁ ଆତ୍ମପ୍ରକାଶ କରିବାକୁ ଚାହେଁ ନାହିଁ।'' ଉଦାସ କଣ୍ଠରେ ଜଣେଇଲେ ତିଷ୍ୟା।

ନତମସ୍ତକରେ ଆଦେଶ ଗ୍ରହଣ କଲେ ଖଲ୍ଲାତକ, ''ମଣିଷ ତ ଦୂରର କଥା, କୀଟପତଙ୍ଗ ମଧ୍ୟ ଜାଣିପାରିବେ ନାହିଁ ମହାରାଣୀ, ମୁଁ ସଙ୍ଗେ ସଙ୍ଗେ ବ୍ୟବସ୍ଥା କରୁଛି।''

ଖଲ୍ଲାତକଙ୍କ ଓଠରେ କ'ଣ ହସ ଫୁଟି ଉଠିଲା ? ତିଷ୍ୟା ବୁଝିପାରିଲେ ନାହିଁ, ସେ ଅନ୍ୟାୟ କରୁଛନ୍ତି କି ନା ! ଲୋକଟିକୁ ଆଦୌ ଭଲ ଲାଗିଲା ନାହିଁ। ତଥାପି କାହିଁକି ଦୁର୍ମତି ହେଲା ତାକୁ ଇ ଆଦେଶ ଜଣାଇବାକୁ ! ଆଦେଶ, ନା ଅନୁରୋଧ ଭଳି ଶୁଣାଗଲା ! ସମ୍ରାଟ ଯଦି ଜାଣି ପାରନ୍ତି ତେବେ ହୁଏତ ସାମାନ୍ୟ ଆଶ୍ଚର୍ଯ୍ୟ ହେବେ। କିନ୍ତୁ ଲୋକଟିକୁ ଶେଷ ଆଦେଶ କରିବାଟା ଭୁଲ ହେଲା।

ସ୍ନାନାନ୍ତେ ସୁପ୍ପବାସା ସାହାଯ୍ୟରେ ବେଶ ପରିବର୍ତ୍ତନ କରି ଆଭୂଷଣ ବିଭୂଷଣ ପରିଧାନ କରିବାକୁ ଲାଗିଲେ ତିଷ୍ୟା। ସୁପ୍ପବାସା ସାହଚର୍ଯ୍ୟ ପାଇ କିଞ୍ଚିତ ସାହସୀ ହୋଇଛି। କଥା କହିବା ଲୋକ ନ ମିଳିଲେ ଅନେକ ଇ ପ୍ରଶ୍ରୟ ପାଆନ୍ତି। ତିଷ୍ୟା ମଧ୍ୟ ତାକୁ ପ୍ରଶ୍ରୟ ଦେଉଥିଲେ।

ସୁପ୍ପବାସା କହିଲା, ''ମହାରାଣୀ ସତରେ ସୁନ୍ଦରୀ।''

ତିଷ୍ୟା ତିର୍ଯ୍ୟକ୍ ଦୃଷ୍ଟିରେ ଚାହିଁଲେ, ତା'ପରେ ନିଃଶ୍ୱାସ ଛାଡ଼ି କହିଲେ, ''କଣ ଆଉ ହେବ, ବୟସ ତ ଢେର୍ ହେଲା।''

ସୁପ୍ପବାସା ପ୍ରତିବାଦ କଲା, ''ମୋଟେ ନୁହେଁ। ଆପଣଙ୍କୁ ଯେ ବୟସ୍କା କହିବ, ତା' ଆଖିରେ ପରଳ ପଡ଼ିଲାଣି।''

ତିଷ୍ୟା ଖୁସି ହେଲେ। ଯେମିତି ଜଣା ତଥ୍ୟଟାକୁ ଆଉଥରେ ଯତେଇ କରି ଦେଇ ସ୍ୱସ୍ତି ପାଇଲେ। ତା'ପରେ ଅଳସ ଭଙ୍ଗୀରେ ପଚାରିଲେ: ''ଆଚ୍ଛା, ସେ ଖଲ୍ଲାତକ ଲୋକଟା କେମିତି ?''

ସୁପ୍ପବାସା ଅଳ୍ପ ଇତସ୍ତତଃ ହୋଇ କହିଲା, ''ମହାରାଣୀ ଯଦି ଅଭୟ ଦିଅନ୍ତି, ତେବେ କହିପାରେ। ଛୋଟ ମୁହଁରେ ବଡ଼ କଥା ସାଜିବ କି ନାହିଁ ଜାଣିନି।''

''କହୁନୁ ! ମୁଁ ତ ଏମାନଙ୍କ ଭିତରୁ କାହାକୁ ଚିହ୍ନିନି।''

''ଖଲ୍ଲାତକ ଅତ୍ୟନ୍ତ ବୁଦ୍ଧିମାନ ମନ୍ତ୍ରୀ। ସମ୍ରାଟ ବୌଦ୍ଧ ହେବା ପରଠୁଁ ଯୁଦ୍ଧଜୟ ବା ଅନ୍ୟରାଜ୍ୟ ଆକ୍ରମଣରୁ ବିରତ ହୋଇଛନ୍ତି। କିନ୍ତୁ ଶୁଣାଯାଏ, ଏଥିରେ ଖଲ୍ଲାତକ ଖୁସି ନୁହଁନ୍ତି। ଗୋଦାବରୀ ସେପଟରେ ସାମ୍ରାଜ୍ୟ ବିସ୍ତାର କରିବା ତାଙ୍କ ଇଚ୍ଛା। ସମ୍ରାଟଙ୍କ ଆପତ୍ତି ଫଳରେ ସେଟା ସମ୍ଭବ ହେଉନାହିଁ। ତେବେ ସମ୍ରାଟଙ୍କ ଭାଇ ବୀତଶୋକଙ୍କ ସହିତ ଖଲ୍ଲାତକଙ୍କ ଭାରି ଭଲ ସମ୍ପର୍କ ରହିଛି।''

''ବୀତଶୋକଙ୍କୁ ଆଜି ମୁଁ ରାଜସଭାରେ ଦେଖିଛି କି ?'' ପ୍ରଶ୍ନ କଲେ ତିଷ୍ୟା।

''ନା, ସେ ବାରାଣସୀ ଯାଇଥିଲେ ଜରୁରୀ କାର୍ଯ୍ୟରେ। ହୁଏତ ଆଜି ଫେରି ଆସିବେ।'' ସୁପ୍ପବାସା ହସିଲା। ତାପରେ ଦଣ୍ଡେ ଚୁପ୍ ରହି ପୁଣି କହିବାକୁ ଲାଗିଲା, ''ଅନେକ ଅନୁମାନ କରନ୍ତି ବୀତଶୋକ ପରବର୍ତ୍ତୀ ସମ୍ରାଟ ହୋଇପାରନ୍ତି। ଜ୍ୟେଷ୍ଠ ରାଜକୁମାର ବୁଦ୍ଧଙ୍କ ପାଦରେ ନିଜକୁ ନିବେଦନ କରିଛନ୍ତି। ଏଇ ରାଜକୁମାର ତ ପୋଥି ଆଉ ଧର୍ମ ଛଡ଼ା କିଛି ଜାଣନ୍ତି ନାହିଁ। ସାମ୍ରାଜ୍ୟ ଶାସନ କରିବାର ଦକ୍ଷତା ଏମାନଙ୍କର କାହାରି ନାହିଁ। ସମ୍ରାଟଙ୍କ ହୃଦୟ ପରିବର୍ତ୍ତନ ପରେ ବୀତଶୋକ ତେଣୁ ଆଶାର ଆଲୋକ ଦେଖୁଛନ୍ତି।''

''ସତରେ ! ବୀତଶୋକଙ୍କ ବୟସ କେତେ କହିଲୁ ?''

''ସ୍ୱାସ୍ଥ୍ୟବାନ ପୁରୁଷ ମଣିଷର ବାଳ ନ ପାଚିଲେ ବୟସ ଅନ୍ଦାଜ କରିବା କଷ୍ଟ। ତେବେ ସମ୍ରାଟଙ୍କ ସହିତ ତାଙ୍କ ଚେହେରାର ବିସ୍ତର ପ୍ରଭେଦ।''

''ଖଲ୍ଲାତକଙ୍କ ସହ ବୀତଶୋକଙ୍କର ଭଲ ସମ୍ପର୍କ ରହିଛି ବୋଲି କହୁଥିଲୁ। କେମିତି ସମ୍ପର୍କ ? ଖୁବ୍ ସଖ୍ୟ ?''

''ଖୁ-ଉ-ବ୍।''

ତିଷ୍ୟା ଆଉ ଅଧିକ କିଛି ପଚାରିଲେ ନାହିଁ। ହସି ପଚାରିଲେ, ''ତୁ ଏତେ କଥା ଜାଣିଲୁ କେମିତି ?''

ସୁପ୍ପବାସା ହସିଲା। କିନ୍ତୁ କୌଣସି ଉତ୍ତର ଦେଲା ନାହିଁ। ତା' ଦୃଷ୍ଟି କେବଳ ମହାରାଣୀଙ୍କ ମୁହଁ ଉପରେ ସ୍ଥିର ହେଉଥିଲା। ସେ କୌଣସି ପ୍ରକାରେ ଏଇ ରମଣୀଙ୍କୁ ବୁଝି ପାରୁନାହିଁ। ଦୀର୍ଘଦିନର ଅଭିଜ୍ଞତା ତାକୁ କିନ୍ତୁ କହୁଛି, ମହାରାଣୀ ସରଳ ଭାବରେ ଚିନ୍ତା କରୁନାହାଁନ୍ତି। କିନ୍ତୁ ଚିନ୍ତାଟା ଯେ କ'ଣ — ତା' ଆଦୌ ଜଣା

ପଡ଼ୁନାହିଁ। ସେ ନିଜକୁ କହିଲା, ଧୈର୍ଯ୍ୟ ଧର। ଏଇ ପ୍ରାସାଦରେ ବାସ କରି କିଛି କରିବାକୁ ଗଲେ ମହାରାଣୀଙ୍କୁ ତାର ସାହାଯ୍ୟର ପ୍ରୟୋଜନ ହେବ।

ଆଜି ସନ୍ଧ୍ୟାରେ ଉଦ୍ୟାନରେ ବିଶିଷ୍ଟ ଅତିଥି ଏବଂ ରାଜପୁରୁଷଗଣ ଉପସ୍ଥିତ। ଅଭିନୟ ପାଇଁ ବିଶେଷ ମଞ୍ଚ ନୁହେଁ, ସ୍ୱାଭାବିକ ପ୍ରକୃତିକୁ ହିଁ ବ୍ୟବହାର କରାହେଉଛି। ତିଷ୍ୟାଙ୍କ ପ୍ରାସାଦ ଆଡ଼େ କୌଣସି ଦର୍ଶକ ନାହାଁନ୍ତି। ସମସ୍ତେ ବସିଛନ୍ତି ବିପରୀତ ଦିଗରେ। ସେଠାରେ ସନ୍ନ୍ୟାସୀ ଉପଗୁପ୍ତ ଅଛନ୍ତି। ସମ୍ରାଟଙ୍କ ଆସନ ମଧ ସେଇଠି। ଉଦ୍ୟାନରେ ବିଶେଷ ଆଲୋକର ବ୍ୟବସ୍ଥା କରାହୋଇଛି। ଫଳରେ ମଝିରେ ମଝିରେ ଛାଇଆଲୁଅ ଏକ ଅଳସମାୟା ସୃଷ୍ଟି କରୁଛି।

ଅଭିନୟ ଆରମ୍ଭ ହେଲାଣି ବେଶ୍ କିଛି ସମୟ ପୂର୍ବରୁ। ସୋନାଲୀ ଗ୍ରାମର ଏକ ଧନୀକନ୍ୟାର ଦୁଇଟି ବାସନା ଥିଲା। ଧନୀ ଗୃହରେ ତାର ବିବାହ ହେବ ଏବଂ ସେ ପୁତ୍ର ସନ୍ତାନ ଲାଭ କରିବ। ଏଇ ବାସନା ଦୁଇଟି ପୂରଣ ହେଲେ ସେ ବୃକ୍ଷଦେବତାଙ୍କୁ ବିଶେଷ ଭାବରେ ପୂଜା କରିବ। ଠିକ୍ ସମୟରେ ତା'ର ଏଇ ଦୁଇଟି ବାସନା ପୂର୍ଣ୍ଣ ହେବାରୁ ସେ ତା' ଦାସୀକୁ ପଠେଇଲା ବଣ ଭିତରେ ଗୋଟିଏ ବୟସ୍କ ଗଛ ନିର୍ବାଚନ କରି ତା' ସାମ୍ନାରେ ଭୂମି ପରିଷ୍କାର କରିବାକୁ।

ବୋଧିଜ୍ଞାନ ଲାଭ ପାଇଁ ଗୌତମ ଯେତେବେଳେ ଛଅ ବର୍ଷ କୃଚ୍ଛ୍ର ସାଧନା କରି ବୁଝିଲେ ଯେ ସେ ପଥ ତାଙ୍କ ସମ୍ବୋଧିଲାଭର ଅନୁକୂଳ ନୁହେଁ, ସେତେବେଳେ ସେ ପୁଣି ପୂର୍ବାବସ୍ଥାକୁ ଫେରି ଆସିବାକୁ ଚାହିଁଲେ। ତାଙ୍କର ଏ ମାନସିକ ପରିବର୍ତ୍ତନ ଦେଖି ପଞ୍ଚବର୍ଗୀୟ ସନ୍ନ୍ୟାସୀମାନେ ସଙ୍ଗ ତ୍ୟାଗ କଲେ। ଅନାହାରରେ କୃଷ୍ଣବର୍ଣ୍ଣ କଙ୍କାଳସାର ଗୌତମ କ୍ଳାନ୍ତ ହୋଇ ନିରଞ୍ଜନା ନଦୀ କୂଳେ ସୁନ୍ଦର ବନଭୂମି ଦେଖି ସେଠାରେ ହିଁ ବିଶ୍ରାମ ନେବେ ବୋଲି ସ୍ଥିର କଲେ।

ଦାସୀ ବନମଧ୍ୟକୁ ପ୍ରବେଶ କରି ଗୌତମଙ୍କୁ ଦେଖି ମୁଗ୍ଧ ହେଲା। ଭାବିଲା, ସ୍ୱୟଂ ଦେବତା ତାକୁ ଦର୍ଶନ ଦେଇଛନ୍ତି। ଉତ୍ତେଜିତା ହୋଇ ସେ ଫେରିଗଲା ଧନୀଗୃହକୁ। ସବୁକଥା ଜଣେଇ ସେ ଉତ୍ସାହିତ କଲା ଧନୀକନ୍ୟାକୁ। ତା' କଥାରେ

ବିଶ୍ୱାସ କରି ପରମାନ୍ନ ପ୍ରସ୍ତୁତ କରି ଧନୀକନ୍ୟା ଗୌତମଙ୍କୁ ଦେବତା ଭାବି ନିବେଦନ କଲା। ଗୌତମ ଅଣଚାଶ ଗ୍ରାସରେ ସେ ଅନ୍ନ ଶେଷ କରି ଆଶୀର୍ବାଦ କଲେ ପରିତୃପ୍ତ ହୃଦୟରେ। ତା'ପରେ ଏଇ ପ୍ରତିଜ୍ଞା ନେଇ ଧ୍ୟାନସ୍ଥ ହେଲେ, ''ଏଠି ମୋର ଶରୀର ଜୀର୍ଣ୍ଣ ହେଉ। ମୋ ମାଂସ, ଅସ୍ଥି ବା ତ୍ୱକ୍ ଲୁପ୍ତ ହେଉ। କିନ୍ତୁ ବୁଦ୍ଧତ୍ୱ ଲାଭ ନ କରି ମୁଁ ଏ ସ୍ଥାନ ତ୍ୟାଗ୍ କରିବି ନାହିଁ।''

ଧନୀକନ୍ୟାର ସତକୁ ସତ ଈଶ୍ୱର ଦର୍ଶନ ହେଲା। ସେ ଜୀବଜନ୍ତୁ ଆକ୍ରମଣରୁ ଗୌତମଙ୍କ ଶରୀର ରକ୍ଷା କରିବା ପାଇଁ ନିଜକୁ ନିୟୋଜିତ କଲା।



ରାଜକୁମାର ଗୌତମ-ଚରିତ୍ରରେ ସୁନ୍ଦର ଅଭିନୟ କରୁଛନ୍ତି। ଉପସ୍ଥିତ ଦର୍ଶକଗଣ ଆପ୍ଲୁତ। ସ୍ୱୟଂ ଉପଗୁପ୍ତଙ୍କ ଆଖିରେ ଲୁହ! ଏଇ ଧର୍ମପ୍ରାଣ ତରୁଣ ମଧ୍ୟରେ ଏମିତି ଏକ ଜ୍ୟୋତି ବିରାଜୁଛି, ଯା' ସାଧାରଣତଃ ଦେଖାଯାଏନା। ଯଦିଓ ତରୁଣ ସଂସାରୀ, କିନ୍ତୁ ମନେହୁଏ, ଏ ସଂସାରୀ ହେବାପାଇଁ ଜନ୍ମଗ୍ରହଣ କରିନାହାଁନ୍ତି। ସାଧାରଣ ମଣିଷ ପକ୍ଷରେ ଗୌତମଙ୍କୁ ଏଭଳିଭାବେ ପରିସ୍ଫୁଟ କରିବା ଅସମ୍ଭବ। ତାଙ୍କ ଚେତନାରେ ଗୌତମଙ୍କ ବୋଧିଲାଭ ପୂର୍ବରୁ ଯେଉଁ ରୂପ ଥିଲା, ତାକୁ ଇ ଯେମିତି ଚାକ୍ଷୁସ କରୁଛନ୍ତି ସେ! କେହି କେହି ପ୍ରଥମେ ଆପତ୍ତି ଜଣେଇଥିଲେ, କୌଣସି ସାଧାରଣ ଅଭିନେତା ପକ୍ଷରେ ଗୌତମଙ୍କୁ ଜୀବନ୍ତ କରିବାର ଚେଷ୍ଟା ଦୁଃସାହସ ଏବଂ ସ୍ପର୍ଦ୍ଧାର ବିଷୟ। କିନ୍ତୁ ତଥାପି ଉପଗୁପ୍ତ ଅନୁମତି ଦେଇଥିଲେ। ବର୍ତ୍ତମାନ ତାଙ୍କର ମନେ ହେଉଥିଲା, ସେ ଭୁଲ କରିନାହାଁନ୍ତି।

ସମ୍ରାଟ ସ୍ତବ୍ଧ; ବାକ୍‌ଶକ୍ତି ଯେମିତି ରହିତ ହୋଇଯାଇଛି ତାଙ୍କର! ସେ ଏମିତି ପୁତ୍ରର ଜନକ, ଏକଥା ଭାବିବାମାତ୍ରେ ରୋମାଞ୍ଚ ଜାତ ହେଉଥିଲା ତାଙ୍କର। ସେ ମୁଗ୍ଧ ହୋଇ ଅଭିନୟ ଦେଖୁଥିଲେ। ଉପସ୍ଥିତ ଦର୍ଶକଗଣ ମୋହିତ, ମଞ୍ଚ ଉପରୁ ମୁହୂର୍ତ୍ତକ ପାଇଁ ହେଲେ ସେମାନେ ଦୃଷ୍ଟି ଅପସାରିତ କରୁ ନ ଥିଲେ, କଥା କହିବାକୁ ଯେମିତି ସମସ୍ତେ ବିସ୍ମୃତ ହୋଇଯାଇଛନ୍ତି!

ଗୌତମ ବୃକ୍ଷତଳେ ଆସୀନ। ଏଇଥର ଧନୀକନ୍ୟା ଆସିବେ ପରମାନ୍ନର ପାତ୍ର ନେଇ। ନିବେଦନ କରିବେ ଗୌତମଙ୍କୁ ସେଇ ଅନ୍ନ। ଅଥଚ କେହିଁ ପ୍ରବେଶ କରୁନାହାଁନ୍ତି। ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହୋଇଯାଉଛି। ବୁଝି ହେଉଛି ଗୌତମ-ରୂପୀ ରାଜକୁମାର କ୍ରମଶଃ ଅସହିଷ୍ଣୁ ହୋଇ ଉଠୁଛନ୍ତି। କିନ୍ତୁ ସେଟା ପ୍ରକାଶ କରୁନାହାଁନ୍ତି।

ଏଇ ସମୟରେ ଧନୀକନ୍ୟାକୁ ଦେଖାଗଲା। କିନ୍ତୁ ତା' ପଦକ୍ଷେପରେ ଆନନ୍ଦ ନାହିଁ। ଦେବଦର୍ଶନର ଅଭିବ୍ୟକ୍ତି ନାହିଁ ମୁହଁରେ। ଯଦିଓ ସେ ସାଜିଛି ପୁଷ୍ପସଜ୍ଜାରେ, ତଥାପି ମନେ ହେଉନି ଏ ସେଇ ବିଶେଷ ଚରିତ୍ର। ମନେ ହେଉଛି, ବ୍ୟକ୍ତି କାଞ୍ଚନମାଳା ଯେମିତି ମଞ୍ଚପ୍ରବେଶ କରିଛି। ଅଥଚ ଏହା ପୂର୍ବରୁ ତା' ଅଭିନୟ କେବେ ଏତେ ପ୍ରାଣହୀନ ବୋଧ ହୋଇ ନାହିଁ। ଗୌତମବେଶୀ ରାଜକୁମାର ତାକୁ ଦେଖିଲେ। କିନ୍ତୁ ସେ ମଧ ଏ ଆକସ୍ମିକ ପରିବର୍ତ୍ତନର କାରଣ ବୁଝିପାରିଲେନି ପ୍ରଥମେ। ଧନୀକନ୍ୟା ଭୂମିରେ ଅବନତ ହେଲା। ତା'ପରେ ପ୍ରିୟବାକ୍ୟ ବ୍ୟବହାର କରି ଯେତେବେଳେ ପାତ୍ରଟି ଗୌତମଙ୍କ ସାମ୍ନାରେ ନିବେଦନ କଲା, ସେତେବେଳେ ରାଜକୁମାର ଦେଖିଲେ, ପାତ୍ରଶୂନ୍ୟ, ସେଥିରେ ପରମାନ୍ନ ନାହିଁ।

ମୁହୂର୍ତ୍ତ ମଧରେ ବିଳମ୍ବରେ ଆଗମନର ଏବଂ ଏଇ ପ୍ରାଣହୀନ ଅଭିବ୍ୟକ୍ତିର କାରଣ ବୁଝିପାରିଲେ .ସେ। ଆଜିର ଅଭିନୟ ପାଇଁ ବିଶେଷ ଯତ୍ନ ସହକାରେ ଯେଉଁ ପରମାନ୍ନ ପ୍ରସ୍ତୁତ କରାହୋଇଥିଲା, ତା'ଗଲା କୁଆଡ଼େ ? କିନ୍ତୁ ସେ ପ୍ରଶ୍ନ କରିବାର ସମୟ ବର୍ତ୍ତମାନ ନୁହେଁ। ଦର୍ଶକମାନେ ଯେଉଁ ଦୂରତ୍ୱରେ ବସିଛନ୍ତି, ସେଥିରେ ସେମାନଙ୍କ ପକ୍ଷରେ ପାତ୍ର ଭିତରେ ଦେଖିବା ସମ୍ଭବ ନୁହେଁ। ଅତଏବ ରାଜକୁମାର ଏ କ୍ଷେତ୍ରରେ ମଧ ଅଭିନୟ କଲେ। ଅଣଚାଶଟି ଶୂନ୍ୟଗ୍ରାସ ତୋଳିଲେ ସେ। କିନ୍ତୁ ତାଙ୍କ ଅଭିନୟ କେହି ଜାଣି ପାରିଲେ ନାହିଁ। ଅଭିନୟ ଶେଷରେ ଦର୍ଶକବୃନ୍ଦ ଏକସଙ୍ଗେ ସାଧୁବାଦ ଦେବାକୁ ଲାଗିଲେ ରାଜକୁମାରଙ୍କୁ। ରାଜକୁମାର ଉପଗୁପ୍ତଙ୍କ ସାମ୍ନାରେ ପ୍ରଣତ ହୋଇ ଆଶୀର୍ବାଦ ପ୍ରାର୍ଥନା କଲେ। ଉପଗୁପ୍ତ କହିଲେ, "ତୁମ ଅନ୍ତର ପବିତ୍ରତମ ହେଉ। ତଥାଗତ ତୁମକୁ ଶକ୍ତି ଦିଅନ୍ତୁ। କାରଣ ତୁମେ ସାଧାରଣ ମଣିଷ ନିକଟରେ ଉଦାହରଣ ହୋଇ ରହିବ।"

ବାତାୟନ ନିକଟରେ ଛିଡ଼ା ହୋଇ ଅଭିନୟ ଦେଖିଲେ ତିଷ୍ୟା। ଅଥବା ଏତେବେଳଯାଏଁ ସେ ଜଣଙ୍କ ବ୍ୟତୀତ ଅନ୍ୟକାହାକୁ ଦେଖୁନଥିଲେ। ସମ୍ରାଟ ଉପଗୁପ୍ତ ଏପରିକି ରାଜକୁମାରଙ୍କୁ ମଧ ନୁହେଁ, ସେ ଦେଖୁଥିଲେ କାଞ୍ଚନମାଳାକୁ। କାଞ୍ଚନମାଳା କିଶୋରୀ, ସେ ସୁନ୍ଦରୀ। କିନ୍ତୁ ତା'ରୂପରେ ଯାଦୁ ନାହିଁ.... ସ୍ନିଗ୍ଧତା ଅଛି, କିନ୍ତୁ ଆକର୍ଷଣ ନାହିଁ। ତଥାପି ସେଇ କିଶୋରୀକୁ ଦେଖି ହୃଦୟାଭ୍ୟନ୍ତର ଦଗ୍ଧ ହେଉଥିଲା ତିଷ୍ୟାଙ୍କର। ଏଇ ନୃତ୍ୟଗୀତକୁଶଳାକୁ ପତ୍ନୀ ଭାବରେ ଗ୍ରହଣ କରି ସୁଖରେ ଅଛନ୍ତି ରାଜକୁମାର।

କିନ୍ତୁ ସେ କଣ କାଞ୍ଚନମାଳାଠୁଁ ଯଥେଷ୍ଟ ସୁନ୍ଦରୀ ନୁହଁନ୍ତି ? ତାଙ୍କ ଦେହ ଏବଂ ମୁଖାବୟବରେ ଯେଉଁ ମୋହିନୀ ମାୟା ଅଛି, ତା' କେଉଁଠୁ ପାଇବ ସେ କିଶୋରୀ ? ବୟସ ? କେବଳ ବୟସରେ ତାଙ୍କୁ ହରେଇ ଦେବ କାଞ୍ଚନମାଳା ? ନା, ତା'ଅସମ୍ଭବ। ସୂର୍ଯ୍ୟର ବୟସ ଚନ୍ଦ୍ରଠୁଁ ଅନେକ ବେଶୀ, କିନ୍ତୁ ଚନ୍ଦ୍ର କଣ କେବେ ସୂର୍ଯ୍ୟକୁ ମ୍ଳାନ କରିପାରେ ? ଦୃଶ୍ୟଟି ସ୍ମରଣ କରି ତିଷ୍ୟାଙ୍କୁ ହସ ଲାଗିଲା। ପରମାନ୍ନଶୂନ୍ୟ ପାତ୍ରଟି

ଧରି ଯେତେବେଳେ କାଞ୍ଚନମାଳା ଉଦ୍ୟାନରେ ପ୍ରବେଶ କଲା, ସେତେବେଳେ କି ଭୀତସନ୍ତ୍ରସ୍ତ ଦେଖାଯାଉଥିଲା ତାକୁ ! ସେଇ ମୁହୂର୍ତ୍ତରେ ତାର ସମସ୍ତ ସ୍ନିଗ୍ଧତା ହଜିଯାଇଥିଲା । ଭୟ ମଣିଷକୁ ଯେ ଏତେ କୁରୂପା କରିଦିଏ, ତା' ତିଷ୍ୟା ଜାଣିନଥିଲେ । ସେ ପୁଣି ହସିଲେ, କାଞ୍ଚନମାଳାର ସୁଖର ଦିନ ଶେଷ, ଆଉ ତାଙ୍କର ପ୍ରାପ୍ତିର ଦିନ ଆରମ୍ଭ ।

ଏଇ ସମୟରେ ପାଖରେ ଆସି ଛିଡ଼ାହେଲା ସୁପ୍ରପବାସା, ''ମହାରାଣୀ, ଆପଣଙ୍କ ଆଦେଶ ପାଳନରେ କୌଣସି ବିଚ୍ୟୁତି ଘଟିନି ।''

ସଚକିତା ହେଲେ ତିଷ୍ୟା । ପଚାରିଲେ: ''ତୋତେ କେହି ଦେଖିନାହାଁନ୍ତି ତ !''

ସୁପ୍ରପବାସା ଏତେବେଳକୁ ତୃପ୍ତ । ସେ ଦିନସାରା ଯା' ଭାବି ଭାବି କୌଣସି କୂଳକିନାରା ପାଉ ନ ଥିଲା, ଏବେ ତା' ନିଜ ଆଖିସାମ୍ନାରେ ଯେମିତି ତା'ସ୍ପଷ୍ଟ ହୋଇଉଠୁଛି । ମହାରାଣୀ ବା ରାଜକୁମାରୀମାନଙ୍କ ଗୋପନ ବ୍ୟାପାରଗୁଡ଼ା ନ ଜାଣିଲେ ସେମାନଙ୍କ ପାଖରେ କାମକରି ଆଉ ଆନନ୍ଦ କାହିଁ ? ଏସବୁ ଜଣା ଥିଲେ ପ୍ରିୟପାତ୍ରୀ ହେଇ ହୁଏ, ନିଜର ଗୁରୁତ୍ୱ ବଢ଼େ । ସେ କହିଲା, ''ନା, କେହି ଟେର୍ ପାଇ ନାହାଁନ୍ତି । କାଞ୍ଚନମାଳା ଯେତେବେଳେ ବେଶ ଘରେ ପରିଧାନ ପରିବର୍ତ୍ତନ କରୁଥିଲେ, ମୁଁ ଚୁପ୍ କରି ଭଣ୍ଡାର ଘରେ ପଶି ପାତ୍ରରୁ ଅନ୍ନ ଢାଳି ଆଣିଛି ।''

''ତୁ ଠିକ୍ କହୁଛୁ, କେହି ଦେଖି ନାହାଁନ୍ତି ?'' ତିଷ୍ୟାଙ୍କ ମନ ତଥାପି ଅସ୍ଥିର ।

ସୁପ୍ରପବାସା ପୁଣିଥରେ ମୁଣ୍ଡ ହଲେଇଲା । କେହି ଦେଖିପକେଇବ— ଏମିତି କାମ ସେ କରିବ କାହିଁକି ? ସେଥିରେ ତାର ଯୋଗ୍ୟତା ପ୍ରମାଣିତ ହେବ ? ଖଲ୍ଲାତକ ଉଦ୍ୟାନକୁ ଯିବାପାଇଁ ଯେଉଁ ଗୋପନ ପଥ ନିର୍ମାଣ କରାଇ ଦେଇଥିଲେ, ସେଇ ପଥରେ ସେ ସ୍ୱଚ୍ଛନ୍ଦରେ ପ୍ରବେଶ କରିଛି । ସେ ଯେତେବେଳେ ଭଣ୍ଡାର ଘର ସାମ୍ନାରେ ଉପସ୍ଥିତ ହେଲା, ସେତେବେଳକୁ ଦ୍ୱାରରକ୍ଷୀ ଅଭିନୟ ଦେଖିବାକୁ ବ୍ୟସ୍ତ । ପୁଣି କେହି ଯେ ସେଠି ଆସି ଏଇ ସାମାନ୍ୟ ଜିନିଷ ନେଇଯିବ, ଏଟା ତା' କଳ୍ପନାକୁ ଛୁଇଁନି । ସୁପ୍ରପବାସା ମଧ୍ୟ ଆଶ୍ଚର୍ଯ୍ୟ ହୋଇଥିଲା । ଏତେ ଜିନିଷ ଥାଉ ଥାଉ ମହାରାଣୀ ତାକୁ ସାମାନ୍ୟ ପରମାନ୍ନ ଅପହରଣ କରିବାକୁ କହିଲେ ? ସେ ଏହା ପୂର୍ବରୁ ଅନେକ ଗୋପନ ଅନ୍ୟାୟ କରିଛି ରାଣୀ ବା ରାଜକୁମାରୀମାନଙ୍କ ପ୍ରିୟପାତ୍ରୀ ହେବା ପାଇଁ । କିନ୍ତୁ ଏହି ପ୍ରଥମଥର ତାକୁ ପରମାନ୍ନ ଅପହରଣ କରି ଆଣିବାକୁ ପଡ଼ିଲା ।

ତିଷ୍ୟା ସୁପ୍ରପବାସା ମୁହଁକୁ ଚାହିଁ ଚାହିଁ ବୁଝିପାରିଲେ ସେ ମିଥ୍ୟା କହୁନାହିଁ । ସେ ଲକ୍ଷ୍ୟ କରିଛନ୍ତି କାଞ୍ଚନମାଳା ଶୂନ୍ୟପାତ୍ର ନେଇ ଉଦ୍ୟାନକୁ ପ୍ରବେଶ କରିଛି ବିଳମ୍ବରେ, ରାଜକୁମାର ଯେ ପାତ୍ରଟି ଦେଖି ବିଭ୍ରାନ୍ତ ହୋଇଛନ୍ତି—ତା' ମଧ୍ୟ ତାଙ୍କ ଆଖିରୁ ଲୁଚି ରହିନି, କିନ୍ତୁ ଉପସ୍ଥିତ ଦର୍ଶକମାନେ ଏସବୁ ବ୍ୟାପାରର କିଛି ଟେର୍ ପାଇନାହାଁନ୍ତି । ଅତଏବ ଏ ଅପହରଣ ବ୍ୟାପାରଟା ଜାଣିବେ ମାତ୍ର ଚାରିଜଣ ।

ସୁପ୍ପବାସା ନିଶ୍ଚୟ ବିଶ୍ୱାସଘାତିନୀ ହେବନାହିଁ, ରାଜକୁମାର ଏବଂ କାଞ୍ଚନମାଳା କଣ ସମସ୍ତଙ୍କୁ ଏ ଘଟଣା ଜଣେଇବେ? ସମ୍ରାଟଙ୍କୁ? ପରମୁହୂର୍ତ୍ତରେ ତିଷ୍ୟାଙ୍କର ମନେ ପଡ଼ିଲା ଖଲ୍ଲାଟକଙ୍କ କଥା। ସେ ଜାଣନ୍ତି ଦ୍ୱାରର ଖବର। ପରମାନ୍ନ ନ ମିଳିବାରୁ ଅଭିନୟରେ ବିଘ୍ନ ହେବାକୁ ଯାଉଥିଲା, ଏ ଖବର ଶୁଣିଲେ ସେ ସନ୍ଦେହ କରି ପାରନ୍ତି। ଅବଶ୍ୟ ଆଜିକାର ଅଭିନୟରେ ସେ ଅନୁପସ୍ଥିତ—ଏଟା ସ୍ୱସ୍ତିର ବିଷୟ। ତଥାପି ସେ ପଚାରିଲେ, ''ଖଲ୍ଲାଟକଙ୍କୁ ଦେଖିଥିଲୁ?''

''ନା, ମହାରାଣୀ!'' ମୁଣ୍ଡ ହଲେଇ ମନାକଲା ସୁପ୍ପବାସା।

ଖୁସିହେଲେ ତିଷ୍ୟା, ''ଯା, ସେ ଅନ୍ନତକ ପକେଇ ଦେ। ଯେମିତି କେହି ନ ଦେଖନ୍ତି।''

''ଏତେ ପରମାନ୍ନ ପକେଇ ଦେବି?''

''ଆଉ କଣ ତୁ ଖାଇବା ପାଇଁ ଆଣିଛୁ?'' ତିଷ୍ୟା ବିରକ୍ତ ହେଲେ। ତା'ପରେ ଉଦାସ ଗଳାରେ କହିଲେ, ''ଦେବତାମାନଙ୍କ ପାଇଁ ଉତ୍ସର୍ଗୀକୃତ ଭୋଗ ଦେବତା ଗ୍ରହଣ ନ କଲେ ତା' ସାଧାରଣ ମଣିଷ ଖାଇବା ଉଚିତ ନୁହେଁ।''

ଆନନ୍ଦିତ ତିଷ୍ୟା ସ୍ୱଗୃହକୁ ଫେରି ଆସିଲେ। ବର୍ତ୍ତମାନ ତାଙ୍କ ମନ ପ୍ରଫୁଲ୍ଲ। ଅଦ୍ଭୁତ ଏକ ଶିହରଣ ଦେହରେ। ଆଜି ସେ ଜଣେଇ ଦେଇ ପାରିଛନ୍ତି ତାଙ୍କର ଅସ୍ତିତ୍ୱ। ଅନ୍ତତଃ ପରୋକ୍ଷ ଭାବରେ। ହଠାତ୍ ଆଉ ଏକ ଚିନ୍ତା ତିଷ୍ୟାଙ୍କ ମସ୍ତିଷ୍କରେ ଉଦିତ ହେଲା। ଏମିତି ବି ତ ହୋଇପାରେ ଏଇ ପବିତ୍ରତମ ଚରିତ୍ରରେ ଅଭିନୟ କରିବାକୁ ହେବ ବୋଲି ରାଜକୁମାର ସାରାଦିନ ଉପବାସରେ ଅଛନ୍ତି, ହୁଏତ ସେଇ ପରମାନ୍ନ ଗ୍ରହଣ ମାଧ୍ୟମରେ ଉପବାସ ଭଙ୍ଗ କରିବାର ବାସନା ଥିଲା ତାଙ୍କର। ରାଜକୁମାର ଏପର୍ଯ୍ୟନ୍ତ ଅଭୁକ୍ତ—ଏ କଥା ସ୍ମରଣ କରିବା ମାତ୍ରେ ଶିହରି ଉଠିଲେ ତିଷ୍ୟା। ତାଙ୍କ ମନ କହିଲା, ଏହା ଉଚିତ ହୋଇନି। ସେ ସୁପ୍ପବାସାକୁ ଡାକିଲେ। ସୁପ୍ପବାସା କିଞ୍ଚିତ ଆଶ୍ଚର୍ଯ୍ୟ ହୋଇ ସାମ୍ନାରେ ଆସି ଛିଡ଼ାହେବା ମାତ୍ରେ ସେ ଉଦ୍‌ଗ୍ରୀବ ହୋଇ ଜିଜ୍ଞାସା କଲେ, ''ତୁ କଣ ପରମାନ୍ନତକ ନଷ୍ଟ କରି ଦେଇଛୁ?''

ନଷ୍ଟ କରିବାର ବାସନା ନ ଥିଲା ସୁପ୍ପବାସାର। ଗୋପନରେ କେତେବେଳେ ସେ ଖାଇଦେବ ଭାବି ଅନ୍ୟତ୍ର ରଖିଥିଲା। ବର୍ତ୍ତମାନ ମିଛ କଥା କହିବାକୁ ଯାଇ ତାର ମନେ ହେଲା ମହାରାଣୀଙ୍କ ଉତ୍ତେଜନାର ନିଶ୍ଚୟ କୌଣସି ତାତ୍ପର୍ଯ୍ୟ ରହିଛି। ସେ କହିଲା, ''ଆବର୍ଜନା ଭିତରେ ତାକୁ ପକେଇବାକୁ ଯାଉଥିଲି, ଏଇ ସମୟରେ ଆପଣ ପଛରୁ ଡାକିଲେ। ପରମାନ୍ନତକ କଣ ପକେଇ ଦେବିନି?''

''ନା'', ସଜୋରେ କହିଲେ ତିଷ୍ୟା। ତା'ପରେ ସଚକିତା ହୋଇ ସୁପ୍ପବାସାକୁ ଲକ୍ଷ୍ୟ କଲେ। ନାଃ, ଜଣକ ଉପରେ ତାଙ୍କୁ ବିଶ୍ୱାସ ରଖିବାକୁ ହିଁ ପଡ଼ିବ। ଏଇ ପ୍ରାସାଦରେ ବାସ କରି ସେ ଏକାକିନୀ କିଛି କରିପାରିବେ ନାହିଁ। ଅତଏବ ସାକ୍ଷୀ

ରଖିବା ଛଡ଼ା ଗତ୍ୟନ୍ତର ନାହିଁ। ସେ ସୁପ୍‌ପବାସାକୁ ଶପଥ କରେଇନେବା କଥା ଚିନ୍ତା କଲେ। କିନ୍ତୁ ବ୍ୟାପାରଟା ସେଥିରେ ଅଧିକ ଗୁରୁତ୍ୱ ପାଇବ ଭାବି ସେ ଚିନ୍ତା ବାତିଲ କଲେ ତିଷ୍ୟା। ତାଠୁଁ ସହଜ ଗଳାରେ ସହଜ ଭଙ୍ଗୀରେ କିଛି କହିଲେ ତା' ମନରେ ହୁଏତ ପ୍ରତିକ୍ରିୟା ନ ହୋଇପାରେ!

ତିଷ୍ୟା ଆଦେଶ ଦେଲେ, ''ତୁ ଏଇକ୍ଷଣି ଉଦ୍ୟାନକୁ ଯା। ସେଠି ଦେଖ ରାଜକୁମାର ଅଛନ୍ତି କି ନାହିଁ। ଯଦି ଥାନ୍ତି, ତେବେ ମୋ ନାଆଁ କହି, କହିବୁ ଏଇ ପ୍ରାସାଦକୁ ଆସିବା ପାଇଁ।''

ସୁପ୍‌ପବାସା ଏତେଟା ଚମକିତ ହୋଇ ପଡ଼ିଲା ଯେ କିଛି ସମୟ ସେ କୌଣସି କଥା କହିପାରିଲା ନାହିଁ। ତିଷ୍ୟା ସେଟା ଲକ୍ଷ୍ୟ କରି କହିଲେ, ''ଏମିତି ଚାହିଁଛୁ କଣ? ଯା' କହିଲି, କର। ବେଶୀ ବିଳମ୍ବ କଲେ ହୁଏତ ଉଦ୍ୟାନରେ ତାଙ୍କୁ ଆଉ ପାଇବୁ ନାହିଁ।''

''ରାଜକୁମାର କଣ ଆସିବେ?''

''ସେଟା ତୋର ଚିନ୍ତାର ବିଷୟ ନୁହେଁ। କହିବୁ ମୋର ଆଦେଶ।'' କହିବା ମାତ୍ରେ ଖିଆଲ ହେଲା ତିଷ୍ୟାଙ୍କର, ''ଆଚ୍ଛା, ତୋତେ ରାଜକୁମାରଙ୍କ ନିକଟରେ ପହଞ୍ଚିବାକୁ ଦେବେ ତ?''

ସୁପ୍‌ପବାସା ଏଥର ହସିଲା, ''ସେଟା ଯଦି ନ ପାରେ, ତେବେ ମୁଁ ଆଉ କେମିତି ଆପଣଙ୍କର ସେବା କରିବି? ମୁଁ ସଙ୍ଗେ ସଙ୍ଗେ ଯାଉଛି।''



ଛାତି ଭିତରେ ଦ୍ରିମି ଦ୍ରିମି ମାଦଳର ଶବ୍ଦ। ଅବଶେଷରେ ସୂତ୍ର ତିଆରି ହେଲା। ତିଷ୍ୟା ଛୁଟିଗଲେ ବାତାୟନ ପାଖକୁ। ବର୍ତ୍ତମାନ ସୁଦ୍ଧା ଉଦ୍ୟାନରେ ଲୋକଗହଳି। ଅଭିନୟ ନେଇ ବୋଧହୁଏ ଆଲୋଚନା ଚାଲିଛି ସେଠି। ଉଦ୍ୟାନ ବାହାରେ ରଥସବୁ ଛିଡ଼ା ହୋଇଛି। ତା' ଅର୍ଥ ହୁଏତ ବର୍ତ୍ତମାନ ବି ବେଶ ପରିବର୍ତ୍ତନ ସରିନାହିଁ ରାଜକୁମାରଙ୍କର। କିମ୍ବା ସେ କାଞ୍ଚନମାଳା ନିକଟରୁ ମୋଟାମୋଟି ଜାଣିବାକୁ ଚାହୁଁଛନ୍ତି।

ବର୍ତ୍ତମାନ କାଞ୍ଚନମାଳାର ମୁହଁ ଅବସ୍ଥା କଳ୍ପନା କରିବାକୁ ଚାହିଁଲେ ତିଷ୍ୟା । ନିଶ୍ଚୟ ଉଦ୍‌ଭ୍ରାନ୍ତ ହୋଇ ଜଣାଉଛି, ସେ କିଛି ଜାଣିନି । ଶୂନ୍ୟ ପାତ୍ର ନେଇ ଉଦ୍ୟାନକୁ ଯିବାରେ ଦ୍ୱିଧା ଥିଲା ବୋଲି ବିଳମ୍ବ ଘଟିଛି ।

ତିଷ୍ୟା ଦ୍ରୁତ ମୁକୁର ସମ୍ମୁଖରେ ଯାଇ ଠିଆ ହେଲେ । ଏକ ଗୁଚ୍ଛ ଉଦ୍‌ଭ୍ରାନ୍ତ କେଶ ଆସି ପଡ଼ିଛି ଲଲାଟ ଉପରେ । ଘୁଞ୍ଚେଇବାକୁ ଯାଇ ମଧ୍ୟ ଘୁଞ୍ଚେଇଲେ ନାହିଁ ତିଷ୍ୟା । ଏଇ ସାମାନ୍ୟ ପରିବର୍ତ୍ତନ ତାଙ୍କୁ ଆହୁରି ରହସ୍ୟମୟୀ କରି ତୋଳିଛି । ଲୋଧ୍ର ଫୁଲର ରେଣୁ ରୂପାପାତ୍ରରୁ ଉଠେଇ ନିଜ ମୁହଁରେ ଲଗେଇଲେ ସେ । କିନ୍ତୁ ପୋଷାକ ଆଡ଼କୁ ଚାହିଁ ଭଲ ଲାଗିଲାନି । ସେ ଦ୍ରୁତ ମୟୂରୀକଣ୍ଠୀ ରଙ୍ଗର ପୋଷାକ ପରିଧାନ କଲେ । ଆଃ, ବର୍ତ୍ତମାନ ତାଙ୍କୁ ଆହୁରି ସୁନ୍ଦରୀ ଦେଖାଯାଉଛି ! ପ୍ରଥମ ଦେଖାରେ ରାଜକୁମାର ଯେମିତି ମୁଗ୍‌ଧ ହୁଅନ୍ତି । କଥାଟା ମନେ କରିବାମାତ୍ରେ ମୁଣ୍ଡ ହଲାଇଲେ ତିଷ୍ୟା । ପ୍ରଥମ ଦେଖା କାହିଁକି ? ଦେଖା ହେଉଛି ତିରିଶ ବର୍ଷ ପରେ । ସେଦିନ ଯେଉଁ ଉଦ୍ଧତ ତରୁଣ କେବଳ ଦେହର ପ୍ରୟୋଜନ ମେଣ୍ଟାଇଥିଲେ ଅକସ୍ମାତ୍ ଖିଆଲରେ, ଆଜି ତା'ଙ୍କ ହୃଦୟରେ ଭିନ୍ନ ଅନୁଭୂତିର ଜନ୍ମ ଦେଖିବାକୁ ଚାହାଁନ୍ତି ତିଷ୍ୟା । ଯେଉଁ ପୁରୁଷଟି ପାଇଁ ସେ ଏତେକାଳ ଅଧୀର ଅପେକ୍ଷା କରିଛନ୍ତି; ଏଥର ତାଙ୍କ ସହିତ ମୁହାଁମୁହିଁ ହେବେ । ତିଷ୍ୟା ଏତେ ଶିହରିତ ଏବଂ ଉତ୍ତେଜିତ ଯେ ସେ ଭାବିପାରୁ ନ ଥିଲେ କଣ କରିବେ । ଏମିତିଭାବରେ ମନ ତାଙ୍କର କେବେ ଉଚାଟ ହୋଇନି ।

ସୁପ୍ରବାସା ଫେରିଆସି ଘନଘନ ଶ୍ୱାସ ନେବାକୁ ଲାଗିଲା । ବୁଝି ହେଉଥିଲା ସେ ଦ୍ରୁତ ଧାଇଁ ଆସିଛି । ଦ୍ରୁତ ନିଃଶ୍ୱାସ ନେଇ ସେ ଜଣେଇଲା, ରାଜକୁମାର ଆସୁଛନ୍ତି !

ସଙ୍ଗେସଙ୍ଗେ ସମସ୍ତ ଶରୀର ଅବଶ ହୋଇଗଲା ତିଷ୍ୟାଙ୍କର । ସୁପ୍ରବାସାର ହାତ ଜାବୁଡ଼ି ଧରିବାକୁ ଯାଇ ନିଜକୁ ସଂଯତ କରି ନେଲେ ସେ । ପରିଚାରିକାକୁ ମନର ଆବେଗ ଜଣେଇବା ମହାରାଣୀଙ୍କ ପକ୍ଷରେ ଶୋଭା ପାଏନା । କୌଣସିମତେ ନିଜକୁ ସମ୍ଭାଳି ସେ ପଚାରିଲେ, "ତୁ ତାଙ୍କ ଦେଖା ପାଇଲୁ ?"

"ହଁ । ଉଦ୍ୟାନରେ ରାଜକୁମାର କୌଣସି ପ୍ରହରୀକୁ ସାମ୍ନାକୁ ଆସିବାକୁ ଦେଇନାହାଁନ୍ତି । ଯଦିଓ ଖଲ୍ଲାତକ ତାଙ୍କ ପାଇଁ ଦେହରକ୍ଷୀ ରଖିଛନ୍ତି; କିନ୍ତୁ ରାଜକୁମାର ଅଧିକାଂଶ ସମୟରେ ତାକୁ ଏଡ଼େଇ ଚାଲନ୍ତି । ମୁଁ ଯେତେବେଳେ ତାଙ୍କ କକ୍ଷଦ୍ୱାରରେ ଉପସ୍ଥିତ ହେଲି, ସେତେବେଳେ ପାଖରେ କେହି ନ ଥିଲେ । ମୁଁ ଆପଣଙ୍କ ଆଦେଶ ଜଣାଇବାରୁ ରାଜକୁମାର ବିସ୍ମିତ ହେଲେ । ପଚାରିଲେ : ତୁମର କେଉଁଠି ଭ୍ରମ ହେଉନି ତ ? ମୁଁ ଯେତେବେଳେ କହିଲି, ଜ୍ଞାନତଃ ମୁଁ କୌଣସି ଭୁଲ କରିନି, ସେତେବେଳେ ରାଜକୁମାର କହିଲେ, କିଛିକ୍ଷଣ ମଧ୍ୟରେ ହିଁ ମହାରାଣୀଙ୍କ ଆଦେଶ ପାଳିତ ହେବ ।"

ସୁପ୍ରବାସା ନିବେଦନ କଲା।

"ସେତେବେଳେ ସେଠାରେ କାଞ୍ଚନମାଳା ନ ଥିଲା ?"

"ନା, ତାଙ୍କୁ ମୁଁ ଦେଖିନି।"

ତିଷ୍ୟା ଖୁସି ହେଲେ। ତା'ପରେ କହିଲେ, "ମୋ ପାଇଁ ନିର୍ଦ୍ଦିଷ୍ଟ ସ୍ୱର୍ଣ୍ଣପାତ୍ରରେ ପରମାନ୍ନ ନେଇ ଆ'। ତା'ପରେ ପ୍ରଧାନ ଦ୍ୱାରରେ ରାଜକୁମାରଙ୍କୁ ଅଭ୍ୟର୍ଥନା ଜଣେଇବୁ। ରାତି ବର୍ତ୍ତମାନ କେତେ ହେଲା ?"

"ଦ୍ୱିତୀୟ ପ୍ରହର ସଦ୍ୟ ଆରମ୍ଭ ହୋଇଛି, ମହାରାଣୀ।"

"ଦ୍ୱିତୀୟ ପ୍ରହର ? ବେଶ୍, ତୁ ଯା, ଯେମିତି କହିଲି ସେମିତି କର।"

ବିମର୍ଷ ଭଙ୍ଗୀରେ ବସିଥିଲେ ରାଜକୁମାର। ଆଜି ତାଙ୍କ ଅଭିନୟରେ ଛନ୍ଦପତନ ଘଟିଛି। ଦର୍ଶକମାନେ ଜାଣି ନ ପାରିଲେ ମଧ୍ୟ ତାଙ୍କର ନିଜ ମନରେ ତୃପ୍ତି ନାହିଁ। ତଥାଗତଙ୍କ ଚରିତ୍ର ସେ ଦୁଃସାହସର ସହିତ ଅଭିନୟ କରୁଛନ୍ତି ଏଇୟା ଚିନ୍ତା କରି ଯେ ସାଧାରଣ ଦର୍ଶକ ଆଖି ସାମ୍ନାରେ ସେଇ ପରମପୁରୁଷଙ୍କ କାର୍ଯ୍ୟକଳାପର ସାମାନ୍ୟ କିୟଦଂଶ ଦେଖି ସୁଦ୍ଧା ତାଙ୍କ ପ୍ରତି ଯେମିତି ଆକୃଷ୍ଟ ହୁଅନ୍ତି। ତଥାଗତଙ୍କ ଚରିତ୍ରରେ ଅଭିନୟ କରିବାକୁ ଗଲେ ଅନ୍ତର ବିଶୁଦ୍ଧ ଏବଂ ଦେହ ପବିତ୍ର ରଖିବାକୁ ହୁଏ। ବସ୍ତୁତଃ ଅଭିନୟ ସମୟରେ ତାଙ୍କର ମନେ ହୁଏ ସେ ଯେମିତି ବୁଦ୍ଧଙ୍କ ଶରୀରରେ ମିଶି ଯାଉଛନ୍ତି। ବୌଦ୍ଧତ୍ୱପ୍ରାପ୍ତି ତାଙ୍କର କେବେ ହେବ, ତା' ତଥାଗତ ହିଁ ଜାଣନ୍ତି, କିନ୍ତୁ ଏ ଯେମିତି ମର୍ତ୍ତ୍ୟରେ ବାସ କରି ନନ୍ଦନକାନନର ସୁରଭି ଘ୍ରାଣ କଲାପରି ଆନନ୍ଦ। ସେ କ୍ଷେତ୍ରରେ ସାମାନ୍ୟତମ ଭ୍ରାନ୍ତି ଯଦି ତାଙ୍କୁ ଟାଣିଆଣେ ବାସ୍ତବକୁ, ତେବେ ସେଇ ପରମ ପୁରୁଷଙ୍କୁ ପରିସ୍ଫୁଟ କରିବା ଅସମ୍ଭବ। ଅତ୍ୟନ୍ତ ଅପରାଧୀ ମନେ ହେଉଥିଲା ନିଜକୁ, ଅନ୍ତତଃ ସୁଜାତା ପରମାନ୍ନ ନେଇ ଆସୁଛନ୍ତି—ଏଇ ଦୃଶ୍ୟରେ ସେ ଚରିତ୍ରରୁ ବାହାରି ଆସିଥିଲେ। ଅଭିନୟାନ୍ତେ ସେ ପ୍ରଶ୍ନ କରିଥିଲେ କାଞ୍ଚନମାଳାକୁ ଏମିତି ଭ୍ରାନ୍ତି ହେଲା କିପରି ? କାଞ୍ଚନମାଳା ମଧ୍ୟ ଯଥାର୍ଥ ଦୁଃଖିତା। କାନ୍ଦି ପକାଇଲା ସେ। ବିଚାରୀ ଜାଣେନାହିଁ ପରମାନ୍ନ କୁଆଡ଼େ ଗଲା। ଶେଷକୁ ଦର୍ଶକମାନଙ୍କ କଥା ଚିନ୍ତା କରି ସେ ଶୂନ୍ୟପାତ୍ର ନେଇ ଉଦ୍ୟାନକୁ ପ୍ରବେଶ କରିଛି। ବର୍ତ୍ତମାନ ରକ୍ଷୀମାନଙ୍କୁ ଡାକି ଜେରା କରିହେବ। କୌଣସି ଲୋଭୀ ରକ୍ଷୀ ହୁଏତ ନିଜକୁ ସମ୍ବରଣ କରିପାରି ନାହିଁ। କିନ୍ତୁ ସେଥିରେ ଆଉ ଯାହା ହେଉ ନା କାହିଁକି, ଘଟି ଯାଇଥିବା ଘଟଣାକୁ ଆଉ ସଂଶୋଧନ କରି ହେବନାହିଁ। ହୁଏତ ଏହା ତଥାଗତଙ୍କର

ଇଚ୍ଛା। ଏଇ ସମୟରେ ମହାରାଣୀଙ୍କ ପ୍ରାସାଦର ଦାସୀ ତାର ପରିଚୟ ଜଣାଇ କହିଥିଲା ତାଙ୍କ ଆଦେଶ କଥା। ରଜନୀର ଏଇ ଦ୍ୱିତୀୟ ପ୍ରହରରେ ମହାରାଣୀଙ୍କର ତାଙ୍କଠାରେ କି ପ୍ରୟୋଜନ, ସେ ବୁଝିପାରୁ ନ ଥିଲେ! ପ୍ରଭାତରେ ରାଜସଭାରେ ସେ ପ୍ରଥମ ଦେଖିଛନ୍ତି ତାଙ୍କୁ। ସୁନ୍ଦରୀ ବିମାତାଙ୍କ ସହ କୌଣସି ବାକ୍ୟାଳାପ ହୋଇନାହିଁ। କିନ୍ତୁ କୁମାର ଶୁଣିଛନ୍ତି, ମହାରାଣୀ କୌଣସି ପ୍ରକାର ଧର୍ମାଚରଣ କରନ୍ତି ନାହିଁ। ସମ୍ରାଟ ଯଦିଓ କାହାକୁ ବୌଦ୍ଧ ହେବାକୁ ବାଧ କରିନାହାଁନ୍ତି, କିନ୍ତୁ ପ୍ରାସାଦରେ ଜଣେ ନିର୍ଲିପ୍ତ ହୋଇ ବସି ରହିବେ, ଏହା ଶୋଭା ପାଏନା। ଯଦିଓ ଖଲ୍ଲାତକ ତାଙ୍କ ନିଜସ୍ୱ ପଥରେ ଚାଳିତ, ତଥାପି ଏଇ ବ୍ୟତିକ୍ରମ ସ୍ପୃହଣୀୟ ନୁହେଁ। ରାଜକୁମାର ଏକଥା ମଧ୍ୟ ଶୁଣିଛନ୍ତି, ମହାରାଣୀଙ୍କ ପିତୃଦେବ ତଥାଗତଙ୍କ ଶରଣାଗତ, କିନ୍ତୁ ଧର୍ମ ଅପେକ୍ଷା କର୍ମରେ ନିଜକୁ ଅଧିକ ନିୟୋଜିତ କରିଛନ୍ତି ସେ।

ତେବେ କଣ ମହାରାଣୀ ଏଇ ବିଷୟରେ ତାଙ୍କ ସହିତ କଥା ହେବାକୁ ଚାହାଁନ୍ତି? ସେ କ୍ଷେତ୍ରରେ ଉପଯୁକ୍ତ ଲୋକ ତ ଉପଗୁପ୍ତ। ଏଭଳି ଜଣେ ସନ୍ନ୍ୟାସୀ ଏଠାରେ ଅଛନ୍ତି, ଏହା ପ୍ରତ୍ୟେକଙ୍କ ପକ୍ଷରେ ସୌଭାଗ୍ୟ। ଅତିଶୟ କ୍ଳାନ୍ତ ଏବଂ କ୍ଷୁଧାର୍ତ୍ତ ହୋଇଥିବା ସତ୍ତ୍ୱେ ରାଜକୁମାର ଦାସୀକୁ ଜଣାଇଛନ୍ତି ଯେ ସେ ପ୍ରାସାଦକୁ ଅଳ୍ପ ସମୟ ମଧ୍ୟରେ ହିଁ ଆସୁଛନ୍ତି।

କାଞ୍ଚନମାଳା ଦାସୀ ସହିତ ପ୍ରାସାଦକୁ ଫେରିଗଲା ପରେ ରାଜକୁମାର ବେଶ ପରିବର୍ତ୍ତନ କରି ତିଷ୍ୟାଙ୍କ ପ୍ରାସାଦ ଦ୍ୱାରରେ ଉପସ୍ଥିତ ହେଲେ। ସଙ୍ଗେ ସଙ୍ଗେ ତାଙ୍କୁ ଅଭ୍ୟର୍ଥନା ଜଣାଇଲେ ସୁପ୍ରବାସାଙ୍କ ନେତୃତ୍ୱରେ ପ୍ରାସାଦର ଅନ୍ୟ ପରିଚାରିକା ବୃନ୍ଦ। ରାଜକୁମାରଙ୍କୁ ପାଛୋଟି ନିଆଗଲା ବିଶେଷ ଅତିଥିଙ୍କ ପାଇଁ ସଜ୍ଜିତ କକ୍ଷକୁ। ସେଠାରେ ସୁଦୃଶ୍ୟ ଆସନରେ ତାଙ୍କୁ ପରମ ସମାଦରରେ ବସାଇ ସୁପ୍ରାବାସା କହିଲା, "ସାମାନ୍ୟ ଅପେକ୍ଷା କରନ୍ତୁ। ମହାରାଣୀଙ୍କୁ ସମ୍ବାଦ ଦିଆଯାଇଛି।"

ଏତେଟା ଅପ୍ୟାୟନ କଥା ରାଜକୁମାର ଚିନ୍ତା କରି ନ ଥିଲେ। ଯଦିଓ ରାଜକୁଳୋଦ୍ଭବ ତଥାପି ସେ ସାଧାରଣ ଭାବେ ଜୀବନ ଅତିବାହିତ କରିବାରେ ଅଭ୍ୟସ୍ତ। ସେ ଭାବିଥିଲେ ମହାରାଣୀଙ୍କ ସହ ଅଳ୍ପ କିଛି କଥାବାର୍ତ୍ତା କରି ଚାଲିଯାଇପାରିବେ। ସୁପ୍ରବାସା ଏବଂ ପରିଚାରିକାଗଣ କକ୍ଷରୁ ନିଷ୍କ୍ରାନ୍ତ ହେବା ପରେ ଏକାକୀ ଅସ୍ୱସ୍ତି ବୋଧ କଲେ ସେ। ମହାରାଣୀ କଣ ତାଙ୍କୁ ଅତିରିକ୍ତ ସମ୍ମାନ ଦେଉଛନ୍ତି?

ଠିକ୍ ଏଇ ସମୟରେ ସେ ପଦଶିଞ୍ଜିନୀର ଧ୍ୱନି ଶୁଣିପାରିଲେ। ମିଷ୍ଟ ଛନ୍ଦରେ ବାଜି ବାଜି ନୂପୁର ବନ୍ଧା ପାଦପଦ୍ମ ଦୁଇଟି କାହାର ଇଏ ଆଗେଇ ଆସୁଛି।

ତା'ପରେ ଦ୍ୱାରଦେଶରେ ମହାରାଣୀ ଆସି ଠିଆ ହେବା ମାତ୍ରେ ଚମକିତ ହେଲେ ରାଜକୁମାର। ଆଜି ପ୍ରଭାତରେ ରାଜସଭାରେ ସେ ମହାରାଣୀଙ୍କୁ ଭଲ ଭାବେ ଦେଖିନାହାଁନ୍ତି। କିନ୍ତୁ ଏଭଳି ରୂପ ଓ ବ୍ୟକ୍ତିତ୍ୱ ପାଟଳିପୁତ୍ର ତ ନିଶ୍ଚୟ, ସମଗ୍ର

ମଗଧରେ ମଧ୍ୟ ଅଛି କି ନାହିଁ ସନ୍ଦେହ। ସେ ତତ୍କ୍ଷଣାତ୍ ଆସନ ଛାଡ଼ି ଉଠି ମସ୍ତକ ଅବନତ କରି ଶ୍ରଦ୍ଧା ନିବେଦନ କଲେ, "ମହାରାଣୀଙ୍କୁ ତଥାଗତ ଶାନ୍ତି ଦିଅନ୍ତୁ। ଆଦେଶ କରନ୍ତୁ, ମୁଁ ଆପଣଙ୍କ ସାମ୍ନାରେ ଉପସ୍ଥିତ।"

ଦ୍ୱାରଦେଶରେ ଠିଆ ହୋଇ ତିଷ୍ୟାଙ୍କର ମନେହେଲା, ତାଙ୍କର ଯେମିତି କଣ୍ଠରୁଦ୍ଧ ହୋଇଯାଇଛି। ରୂପବାନ ତରୁଣ, ଏ କଣ କୃଷ୍ଣପକ୍ଷରେ ଚନ୍ଦ୍ର ଆଗମନ! ସେ ଅବଶ ହୋଇ ଦେଖୁଥିଲେ। ସେହି ମୁହଁ, ସେହି ଦେହ। ଆହା, କେଉଁ ଅଲୌକିକ ଉପାୟରେ ସମୟ ଏବଂ କାଳର ବ୍ୟବଧାନ ଦୂର କରି ସେ ପୁଣି ଫେରିଛନ୍ତି, ଆସି ଠିଆ ହୋଇଛନ୍ତି ତାଙ୍କ ସମ୍ମୁଖରେ! ତିଷ୍ୟାଙ୍କର ମନେ ହେଲା, ଦୂରତ୍ୱ ପୋଛି ଦେଇ ଦୁଇହାତରେ ତାଙ୍କୁ ଜଡ଼େଇ ଧରିବେ। ସେହି ହସ ହସ ମୁହଁ ଏଇ ଛାତିରେ ଚାପି ନ ଧରି ପାରିଲେ ତାଙ୍କ ଆତ୍ମା କେବେ ହେଲେ ତୃପ୍ତ ହେବନାହିଁ।

ରାଜକୁମାର ଅପଲକ ନୟନରେ ଏଥର ତାଙ୍କୁ ଦେଖୁଛନ୍ତି। ତିଷ୍ୟାଙ୍କର ଦେହରେ ଶତ କଦମ୍ବର ରୋମାଞ୍ଚ। କିନ୍ତୁ ତା' ସତ୍ତ୍ୱେ ତିଷ୍ୟା ବହୁ କଷ୍ଟରେ ଆତ୍ମସମ୍ବରଣ କଲେ। ଧୀରେ ଧୀରେ ସେ ଆଗେଇ ଆସିଲେ ରାଜକୁମାରଙ୍କ ନିକଟକୁ। ଗଳାର ସ୍ୱର ଦୁର୍ବଳ ବୋଧ ହେବାରୁ ଇଙ୍ଗିତରେ ତାଙ୍କୁ ଆସନ ଗ୍ରହଣ କରିବାକୁ କହିଲେ। ରାଜକୁମାର ଶାନ୍ତ ଏବଂ ବାଧ୍ୟ ଶିଶୁ ଭଳି ସେ ଆଦେଶ ପାଳନ କଲା ପରେ ତିଷ୍ୟା ତାଙ୍କ ସମ୍ମୁଖବର୍ତ୍ତୀ ଆଉ ଗୋଟିଏ ଆସନରେ ଉପବେଶନ କଲେ। ଉପବେଶନ କଲା ପରେ ସେ ସାମାନ୍ୟ ସ୍ୱସ୍ତି ଲାଭ କଲେ। ଶରୀରର ଭାର ତାଙ୍କର ଦୁଇପାଖ ଆଉ ବହନ କରି ପାରୁ ନ ଥିଲା। କିନ୍ତୁ ଦ୍ରୁତ ସେ ନିଜସ୍ୱ ଚେତନାକୁ ଫେରି ଆସୁଥିଲେ। ସେ ବୁଝି ପାରୁଥିଲେ, ରାଜକୁମାରଙ୍କ ମୁହଁ ଆଡ଼କୁ ଚାହିଁଲା ମାତ୍ରେ ତାଙ୍କର ଶକ୍ତି ଅନ୍ତର୍ହିତ ହୁଏ। ଅତଏବ ସିଧାସଳଖ ନ ଚାହିଁ, କଥା କହିବା ହିଁ ହେବ ବୁଦ୍ଧିମତୀର କାର୍ଯ୍ୟ। ସେ ମୃଦୁସ୍ୱରରେ କହିଲେ, "ରାଜକୁମାର ଯେ ଏତେ ସୁନ୍ଦର ଅଭିନୟ କରନ୍ତି, ତା ମୋତେ କେହି କହି ନ ଥିଲେ।"

ରାଜକୁମାର କୌତୂହଳରେ ମୁହଁ ଉଠେଇଛନ୍ତି ଜାଣିପାରି ତିଷ୍ୟା ଏଥର ହସିଲେ, "ସେଇ ବାତାୟନରେ ଠିଆହୋଇ ମୁଁ ଅଭିନୟ ଦେଖିଛି। ଚମତ୍କାର!"

ରାଜକୁମାର ବିନୀତ ଗଳାରେ ଉତ୍ତର ଦେଲେ, "ମୁଁ ଯାହା କରିଛି, ତା' ତଥାଗତଙ୍କ ଇଚ୍ଛାରେ ହିଁ କରିଛି। ସେ ହିଁ ମୋତେ ପରିଚାଳିତ କରନ୍ତି, ମୁଁ ଯା' କରେ ତା' ତାଙ୍କରି ଇଚ୍ଛାର ପ୍ରକାଶ।"

ତିଷ୍ୟାଙ୍କ ଓଠରେ ହସ ଫୁଟିଉଠିଲା। ଏ ପ୍ରକାର ବୃଦ୍ଧ ସୁଲଭ ସଂଳାପ ଯେ ତାଙ୍କ ମୁହଁରେ ମାନେ ନା, ତା କ'ଣ ଏଇ ତରୁଣ ଜାଣିନାହାଁନ୍ତି? ତାଙ୍କୁ ହେବାକୁ ପଡ଼ିବ ଅବାଧ, ଉଦ୍ଧତ, ସାମାନ୍ୟ ବାଧା ଦୁଇପାଦରେ ଦଳିଦେଇ ସେ ଦଖଲ କରିବେ ଈପ୍‌ସିତକୁ। ତେବେ ସିନା ସେ ହୋଇଉଠିବେ ଆହୁରି ସୁନ୍ଦର, ଆହୁରି

ଆକର୍ଷଣୀୟ, ଯାହା ଦେଖିଛନ୍ତି ତିଷ୍ୟା ତିରିଶ ବର୍ଷ ପୂର୍ବେ! ଏକଥା କହିବାକୁ ଯାଇ ନିଜକୁ ସମ୍ଭରଣ କଲେ ସେ। ନା, ଏତେ ଶୀଘ୍ର ନୁହେଁ। ମଣିଷ ଅଭ୍ୟାସର ଦାସ। ତାକୁ ଦାସତ୍ୱ ମୁକ୍ତ କରିବା ପାଇଁ ଧୀରେ ଧୀରେ ଶକ୍ତି ପ୍ରୟୋଗର ଉତ୍ସାହ ଦେବାକୁ ପଡ଼େ। ଧୈର୍ଯ୍ୟ ଧରିବାକୁ ପଡ଼ିବ ତାଙ୍କୁ, ଯେତେ କଷ୍ଟ ହେଉନା କାହିଁକି।

ତିଷ୍ୟା ଜିଜ୍ଞାସା କଲେ, "ତଥାଗତ ତୁମକୁ ଶାନ୍ତି ଦିଅନ୍ତି?"

ରାଜକୁମାର କହିଲେ, "ନିଶ୍ଚୟ।"

ତିଷ୍ୟା ହସିଲେ, "ତୁମେ ତରୁଣ। ଜୀବନର ସବୁ ରହସ୍ୟ, ଯୌବନର ପୂର୍ଣ୍ଣସ୍ୱାଦ ତୁମର ବର୍ତ୍ତମାନ ସୁଦ୍ଧା ଜ୍ଞାତ ହୋଇନାହିଁ। କିନ୍ତୁ ଶାକ୍ୟମୁନି ତୁମଠୁଁ ଅନ୍ତତଃ ଦଶବର୍ଷ କାଳ ସଂସାରୀ ଥିଲେ। ଅନ୍ତତଃ ସେଇ ବୟସ ପର୍ଯ୍ୟନ୍ତ ତୁମ ଜୀବନ ଅନ୍ୟଭାବରେ ପ୍ରବାହିତ ହେବା ଉଚିତ।"

ରାଜକୁମାର କହିଲେ, "ମୁଁ ବୁଝି ପାରୁନି ଆପଣ କେଉଁ ସୂତ୍ରରେ ଏସବୁ କଥା କହୁଛନ୍ତି। ତେବେ ତଥାଗତ ଅଣତିରିଶ ବର୍ଷରେ ସଂସାର ତ୍ୟାଗ କଲେ ମଧ୍ୟ ଜାତସନ୍ନ୍ୟାସୀ ଥିଲେ। କିଏ କେବେ ଶୁଣିଛି ଜନ୍ମକ୍ଷଣରେ ଶିଶୁ ସାତଟି ପଦକ୍ଷେପ କରେ ଏବଂ ପ୍ରତି ପଦକ୍ଷେପରେ ଫୁଟିଉଠେ ଗୋଟିଏ ଗୋଟିଏ ପଦ୍ମ! କାହାକୁ ଅଭ୍ୟର୍ଥନା ଜଣାନ୍ତି ବ୍ରହ୍ମା ଏବଂ ଇନ୍ଦ୍ର! ତାଙ୍କ ସହିତ ମୋର ତୁଳନା କେବଳ ଧୃଷ୍ଟତା ନୁହେଁ, ମହାପାପ।"

ତିଷ୍ୟା ଅତ୍ୟନ୍ତ କ୍ଷୁଣ୍ଣ ହେଲେ ଏଭଳି ସଂଳାପ ଶୁଣି। ସେ ଏଥର ତରୁଣ ଆଡ଼କୁ ସ୍ପଷ୍ଟ ଆଖିରେ ଚାହିଁଲେ। ନା, ଯାଙ୍କୁ ଛାଡ଼ି ସେ କେବେହେଲେ ରହିପାରିବେ ନାହିଁ। ପୃଥିବୀର ଯେ କୌଣସି ସମ୍ପଦ ବିନିମୟରେ ସେ ତାଙ୍କୁ ନିଶ୍ଚୟ ଜୟ କରିବେ। ଏ କ୍ଷେତ୍ରରେ ଶାକ୍ୟମୁନିଙ୍କ ସହିତ ଯଦି ତାଙ୍କୁ ପ୍ରତିଦ୍ୱନ୍ଦିତା ସୁଦ୍ଧା କରିବାକୁ ପଡ଼େ, ତେବେ ସେଥିରେ ମଧ୍ୟ ପଶ୍ଚାତ୍‌ପଦ ହେବେ ନାହିଁ ସେ।

ତିଷ୍ୟା କହିଲେ, "ଆଜି ଅଭିନୟ ବେଳେ ରାଜକୁମାର ଚଞ୍ଚଳ ହୋଇଥିଲେ। ସେତେବେଳେ, ମୁଁ ଲକ୍ଷ୍ୟ କରିଛି, ତୁମେ ତଥାଗତ ଭୂମିକାରୁ ବାହାରି ଆସି କେବଳ ଛଳନା ହିଁ କରିଛ, ଯେମିତି ଦର୍ଶକମାନେ କୌଣସି ତ୍ରୁଟି ଧରି ନ ପାରନ୍ତି। ଏହା ମଧ୍ୟ କଣ ତଥାଗତଙ୍କ ଇଚ୍ଛାରେ ହୋଇଥିଲା?"

ଚମକି ଉଠିଲେ ରାଜକୁମାର। ତା ଅର୍ଥ, ସେଇ ସମୟରେ ଅଭିନୟରେ ପୂର୍ଣ୍ଣତା ନ ଥିଲା।

ସେ ଧରା ପଡ଼ି ଯାଇଛନ୍ତି। ବର୍ତ୍ତମାନ କି ଉତ୍ତର ଦେବେ ଏ ପ୍ରଶ୍ନର? ହଁ ଏଇ ଦ୍ୱନ୍ଦ୍ୱ ତାଙ୍କ ନିଜ ଭିତରେ ବି ଶେଷ ହୋଇନି। ତଥାଗତଙ୍କୁ ସମ୍ପୂର୍ଣ୍ଣ ସମର୍ପଣ କରିବା ପରେ ମଧ୍ୟ ମଝିରେ ମଝିରେ ମୁଁତ୍ୱଟା କାହିଁକି ପ୍ରବଳ ହୋଇଉଠେ? ଉପଗୁପ୍ତଙ୍କୁ ସମସ୍ତେ ତଥାଗତଙ୍କ ଅଂଶ ବୋଲି ଜାଣନ୍ତି। ତାଙ୍କୁ ପ୍ରଶ୍ନ କରିଥିଲେ ରାଜକୁମାର।

ସେ ହସି କହିଥିଲେ, ''ଯେତେଦିନ ଯାଏଁ ଫଳ ପୂରାପୂରି ପକ୍ୱ ନ ହୁଏ, ସେତେ ଦିନ ଯାଏ ଗଛ ତାକୁ ଧରିରଖେ। ସବୁ ରସ ଗାଢ଼ହୋଇ ଫଳରେ ଆଶ୍ରୟ ନେଲାପରେ ଆପେ ଆପେ ଡେମ୍ଫ ଖସିଯାଏ। ଏଇ ମୁଁ ବି ସେତେଦିନ ଯାଏ ରହିବ ଯେତେଦିନ ଯାଏ ତୁମ ଚିତ୍ତ ସଂସ୍କାରମୁକ୍ତ ହୋଇନି। ଯଥାର୍ଥ ସମୟ ପାଇଁ ଅପେକ୍ଷା କର।''

ତିଷ୍ୟା ଲକ୍ଷ୍ୟ କରିଥିଲେ ପ୍ରଶ୍ନ ଶୁଣିବା ମାତ୍ରେ ରାଜକୁମାର ଚିନ୍ତିତ ହୋଇପଡ଼ିଲେ। ଏମିତିକି ତାଙ୍କ ଉପସ୍ଥିତି ମଧ୍ୟ ଯେମିତି ବିସ୍ମରିତ ହେଲେ! ସଠିକ୍ ସ୍ଥାନରେ ଆଘାତ କରାହୋଇଛି ଭାବି ପ୍ରଫୁଲ୍ଲ ହେଲେ ସେ। ତା'ପରେ ହଠାତ୍ ପ୍ରଶ୍ନ କଲେ, ''ମୁହଁ ଦେଖି ମନେ ହେଉଛି ରାଜକୁମାର କ୍ଷୁଧାର୍ତ୍ତ। ମୁଁ କଣ ଭୁଲ ଅନୁମାନ କରିଛି?''

ରାଜକୁମାର ଚେତନାକୁ ଫେରି ପ୍ରଶ୍ନଟି ଅନୁମାନ କରି ନ ପାରି ଅସହାୟଭାବେ କେବଳ ମସ୍ତକ ଆନ୍ଦୋଳିତ କଲେ। ତିଷ୍ୟା ଉଷ୍ଣ କଣ୍ଠରେ କହିଲେ, ''ମୁଁ ଯେତେଦୂର ଶୁଣିଛି, ରାଜକୁମାର ମିଥ୍ୟା କଥାରେ ଅଭ୍ୟସ୍ତ ନୁହଁନ୍ତି। ସତରେ କଣ କ୍ଷୁଧା ନାହିଁ?''

ରାଜକୁମାର କହିଲେ, ''ମାର୍ଜନା କରିବେ। ମୁଁ ପ୍ରଥମେ ପ୍ରଶ୍ନଟି ବୁଝିପାରି ନ ଥିଲି। ହଁ କ୍ଷୁଧା, ଅଛି। କିନ୍ତୁ ଶରୀର ଥିଲେ ତା' ରହିବ ଇ। ସେଥିପାଇଁ ବ୍ୟସ୍ତହେବାର କୌଣସି ପ୍ରୟୋଜନ ନାହିଁ। ମୁଁ ଗୃହକୁ ଫେରେ, ଖାଦ୍ୟ ଗ୍ରହଣ କରିବି।

ତିଷ୍ୟା ଅଭିମାନରେ ବକ୍ର ସ୍ୱରରେ କହିଲେ, ''ମୁଁ ଜାଣେ ଗୃହରେ ପହଞ୍ଚିବା ମାତ୍ରେ ରାଜକୁମାରଙ୍କ କ୍ଷୁଧାର ନିବୃତ୍ତି ହେବ। ସେଠି ଯେ ତାଙ୍କର ଖାଦ୍ୟବସ୍ତୁ ଅପେକ୍ଷାରେ, ଅଛି! କିନ୍ତୁ କାହାରି କାହାରି ତ ଇଚ୍ଛା ହୁଏ ରାଜକୁମାରଙ୍କୁ ତୃପ୍ତ କରିବାକୁ। ସେ ଇଚ୍ଛାର କ'ଣ କୌଣସି ମୂଲ୍ୟ ନାହିଁ?''

ରାଜକୁମାର ଅନ୍ତର୍ନିହିତ ଅର୍ଥ ଅନୁଧାବନ କରି ପାରିଲେ ନାହିଁ। ସେ ସରଳାର୍ଥରେ କଥାଟି ଧରିନେଇ କହିଲେ, ''ରାତ୍ରି ହେଲାଣି। ଏ ସମୟରେ ଅକାରଣରେ ବିରକ୍ତ କରିବା ଉଚିତ ନୁହେଁ। ତଥାପି ମହାରାଣୀ ଯଦି ଇଚ୍ଛା କରନ୍ତି, ତେବେ ସାମାନ୍ୟ କିଛି ଆହାର କରିବାକୁ ମୋର ଆପତ୍ତି ନାହିଁ।''

'ଆହାର' ଶବ୍ଦଟି ନେଇ ଆଉ ଟିକିଏ ପ୍ରଗଲ୍‌ଭା ହେବାର ଉଦଗ୍ର ବାସନାକୁ ଜୟ କଲେ ତିଷ୍ୟା। ଅନେକ ସମୟ ରହିଛି। ଏ ସରଳତା ଯଦି ସତ୍ୟ ହୋଇଥାଏ ତଥାପି ତା'ନେଇ ଦୁଶ୍ଚିନ୍ତାର କିଛି ନାହିଁ। ସେ ଆସନ ତ୍ୟାଗ କରି କକ୍ଷାନ୍ତରକୁ ଗଲେ। ସେଠାରେ ଏକାକିନୀ ସୁପ୍ରବାସା ସ୍ୱର୍ଣ୍ଣପାତ୍ରଟି ହାତରେ ଧରି ତାଙ୍କ ଆଦେଶ ଅପେକ୍ଷାରେ ଠିଆ ହୋଇଛି। ତିଷ୍ୟା ଦେଖିଲେ ସୁପ୍ରବାସା ଓଠରେ କୌତୁକ। ସେ ଗମ୍ଭୀର ହେବାର ଛଳନା କରି କହିଲେ, ''ସେଟା ମୋତେ ଦେ। ଆଉ ତୁ ବାହାରେ ଯାଇ ଅପେକ୍ଷା କର। ତୋତେ ଡାକିଲେ ତେବେଯାଇ ଆସିବୁ।''

ସ୍ୱର୍ଣ୍ଣପାତ୍ର ହାତକୁ ନେବା ବେଳେ ତିଷ୍ୟା ଲକ୍ଷ୍ୟ କଲେ ନାହିଁ ସୁପ୍ରବାସାର

ଚାହାଣିରେ ବିରକ୍ତି, ହସଟି ବକ୍ର ହେଲା । କିନ୍ତୁ ବାକ୍ୟବ୍ୟୟ ନ କରି ସେ ସାମ୍ନାରୁ ନିଷ୍କ୍ରାନ୍ତ ହେବାପରେ ତିଷ୍ୟାଙ୍କ ଶରୀର ପୁଣି ଅବଶ ହୋଇ ଆସିଲା । ପରମାନ୍ନ ଥିବା ସ୍ୱର୍ଣ୍ଣପାତ୍ରରେ ରେଶମୀ କପଡ଼ା ଆବୃତ ଥିଲେ ମଧ୍ୟ ସେଥିରୁ ସୁଘ୍ରାଣ ଆସୁଛି । ସେ ଲଜ୍ଜିତ ଏବଂ ଅହଙ୍କାରୀ ଭଙ୍ଗୀରେ ପାଦ ପକେଇ ପୁଣି ପୂର୍ବ କକ୍ଷକୁ ଫେରିଆସିଲେ । ତା'ପରେ ସୁଜାତା ଯେମିତି ଗୌତମଙ୍କୁ ପରମାନ୍ନ ଦେବାକୁ ଆସିଥିଲେ ସେଇ ଭଙ୍ଗୀରେ ଆଗେଇଗଲେ ରାଜକୁମାରଙ୍କ ଆଡ଼କୁ। ତାଙ୍କର ରୋମାଞ୍ଚ ହେଉଥିଲା ! କିନ୍ତୁ ସେଥି ସହିତ ଶଙ୍କା ମଧ୍ୟ । ଯଦି ଏଇ ପରମାନ୍ନକୁ ନେଇ କୌଣସି ଭାବରେ ରାଜକୁମାରଙ୍କ ମନରେ ସନ୍ଦେହ ଦେଖାଦିଏ ? ଅବଶ୍ୟ ପରମାନ୍ନରେ କୌଣସି ପରିଚୟ ଲେଖା ହୋଇ ରହେନାହିଁ ।

ରାଜକୁମାର ମହାରାଣୀଙ୍କୁ ଏଇ ଭଙ୍ଗୀରେ ଆଗେଇ ଆସିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କାଞ୍ଚନମାଳା ମଧ୍ୟ ପାତ୍ର ଧରି ଏମିତି ସୁନ୍ଦର ପଦକ୍ଷେପରେ, ଉଦ୍ୟାନକୁ ପ୍ରବେଶ କରିପାରେ ନାହିଁ। କିନ୍ତୁ ତା' ସହିତ ଏହା ମଧ୍ୟ ମନେହେଲା, ଏଇ ଭଙ୍ଗୀ ସୁଜାତାଙ୍କୁ ମାନେ ନାହିଁ। ପ୍ରତିଟି ପଦକ୍ଷେପରେ ଜାଗତିକ କାମନାର ମୁଦ୍ରା । ସେ ଆସନରୁ ଦ୍ରୁତ ଉଠି କହିଲେ, "ଆପଣ କାହିଁକି ବୃଥାରେ ପରିଶ୍ରମ କରିବାକୁ ଗଲେ ? ପରିଚାରିକାମାନଙ୍କୁ କହିଥିଲେ ହୋଇଥାନ୍ତା !"

ତିଷ୍ୟା ମଧୁର ହସିଲେ, "କିଛି କିଛି ପୂଜା ନିଜ ହାତରେ ନ କଲେ ତୃପ୍ତି ହୁଏ ନାହିଁ, ଏକଥା କଣ ରାଜକୁମାରଙ୍କର ଜଣାନାହିଁ? ଝିଅମାନେ ନିଜ ହାତରେ ଖୁଆଇ ପାରିଲେ ସୁଖୀ ହୁଅନ୍ତି।"

ରେଶମୀ କପଡ଼ା ଘୁଞ୍ଚେଇବାମାତ୍ରେ ରାଜକୁମାର ପରମାନ୍ନର ସୁଘ୍ରାଣ ପାଇଲେ । ସେଇ ଅମୃତର ସ୍ୱାଦ ଜିହ୍ୱାରେ ଗ୍ରହଣ କରିବା ମାତ୍ରେ ମନେ ହେଲା, ଏତେ ସୁସ୍ୱାଦୁ ଖାଦ୍ୟ ସେ କେବେହେଲେ ଖାଇନାହାଁନ୍ତି। କିନ୍ତୁ କିଛିକ୍ଷଣ ପରେ ତାଙ୍କର ଭିନ୍ନ ପ୍ରକାର ଅନୁଭୂତି ହେଲା। ଯେଉଁସବୁ ଦ୍ରବ୍ୟ ଏବଂ ଫଳ ଦେଇ ଏଇ ପରମାନ୍ନ ପ୍ରସ୍ତୁତ ହୋଇଛି, ତା' କେବଳମାତ୍ର ପଦ୍ମାବତୀ ହିଁ ଜାଣନ୍ତି। ପରମାନ୍ନରେ କୌଣସି ପରିଚୟ ଲେଖା ରହେନା ସତ, କିନ୍ତୁ ତା ସ୍ୱାଦରେ ଯେଉଁ ବିଶେଷତ୍ୱ, ତା' କେଉଁଠୁ ଲୋପ ପାଇବ? କିନ୍ତୁ ରାଜକୁମାରଙ୍କ ମନରେ କୌଣସି ସନ୍ଦେହ ଆସିଲା ନାହିଁ। ସେ ଭାବିଲେ, ପଦ୍ମାବତୀଙ୍କ ରନ୍ଧନକୌଶଳ ବର୍ତ୍ତମାନ ପାଟଳିପୁତ୍ରରେ ପ୍ରଚାରିତ ହୋଇଥିବାରୁ ଏଇ ପ୍ରାସାଦର ରନ୍ଧନିକା ହୁଏତ ସେଇ ତଥ୍ୟ ଜାଣି ଯାଇଛି।

ନିବିଷ୍ଟ ମନରେ ତାଙ୍କୁ ଖାଇବାକୁ ଦେଇ ତିଷ୍ୟା ପଚାରିଲେ: "ମନେ ହେଉଛି, ରାଜକୁମାରଙ୍କୁ ପରମାନ୍ନ ଅପସନ୍ଦ ହୋଇନାହିଁ?"

"ନା, ସତରେ ସୁସ୍ୱାଦୁ।" ଆହାର ଶେଷ କରି ରାଜକୁମାର କହିଲେ: "ଏଥର ମୋତେ ଆଦେଶ କରନ୍ତୁ।"

"କି ଆଦେଶ ?"

"ମୋତେ ଡାକିଥିଲେ କାହିଁକି ?"

ତିଷ୍ୟା ହସିଲେ, "ଅଣଚାଶ ଗ୍ରାସ ହେଲାନାହିଁ ରାଜକୁମାର। ମୁଁ ଗଣିଛି। ତୁମେ ତିରିଶ ଗ୍ରାସରେ ପାତ୍ରଟି ନିଃଶେଷ କରିଛ। ଅତଏବ ତଥାଗତଙ୍କ ଆଦର୍ଶ ସର୍ବତ୍ର ଅନୁସରଣ କରିବା ସମ୍ଭବ ନୁହେଁ। ପ୍ରତ୍ୟେକ ମଣିଷର ବ୍ୟକ୍ତିଗତ ଜୀବନ ଅଛି—ଏଇ ସତ୍ୟଟି ମାନି ନେବାକୁ ଏତେ କୁଣ୍ଠା କାହିଁକି ରାଜକୁମାର ?"

ରାଜକୁମାର ବିସ୍ମିତ ହେଲେ। କହିଲେ, "ଆପଣ କଣ କହିବାକୁ ଚାହୁଁଛନ୍ତି, ମୁଁ ବୁଝି ପାରୁନାହିଁ।"

ଖିଲି ଖିଲି ଶବ୍ଦରେ ହସି ହସି ଲୋଟି ପଡ଼ିଲେ ତିଷ୍ୟା। ତା'ପରେ ହାତ ଆଙ୍ଗୁଠିରେ ଅଧର ଆବୃତ ରଖି ନିଜକୁ ପଲକରେ ସମ୍ବରଣ କରି ମଦିର ହସିଲେ, "ମୋତେ ଦେଖି ରାଜକୁମାରଙ୍କ କଣ ବୋଧହୁଏ ?"

ରାଜକୁମାରଙ୍କ ଲଲାଟ କୁଞ୍ଚିତ ହେଲା, "ଆପଣ ସୁନ୍ଦର।"

"ସୁନ୍ଦର ?" ପୁଣି ହସର ଜୁଆର ଖେଳିଗଲା, "କେବଳ ସୁନ୍ଦର ?"

"ମୁଁ ଆଉ ଅଧିକ କଣ କହିପାରେ ?"

"ପାର। ମୋଠୁଁ କଣ କାଞ୍ଚନମାଳାର ସୌନ୍ଦର୍ଯ୍ୟ ଅଧିକ ?" ତୀକ୍ଷ୍ଣ ଗଳାରେ ପ୍ରଶ୍ନ କଲେ ତିଷ୍ୟା। ତା'ପରେ ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ଚାହିଁଲେ ବ୍ୟଗ୍ର ହୋଇ।

—"ଏ ତୁଳନା କରିବା ପାପ ମହାରାଣୀ !"

—"ପାପ ? ପାପ କାହିଁକି ?" ଆଶ୍ଚର୍ଯ୍ୟ ହେଲେ ତିଷ୍ୟା।

"କାରଣ ଆପଣ ମୋ ଜନନୀ।"

"ଜନନୀ ? କିଏ ତୁମ ଜନନୀ ? ମୁଁ ? କଦାପି ନୁହେଁ" ! ହଠାତ୍ ଉତ୍ତେଜିତ ହୋଇ ଉଠିଲେ ତିଷ୍ୟା। ଆଉ ତା' ସହିତ ବିସ୍ଫାରିତ ହେଲା ରାଜକୁମାରଙ୍କ ଦୁଇ ଚକ୍ଷୁ।

ଅସ୍ଫୁଟ କଣ୍ଠରେ ସେ ଉଚ୍ଚାରଣ କଲେ, "ଏ ଆପଣ କଣ କହୁଛନ୍ତି ? ଆପଣ ସମ୍ରାଟଙ୍କ ପ୍ରଧାନମହିଷୀ, ଅତଏବ ମୋ ଜନନୀ, ଏ ସତ୍ୟ ସୂର୍ଯ୍ୟ ଭଳି ସ୍ପଷ୍ଟ।"

ତିଷ୍ୟାଙ୍କର ମନେହେଲା କେହି ଯେମିତି ତପ୍ତ ଲୌହ ଶଳାକା ଦ୍ୱାରା ତାଙ୍କର ହୃତ୍‌ପିଣ୍ଡ ବିଦ୍ଧ କରୁଛି ! ସେ ଯନ୍ତ୍ରଣାରେ ଆର୍ତ୍ତନାଦ କରି ଉଠିଲେ, "ନା, କେବେହେଲେ ସେ ଶବ୍ଦ ଉଚ୍ଚାରଣ କରିବ ନାହିଁ। ମୁଁ ତୁମର ଜନନୀ ନୁହେଁ। ମୁଁ କାହାପାଇଁ ଏତେକାଳ ସଂଯତ ରହିଛି ତା' କଣ ତୁମେ କଳ୍ପନା କରିପାରୁ ନାହଁ ? କାହିଁକି ତୁମେ ସେଇ ଶବ୍ଦ ଉଚ୍ଚାରଣ କରି ମୋତେ ଆହତ କରିବାକୁ ଚାହୁଁଛ ?"

ରାଜକୁମାର ପାଦେ ପଛକୁ ଘୁଞ୍ଚିଗଲେ, "ମହାରାଣୀ, ଆପଣଙ୍କୁ ବୁଝିବାରେ ମୋର କେଉଁଠି ଭ୍ରମ ହୋଇଛି। ମନେ ହେଉଛି, ଆପଣ କେଉଁ କାରଣରୁ ଅଶାନ୍ତ। ଆପଣଙ୍କର ବର୍ତ୍ତମାନ ବିଶ୍ରାମର ପ୍ରୟୋଜନ। ମୋତେ ବିଦାୟ ନେବାକୁ ଅନୁମତି

ଦିଅନ୍ତୁ ।''

''ନା'', ତିଷ୍ୟା ପୁଣି ଉତ୍ତେଜିତ ହୋଇ ଉଠିଲେ, ''ତୁମକୁ ମୋ ପାଖରେ ବସିବାକୁ ପଡ଼ିବ । ମୁଁ ତୁମକୁ ଭଲପାଏ । ଯେଉଁ ମୁହୂର୍ତ୍ତରେ ତୁମର ଦର୍ଶନ ପାଇଛି, ସେଇ ମୁହୂର୍ତ୍ତରୁ ମୋ ପାଖରେ ଜଗତ୍ ସଂସ୍କାର ଅସାର ହୋଇ ଯାଇଛି । ତୁମେ ମୋ ଭଲପାଇବାର ମର୍ଯ୍ୟାଦା ଦିଅ । ମୁଁ ତୁମ ନିକଟରେ ପ୍ରାର୍ଥନା କରୁଛି ।''

ଶିହରି ଉଠିଲେ ରାଜକୁମାର, ''ଛି! ତା' ହୋଇପାରେନା । ଏ କଥା ଶୁଣିବା ମଧ୍ୟ ପାପ ।''

''ପାପ ? ହାୟ ଈଶ୍ୱର ! କଣ ପାଇଁ ପାପ ? ମୁଁ ଏତେକାଳ ଧରି ଯେଉଁ ସାଧନା କରିଛି, ତା'ର ପୂର୍ଣ୍ଣତା ଲାଭ କରିବା କଣ ପାପ ? କାହିଁକି ମୋତେ ତୁମର ପସନ୍ଦ ହେଉନି ? ଦେଖ, ମୋ ଆଡ଼କୁ ଚାହିଁ ଦେଖ, ନା,ଦେଖିବାକୁ ପଡ଼ିବ ତୁମକୁ ! ହଁ, କେଉଁଥିରେ ମୁଁ କାଞ୍ଚନମାଳାଠୁଁ କମ୍ ? ମୋ ରୂପ, ମୋ ଦେହ, ମୋ ଶିକ୍ଷା ? ତେବେ ? ରାଜକୁମାର, ତୁମେ ମୋତେ ଫେରେଇ ଦିଅନି ।'' ଧୀରେ ଧୀରେ ଭୂମିରେ ବସି ପଡ଼ିଲେ ତିଷ୍ୟା । ବର୍ତ୍ତମାନ ତାଙ୍କର ହୃଦୟ ମଛି ବାହାରି ଆସୁଥିବା ତପ୍ତ ପବନ ସହ ଆର୍ଦ୍ରତା ମିଶିଛି । ଖୁବ୍ ଆର୍ଦ୍ର ଏଥର ତାଙ୍କର ସ୍ୱର ।

ସେ କିନ୍ତୁ ଦେଖିପାରି ନାହାଁନ୍ତି ଦୁଇ ହାତରେ କାନ ଢାଙ୍କିଥିଲେ ରାଜକୁମାର । ତା'ପରେ ମହାରାଣୀଙ୍କୁ ଭାଙ୍ଗି ପଡ଼ିବାର ଦେଖି ସେ ନିମ୍ନସ୍ୱରରେ କହିଲେ, ''ମହାରାଣୀ, ଆପଣ ମୋ ଜନନୀ । ତଥାଗତ ଆପଣଙ୍କ ଭ୍ରାନ୍ତି ନିଶ୍ଚୟ ଦୂର କରିବେ । ଆପଣ ଶାନ୍ତ ହୁଅନ୍ତୁ, ଆପଣ ଶାନ୍ତ ହୁଅନ୍ତୁ ।''

ତା'ପରେ ସ୍ଥିର ପଦକ୍ଷେପରେ ରାଜକୁମାର ପ୍ରାସାଦରୁ ପ୍ରସ୍ଥାନ କଲେ । ସେତେବେଳେ ରାତ୍ରିର ଦ୍ୱିତୀୟ ପ୍ରହର ପ୍ରାୟ ଶେଷ । ଶୀତଳ ପବନ ବାତାୟନ ବାଟେ କକ୍ଷ ଭିତରକୁ ପ୍ରବେଶ କରୁଥିଲା । ଦୀପର ଶିଖା କମ୍ପୁଛି, ତା' ଛାଇ ବହୁତ ନକ୍ସା ଆଙ୍କୁଛି କାନ୍ଥରେ ।

ନିଃଶ୍ୱାସ ନେବାକୁ କଷ୍ଟ ହେଉଥିଲା ତିଷ୍ୟାଙ୍କର ।

ତିଷ୍ୟାଙ୍କ ପ୍ରାଣରେ ଶାନ୍ତି ନାହିଁ । ରାତି କଟେ ବିନିଦ୍ର ଭାବେ । ଆଉ ଦିନଟା ଏତେ ବଡ଼ ଯେ କଟିବାକୁ ଚାହେଁନା । ସେଦିନର ସେ ଘଟଣା ପରେ ଛାତି ଭିତରେ ଏକ ନୂତନ ଚିତା ଅଷ୍ଟପ୍ରହର ହୁତ୍‌ହୁତ୍ ହୋଇ ଜଳୁଛି । ପ୍ରାସାଦର ଦକ୍ଷିଣ

ପାର୍ଶ୍ୱରେ ଯେଉଁ ରାଜପଥ, ସେଠାରେ ଦିନସାରା ନାନା ଯାନବାହନର ଯାତାୟତ। ପୂର୍ବରୁ ତିଷ୍ୟା କେତେବେଳେ କେତେବେଳେ ସେପଟର ବାତାୟନ ଆଢୁଆଳରେ ଠିଆ ହେଉଥିଲେ। ଏବେ ସେ କୌତୂହଳ ମଧ ନାହିଁ ତାଙ୍କର। କେବଳ ସେଇ ତରୁଣ ରୂପବାନ ଜଗତ୍‌ସଂସାର ଆଢୁଆଳ କରିଥାନ୍ତି ସବୁବେଳେ। ପରିଚାରିକା ସୁପ୍‌ପବାସା ଶେଷକୁ ଆଉ ନକହି ରହିପାରିଲା ନାହିଁ, "ମହାରାଣୀ, କିଛିକ୍ଷଣ ପାଇଁ ଶଯ୍ୟା ତ୍ୟାଗ କରିବେ ? ମୋ' ମିନତି ଅଳ୍ପ ସମୟ ପାଇଁ।"

ତିଷ୍ୟା ଦୀର୍ଘ ନିଶ୍ୱାସ ପକେଇଲେ। ତା'ପରେ ଈଷତ୍ ବିରକ୍ତ ଗଳାରେ ଜିଜ୍ଞାସା କଲେ, "କାହିଁକି ?"

"ଶଯ୍ୟା ତ୍ୟାଗ ନ କଲେ କହିବି କେମିତି। ଆପଣଙ୍କ ପାଦ ଧରୁଛି, ମୋ କଥା ଶୁଣନ୍ତୁ।"

ଯେମିତି ବାଧ ହୋଇ ତିଷ୍ୟା ଶଯ୍ୟାରେ ଉଠି ବସିଲେ, "କେତେଥର ମୁଁ କହିଛି ମୋତେ ତମେମାନେ ବିରକ୍ତ କରିବନି। କେହି ଶୁଣନାହିଁ ମୋ କଥା। ମୁଁ ଯେତେବେଳେ ଇଚ୍ଛା ଖାଇବି, ଶୋଇବି, ଉଠିବି—ତମର ସବୁ କଣ ଯାଉଛି ?"

ସୁପ୍‌ପବାସା କହିଲା, "ଠିକ୍ ଅଛି, ତାହା ହିଁ ହେବ। କିନ୍ତୁ ମୁକୁରରେ ନିଜର ଚେହେରା ଦେଖିଛନ୍ତି ?"

—"କଣ ହେବ ଦେଖି ?"

—"ଥରେ ଦେଖନ୍ତୁ", ସୁପ୍‌ପବାସା ନିଜେ ଗୋଟିଏ ଛୋଟ ମୁକୁର ଆଣି ତିଷ୍ୟାଙ୍କ ସାମ୍ନାରେ ଧରିବାରୁ ସେ ଚମକି ଉଠିଲେ। ତାଙ୍କ ଚକ୍ଷୁପଟଳ କମ୍ପିବାକୁ ଲାଗିଲା। ଅଧର ସ୍ଫୀତ ହେଲା, ମୁହୂର୍ତ୍ତକ ମଧରେ ଲୁହ ଝରି ଆସିଲା କପୋଳ ତିନ୍ତାଇ। ନିଜକୁ ନିଜେ କହିଲେ ସେ—"ଏ ମୋର କଣ ହୋଇଛି ! ଏ କଣ ମୁଁ ?"

—"କିଛି ହୋଇନି, ଦୁଇଦିନ ନିୟମିତ ଆହାର ଗ୍ରହଣ କଲେ ଆଉ ନିଦ୍ରା ଗଲେ ସବୁ ପୁଣି ପୂର୍ବଭଳି ହୋଇଯିବ। ସାନ ମୁହଁରେ ବଡ଼କଥା ଯଦି ନ ଧରନ୍ତି ତେବେ କହିବି ମାଛ ଥୋପ ଖାଉନି, ଏଇ ରାଗରେ କଣ ସୂତାଟାକୁ ଛିଣ୍ଡେଇ ପକେଇବେ ?" କଥାଟା କହିବାମାତ୍ରେ ସୁପ୍‌ପବାସା ନିମ୍ନମୁଖୀ ହେଲା। ଆଉ ସଙ୍ଗେ ସଙ୍ଗେ ତା ଆଡ଼କୁ ଚମକି ଚାହିଁଲେ ତିଷ୍ୟା।

ଏଇ ସାମାନ୍ୟ ପରିଚାରିକା ତାଙ୍କୁ କି କଥା ଶୁଣେଇଲା ! ସତରେ, ସେ ଚୋର ଉପରେ ରାଗି ଭୂଇଁରେ ଭାତ ଖାଉଥିଲେ। କିନ୍ତୁ କଣ କରି ପାରନ୍ତି ସେ ! ଜଣେ ସାମାନ୍ୟ ରମଣୀ କେମିତି ହାସଲ କରିପାରେ ସଂସ୍କାରକୁ ଜୟ କରିବାର ଅଧିକାର ? ତିଷ୍ୟା ସୁପ୍‌ପବାସା ଆଡ଼କୁ ଚାହିଁଲେ। ଝିଅଟିକୁ ବୁଦ୍ଧିମତୀ ବୋଲି ମନେହୁଏ। ହେଉନା ଜଣେ ସାଧାରଣ ପରିଚାରିକା, କିନ୍ତୁ କୌଶଳ ଅବଲମ୍ବନରେ ସେ ତ ତାଙ୍କୁ ସାହାଯ୍ୟ କରିପାରେ ! ସେ ଅଳସ ଗଳାରେ ଜିଜ୍ଞାସା କଲେ, "ଏବେ ମୁଁ କଣ କରିବି

କହତ ସୁପ୍ରପା ?''

—''ଧୈର୍ଯ୍ୟ ଧର ମହାରାଣୀ, ନିଜ ଉପରେ ଆସ୍ଥା ରଖ। ଚେଷ୍ଟା କଲେ ସାଫଲ୍ୟ ଦିନେ ନିଶ୍ଚୟ ଆସିବ। କିନ୍ତୁ ନିଜକୁ ଧ୍ୱଂସ କଲେ, କିଛି ବି ପାଇବନି।'' ତିଷ୍ୟା ଖିଆଲ କଲେ ନାହିଁ। ଏଇ ଅବକାଶରେ ସୁପ୍ରପାବାସା 'ଆପଣରୁ' 'ତୁମେ'କୁ ଉଠି ଆସିଲା। ସେ ବରଂ ଦେଖିଲେ ସୁପ୍ରପବାସା ଗଭୀର ଚିନ୍ତାରେ ମଗ୍ନ। ଖୁବ୍ ଭଲ ଲାଗିଲା ତାଙ୍କୁ। ଏଇ ପ୍ରଥମଥର କେହି ତାଙ୍କର ବ୍ୟକ୍ତିଗତ ସମସ୍ୟା ନେଇ ଏମିତି ଗଭୀରଭାବେ ଚିନ୍ତା କରୁଛି। ତା'ପରେ କିଛି ସମୟ ଗତ ହେଲା ପରେ ସୁପ୍ରପବାସା କହିଲା, ''ଗୋଟିଏ ଉପାୟ ଅଛି।''

''କଣ ?'' ଉଦ୍‌ଗ୍ରୀବ ହେଲେ ତିଷ୍ୟା।

''ରାଜକୁମାର ଭିକ୍ଷୁ ନୁହଁନ୍ତି, କିନ୍ତୁ ଗୃହପତିଙ୍କଠାରୁ ଉଚ୍ଚମାର୍ଗରେ ଅଛନ୍ତି। ତୁମେ ବରଂ ତାଙ୍କୁ କୁହ ତୁମର ଦୀକ୍ଷାର ବ୍ୟବସ୍ଥା କରିବାକୁ। ଉପଗୁପ୍ତ ଯଦି ତୁମକୁ ସେ ସୁଯୋଗ ଦିଅନ୍ତି ତେବେ ହୃଦୟ ନିଶ୍ଚୟ ଶାନ୍ତ ହେବ।'' ସୁପ୍ରପବାସା ଜଣେଇଲା।

ଦ୍ରୁତ ମୁଣ୍ଡ ହଲେଇଲେ ତିଷ୍ୟା, ''ଆଃ, ମୁଁ ସେ ଶାନ୍ତି ଚାହେଁ ନାହିଁ। ଦୁଇଶତ ବର୍ଷ ପୂର୍ବରୁ ଯାହାଙ୍କର ମହାପରିନିର୍ବାଣ ହୋଇଛି ସେ ମୋର ଈଶ୍ୱର ନୁହଁନ୍ତି। ମୋ ଈଶ୍ୱର ମାଟିର ମଣିଷ। ଏକଥା ତୋତେ ମୁଁ କେମିତି ବୁଝେଇବି ?''

—''ମୁଁ ବୁଝିଛି ମହାରାଣୀ। କିନ୍ତୁ ବିପଦ ତ ସେଇଠି।''

—''ବିପଦ ? କି ବିପଦ ?'' ତିଷ୍ୟାଙ୍କ କପାଳ କୁଞ୍ଚିତ ହେଲା। ଚକ୍ଷୁ ଛୋଟ ହୋଇ ଆସିଲା।

—''ସମ୍ରାଟ ତ ନିଶ୍ଚୟ, ସାଧାରଣ ପ୍ରଜାମାନେ ମଧ୍ୟ ଏକଥା ଶୁଣିଲେ ବିରୂପ ହେବେ।''

—''ବିରୂପ ହେବେ ? ହୁଅନ୍ତୁ। ମୁଁ କାହାକୁ କୈଫିୟତ ଦେବିନାହିଁ ଯଦି ତାଙ୍କୁ ପାଏ। ତମେମାନେ କେହି ଜାଣିନ, ତିରିଶ ବର୍ଷକାଳ ମୁଁ ଯେଉଁ ପୁରୁଷଙ୍କ କଳ୍ପନା କରି ଆସିଛି ସେ ଏଇ ଜରାଗ୍ରସ୍ତ ସମ୍ରାଟ ନୁହଁନ୍ତି, ସେ—ସେଇ ସୁଦର୍ଶନ ତରୁଣ ରାଜକୁମାର। ମୋର ସମସ୍ତ ସତ୍ତା ଯେ ତାଙ୍କପାଇଁ ହିଁ ଏତେକାଳ ଅପେକ୍ଷାରେ ଥିଲା ! ତାଙ୍କୁ ଦେଖିବା ପରେ ମୁଁ ଆଉ କଣ ସ୍ଥିର ରହିପାରେ ?'' ତିଷ୍ୟା ପୁଣି କାନ୍ଦି ପକେଇଲେ।

ସୁପ୍ରପବାସା, ସସ୍ନେହରେ ମହାରାଣୀଙ୍କ କେଶ ଠିକ୍ କରିଦେଲା, ''ମହାରାଣୀ ଅଧୀରା ହେଲେ କଣ ଚଳିବ ? ମନ କଥା ବ୍ୟକ୍ତ ନ କରି କୂଟ କୌଶଳ ସାହାଯ୍ୟରେ ରାଜକୁମାରଙ୍କୁ ଜୟ କରିବାକୁ ହେବ। ବ୍ୟାପାରଟା ସହଜ ନୁହେଁ। କିନ୍ତୁ ମୋ ଉପରେ ଆସ୍ଥା ରଖ।''

''ସୁପ୍ରପବାସା, ସେ ଯେତେବେଳଯାଏ ଏଇ ଛାତିରେ ମୁହଁ ନ ରଖିଛନ୍ତି, ସେତେବେଳଯାଏଁ ମୋ ଆତ୍ମା ଶାନ୍ତି ପାଇବ ନାହିଁରେ। ତୁ ମୋତେ ସାହାଯ୍ୟ



କର।''

ସୁପ୍ରବାସା ଉଠି ପଡ଼ିଲା, ''ଠିକ୍ ଅଛି। ବର୍ତ୍ତମାନ ଉଠ। ଅବଗାହନ କରି ଦ୍ରାକ୍ଷାରସ ପାନ କର। ଆଉ ହଁ, ସମ୍ରାଟଙ୍କ ଭ୍ରାତା ବୀତଶୋକ ତୁମର ସାକ୍ଷାତପ୍ରାର୍ଥୀ। ସେଦିନ ରାଜସଭାରେ ଉପସ୍ଥିତ ରହି ନ ପାରିବା ହିଁ ବୋଧହୁଏ ଏହାର କାରଣ। ଅନେକେ ଅନୁମାନ କରନ୍ତି ବୀତଶୋକ ପରବର୍ତ୍ତୀ ସମ୍ରାଟ ହୋଇ ପାରନ୍ତି। ମନ୍ତ୍ରୀ ଖଲ୍ଲାତକଙ୍କ ସହିତ ତାଙ୍କର ମଧୁର ସମ୍ପର୍କ ରହିଛି। ତେଣୁ ତୁମେ ଯେତେବେଳେ ବୀତଶୋକଙ୍କ ସହିତ କଥା ହେବ, ସେତେବେଳେ ଏମିତି କିଛି କୁହ ନାହିଁ ଯେଉଁଥିରେ ସେ ଅସନ୍ତୁଷ୍ଟ ହୁଅନ୍ତି।''

ତିଷ୍ୟା ହସି ପକେଇଲେ। ସୁପ୍ରବାସା ବର୍ତ୍ତମାନ ତାଙ୍କୁ ଉପଦେଶ ଦେଉଛି। କଣ କରିବାକୁ ହେବ ତା' ଶିକ୍ଷା ଦେଉଛି। ମଣିଷର ଦୁର୍ବଳତା ପ୍ରକାଶିତ ହେଲେ ତା'ର ସ୍ୱାଧୀନତା ଏଇଭଳି ଭାବେ କ୍ଷୁଣ୍ଣ ହୋଇଥାଏ। ହଉ, ସେଥିରେ ତିଷ୍ୟା କିଛି ମନେ କରୁନାହାଁନ୍ତି। କିନ୍ତୁ ଯେକୌଣସି ପରିମାଣରେ ସୁଦ୍ଧା ରାଜକୁମାରଙ୍କୁ ତାଙ୍କର ଦରକାର। ଏଥିପାଇଁ ଯେ କୌଣସି ମୂଲ୍ୟ ଦେବାକୁ ସୁଦ୍ଧା ସେ ପ୍ରସ୍ତୁତ।



ରାଣୀବେଶରେ ସଜ୍ଜିତା ତିଷ୍ୟା ଅପେକ୍ଷା କରିଥିଲେ ସୁଦୃଶ୍ୟ ଆସନରେ ଉପବେଶନ କରି। ପରିଚାରିକାଗଣ ଘୋଷଣା କରିଛନ୍ତି ବୀତଶୋକଙ୍କ ଆଗମନବାର୍ତ୍ତା।

ସମ୍ରାଟଙ୍କ କନିଷ୍ଠ ଭ୍ରାତା ବୀତଶୋକ ସୁପୁରୁଷ। ବୌଦ୍ଧ ଧର୍ମରେ ଦୀକ୍ଷିତ ହେବା ସତ୍ତ୍ୱେ ସର୍ବଦା ସେ ତଥାଗତଙ୍କୁ ଆଶ୍ରୟ କରି ନାହାଁନ୍ତି। ବୀତଶୋକ ଉଚ୍ଚାକାଂକ୍ଷୀ। ସେଇ ଆକାଂକ୍ଷା ଆହୁରି ବୃଦ୍ଧି ପାଏ ଖଲ୍ଲାତକଙ୍କ ସାହଚର୍ଯ୍ୟ ପାଇଲେ। ରାଜଧାନୀକୁ ପ୍ରତ୍ୟାଗମନ ପରେ ସେ ମହାରାଣୀଙ୍କ ଅଭିଷେକ ଖବର ପାଆନ୍ତି। ଧର୍ମସଭା ସମୟରେ ସେ ସମ୍ରାଟଙ୍କ ଆଦେଶରେ ଏତେଟା ବ୍ୟସ୍ତ ଥିଲେ ଯେ ନବୀନା ମହାରାଣୀଙ୍କ

ଉପସ୍ଥିତି ଜାଣି ସୁଦ୍ଧା ତତ୍‌ପର ହୋଇପାରି ନାହାଁନ୍ତି। ଅଭିଷେକ ସଭାରେ ଉପସ୍ଥିତ ରହି ନ ପାରିବା ପାଇଁ ତାଙ୍କର କୌଣସି କ୍ଷୋଭ ନ ଥିଲା। କିନ୍ତୁ ଖଲ୍ଲାତକ ତାଙ୍କୁ ବୁଝେଇଛନ୍ତି, ଯୁବରାଜଙ୍କ ଉଚିତ ମହାରାଣୀଙ୍କ ସହ ସୌଜନ୍ୟ ସାକ୍ଷାତ କରିବା। ଏଇ. ସାମ୍ରାଜ୍ୟର ସବୁଠାରୁ ସୁନ୍ଦରୀ ରମଣୀଙ୍କ ଦର୍ଶନ ତ ନିଶ୍ଚୟ, ତାଙ୍କର ଭବିଷ୍ୟତ କର୍ମପନ୍ଥା ମଧ୍ୟ ଏହି ସାକ୍ଷାତରୁ ହିଁ ନିୟନ୍ତ୍ରିତ ହୋଇପାରେ। ଏ ସବୁ କଥା ଶୁଣି ବୀତଶୋକ କୌତୂହଳୀ ହୋଇଛନ୍ତି। ସେ ମଧ୍ୟବୟସୀ ପୁରୁଷ, କିନ୍ତୁ ବର୍ତ୍ତମାନ ସୁଦ୍ଧା ମତି ଚଞ୍ଚଳ।

ଦୁଇଜଣ ପରିଚାରକଙ୍କ କାନ୍ଧରେ ଉପହାର ସାମଗ୍ରୀ ଲଦି ସେ ଉପସ୍ଥିତ ହେଲେ ଯଥା ସମୟରେ। ଅତିଥିମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କକ୍ଷରେ ପ୍ରବେଶ କରିବାମାତ୍ରେ ସେ ଚମକିତ ହେଲେ। ଏ କି ରୂପ! ଏ ରୂପ କଣ କୌଣସି ମାନବୀର ହୋଇପାରେ? ନିଜର ଜରାଗ୍ରସ୍ତ ଭ୍ରାତାଙ୍କୁ ଈର୍ଷା ଏବଂ କରୁଣା କରିବାକୁ ଲାଗିଲେ ସେ। କାରଣ ଏକଥା ସମସ୍ତେ ଜାଣନ୍ତି ସମ୍ରାଟ ଏ ପ୍ରାସାଦରେ ଅବାଞ୍ଛିତ। ଯୌବନ ଜରାକୁ ପାଖକୁ ଆସିବାକୁ ମନା କରିବା ହିଁ ସ୍ୱାଭାବିକ। କିନ୍ତୁ ଖଲ୍ଲାତକ ତାଙ୍କୁ ସାବଧାନ କରିଛନ୍ତି, ଏମିତି ବାକ୍ୟ କହିବ ନାହିଁ ଯାହା ମହାରାଣୀ ସ୍ୱଚ୍ଛନ୍ଦରେ ସମ୍ରାଟଙ୍କ କାନରେ ପହଞ୍ଚାଇ ଦେଇ ପାରନ୍ତି। ଖଲ୍ଲାତକଙ୍କ ଧାରଣା ଏଇ ରୂପସୀଙ୍କ ଚରିତ୍ରରେ ସର୍ପିଣୀର ମିଜାଜ୍ ଅଛି।

ଆଭୂମି ନତ ହୋଇ ବୀତଶୋକ କହିଲେ, "ମହାରାଣୀଙ୍କ ଜୟ ହେଉ। ମୁଁ ବୀତଶୋକ, ସମ୍ରାଟଙ୍କ କନିଷ୍ଠ ଭ୍ରାତା। ସେଦିନର ରାଜସଭାରେ ରାଜାଦେଶରେ ଅନୁପସ୍ଥିତ ରହିବାକୁ ପଡ଼ିଥିଲା ବୋଲି ଦୁଃଖିତ। ମହାରାଣୀ ମୋତେ ମାର୍ଜନା କରିବେ। ଏଇ ସାମାନ୍ୟ ସାମଗ୍ରୀ ଆପଣଙ୍କ ସେବାରେ ନିବେଦନ କରି ମୁଁ କୃତାର୍ଥ ବୋଧ କରୁଛି।"

ତିଷ୍ୟା ଆସନରେ ବସି ତାଙ୍କ ଦେବରକୁ ଲକ୍ଷ୍ୟ କରୁଥିଲେ। ତାଙ୍କର ଗୋଟିଏ ହାତ ଚିବୁକରେ। ଚକ୍ଷୁ ସତର୍କ। ଏଇ ଲୋକଟିକୁ ତାଙ୍କର ଆଦୌ ଭଲ ଲାଗୁନାହିଁ। ଯାଙ୍କ ଆଖି, ମୁହଁର ପେଶୀ, କଥା କହିବାର ଭଙ୍ଗୀ ସ୍ପଷ୍ଟ କହି ଦେଉଛି— ମନ ସରଳ ନୁହେଁ। ହୁଏତ ସମ୍ରାଟଙ୍କ ଚାଟୁକାରିତା କରିବାକୁ ସେ ଯେମିତି ଅଭ୍ୟସ୍ତ, ପୁଣି ପ୍ରୟୋଜନରେ ଛୁରିକାଘାତ କରିବାକୁ ମଧ୍ୟ ଦ୍ୱିଧା କରିବେ ନାହିଁ। ଏଭଳି ଲୋକମାନଙ୍କଠାରୁ ଦୂରେଇ ରହିବା ହିଁ ଭଲ।

ଅସ୍ୱସ୍ତି ବୋଧ କରୁଥିଲେ ତିଷ୍ୟା। ପୁଣି ସେ ନିଶ୍ଚିତ ନ ଥିଲେ ତାଙ୍କ ଭାବନା ଠିକ୍ କି ନୁହେଁ। ସେ ଅଳସ ସ୍ୱରରେ କହିଲେ, "ମୁଁ ସମ୍ମାନିତ ବୋଧ କରୁଛି। ତେବେ ଏ ସବୁ ଆଣିବାର କଣ ସେମିତି କିଛି ପ୍ରୟୋଜନ ଥିଲା?"

ବୀତଶୋକ କହିଲେ, "ଆପଣ ମହାରାଣୀ ପୁଣି ମୋର ସମ୍ମାନିତ ଆତ୍ମୀୟ, ପ୍ରଥମ ଦର୍ଶନରେ ଏଇ ସାମାନ୍ୟ ଉପହାର ଦେଇପାରି ମୁଁ ଧନ୍ୟ।"

ତିଷ୍ୟାଙ୍କର ଓଠରେ ହସ ଫୁଟିଉଠିଲା। ଲୋକଟି ଧୂର୍ତ୍ତ, କିନ୍ତୁ କେତେଦୂର କୁଟିଳ? ସେ ମସ୍ତକ ଆନ୍ଦୋଳିତ କଲେ, "ଆପଣଙ୍କ ନାମ ମୁଁ ଶୁଣିଛି। ଆପଣ ହିଁ ସମ୍ରାଟଙ୍କ ସେଇ ସୌଭାଗ୍ୟବାନ ଭ୍ରାତା, ଯିଏ ବର୍ତ୍ତମାନ ସୁଦ୍ଧା ଜୀବିତ! ନୁହେଁ?"

ବୀତଶୋକଙ୍କ ମୁହଁରେ ହଠାତ୍ କଳାଛାୟା ପଡ଼ିଲା। ଏଇଟା ତାଙ୍କ ଯନ୍ତ୍ରଣାର ସ୍ଥାନ। ନିଜ ଭାଇମାନଙ୍କ ମୃତ୍ୟୁ ସେ ଦେଖିଛନ୍ତି। ସମ୍ରାଟ ହେବାର ବାସନାରେ ଜ୍ୟେଷ୍ଠ ଜଣକ ପରେ ଜଣେ ଭ୍ରାତାଙ୍କୁ ହତ୍ୟା କରିଛନ୍ତି। କୌଣସି ଅଲୌକିକ ହସ୍ତକ୍ଷେପ ଅଥବା ନିତାନ୍ତ ହିଁ ବାଳକ ଥିଲେ ବୋଲି ସେ ରକ୍ଷା ପାଇଯାଆନ୍ତି। କିନ୍ତୁ ବର୍ତ୍ତମାନ ଜରାଗ୍ରସ୍ତ ସମ୍ରାଟଙ୍କ ଆଡ଼କୁ ଚାହିଁ ତାଙ୍କର ମନେ ହୁଏ ଘଟଣାଟା ତାଙ୍କ ପକ୍ଷରେ ଆଶୀର୍ବାଦ ସ୍ୱରୂପ। ସମ୍ରାଟ ଆଉ କିଛିଦିନ ମଧ୍ୟରେ ଅଶକ୍ତ ହୋଇ ପଡ଼ିବେ। ବର୍ତ୍ତମାନ ତାଙ୍କ ସମ୍ମୁଖରେ ଅନ୍ୟ ଭ୍ରାତାମାନେ ପ୍ରତିଦ୍ୱନ୍ଦ୍ୱୀ ଭାବରେ ଉପସ୍ଥିତ ନାହାଁନ୍ତି। ପଥ ପରିଷ୍କାର କରିଦେବା ପାଇଁ ସେ ସମ୍ରାଟଙ୍କ ନିକଟରେ କୃତଜ୍ଞ। କିନ୍ତୁ ମହାରାଣୀ ହଠାତ୍ ସେଇ ମୃତ ଘଟଣାର ସ୍ମୃତି ଟାଣି ଆଣିଲେ କାହିଁକି? ଉଦ୍ଦେଶ୍ୟଟା ଅନୁଧାବନ କରି ପାରିଲେ ନାହିଁ। କହିଲେ, "ମୁଁ ମହାରାଣୀଙ୍କ ବାକ୍ୟାର୍ଥ ଅନୁଧାବନ କରିପାରୁ ନାହିଁ।"

ତିଷ୍ୟା କହିଲେ, "ଏତ ଅତ୍ୟନ୍ତ ସରଳ କଥା। ଆପଣଙ୍କ ଶତାଧିକ ଭ୍ରାତାଙ୍କ ମଧ୍ୟରୁ କେବଳ ସମ୍ରାଟ ଆଉ ଆପଣ ଜୀବିତ, ମୁଁ ସେଇ କଥା ହିଁ କହୁଥିଲି। ଏଥିରେ ଦୁର୍ବୋଧ କିଛି ଅଛି ବୋଲି ମନେ ହୁଏ ଆପଣଙ୍କର?"

ବୀତଶୋକ ମୁଣ୍ଡ ହଲେଇଲେ, "ନା। ମହାରାଣୀଙ୍କ ଅନୁମାନ ଯଥାର୍ଥ।"

ତିଷ୍ୟା କହିଲେ, ଆପଣ ତ ଉପଗୁପ୍ତଙ୍କ ଶିଷ୍ୟ; ନୁହେଁ କି?

ବୀତଶୋକ ଜଣେଇଲେ, "ନିଶ୍ଚୟ। ସେ ତଥାଗତଙ୍କ ଅଂଶ ନେଇ ଏ ପୃଥିବୀକୁ ଆସିଛନ୍ତି। ତଥାଗତ ତାଙ୍କ ଅସମ୍ପୂର୍ଣ୍ଣ କାର୍ଯ୍ୟ ଉପଗୁପ୍ତଙ୍କ ମାଧ୍ୟମରେ ସମ୍ପୂର୍ଣ୍ଣ କରିବାକୁ ଚାହାଁନ୍ତି। ତଥାଗତଙ୍କ ଆଶୀର୍ବାଦ ଆମେ ଉପଗୁପ୍ତଙ୍କ ମାଧ୍ୟମରେ ହିଁ ପାଇଥାଉ।"

ତିଷ୍ୟା ହସିଲେ, "ମୁଁ ମଧ୍ୟ ତାଙ୍କ ଦର୍ଶନ ପାଇଛି। ସତରେ ପାଟଳିପୁତ୍ରର ଲୋକେ ଭାଗ୍ୟବାନ। କିନ୍ତୁ ଉପଗୁପ୍ତଙ୍କ ଶିଷ୍ୟ ହେବା ସତ୍ତ୍ୱେ ଆପଣ ଶିକାରରେ ଅତ୍ୟନ୍ତ ଦକ୍ଷ ବୋଲି ମୁଁ ଶୁଣିଛି। ରକ୍ତକ୍ଷୟରେ ଆପଣଙ୍କର ଆପତ୍ତି ନାହିଁ। ଅବଶ୍ୟ ଏସବୁ ମୋର ଶୁଣିବା କଥା। ଆଉ ସେଇଥିପାଇଁ ମୋର ମନେହେଲା, ଆପଣ ସବୁକିଛି ଅନ୍ଧ ଭାବରେ ଗ୍ରହଣ କରନ୍ତି ନାହିଁ, ନିଜସ୍ୱ ଭଲ ଲାଗିବା ନ ଲାଗିବା ମଧ୍ୟ ଆରୋପ କରନ୍ତି। ନୁହେଁ କି?"

''ନିଶ୍ଚୟ।'' ବୀତଶୋକ ପୁଲକିତ ହେଲେ। ତାଙ୍କର ଏଇ ଶିକାର ନିଶା ବୌଦ୍ଧମାନେ ସମର୍ଥନ କରନ୍ତି ନାହିଁ। କିନ୍ତୁ ଶିକାରରେ ତାଙ୍କର ଅଦ୍‌ଭୁତ ଆନନ୍ଦ ହୁଏ। ସେ ହସିହସି କହିଲେ, ''ଆପଣ ଠିକ୍ ଧରିଛନ୍ତି। ଯେ କୌଣସି ବସ୍ତୁରୁ ହିଁ ଆମେ ପ୍ରକୃତ ଶିକ୍ଷା ପାଇପାରୁ। ଶିକାର କରିବାକୁ ଯାଇ ମୁଁ ବହୁଜ୍ଞାନ ଅର୍ଜନ କରିଛି। ସେଥିରୁ ଗୋଟିଏ ଆପଣଙ୍କୁ କହୁଛି। କିଛିଦିନ ପୂର୍ବେ ମୁଁ ଗୋଟାଏ ଘଞ୍ଚ ଜଙ୍ଗଲକୁ ହରିଣ ଶିକାର ପାଇଁ ଯାଇଥିଲି। ବହୁଦୂର ବିଚରଣ କରିବା ପରେ ଦଳରୁ ବିଚ୍ଛିନ୍ନ ହୋଇ ହଠାତ୍ ଜଣେ ସାଧୁଙ୍କ ଦେଖାପାଇଲି। ତାଙ୍କୁ ମୁଁ ଜିଜ୍ଞାସା କଲି, ସେ କଣ ଆହାର କରନ୍ତି? ସାଧୁ ସ୍ମିତ ହସି କହିଲେ, ଫଳମୂଳ ଆହାର କରି ସେ ଚଳିଯାନ୍ତି। ସେ ଗଛର ବକ୍‌କଳ ତିଆରି ପୋଷାକ ପରିଧାନ କରି ଲଜ୍ଜା ନିବାରଣ କରନ୍ତି। ଘାସର ଶଯ୍ୟାରେ ଆରାମରେ ଶୟନ କରନ୍ତି। କି ସୁନ୍ଦର ଜୀବନ! କୌଣସି ଚିନ୍ତା ନାହିଁ, ଦାୟିତ୍ୱ ନାହିଁ, ପୂରାପୂରି ମୁକ୍ତ। ହଠାତ୍ କଣ ମନକୁ ଆସିଲା, ଜିଜ୍ଞାସା କଲି, ତାଙ୍କର କଣ କୌଣସି ମନସ୍ତାପ ଅଛି, ଯାହା ମଝିରେ ମଝିରେ ମନରେ ଅନୁଶୋଚନା ଆଣେ? ସାଧୁ କହିଲେ, ହଁ, ତାଙ୍କର ଅନୁଶୋଚନା ହୁଏ। ଯେତେବେଳେ ବେଗବତୀ ହରିଣୀମାନେ ଋତୁକାଳରେ ମିଳିତ ହୁଅନ୍ତି, ସେମାନଙ୍କ ଆଡ଼କୁ ଚାହିଁଲେ ତାଙ୍କ ଆକାଙ୍‌କ୍ଷା ଟଳଟଳ କରେ। ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଯଦି ଏଇ ସଂସାରତ୍ୟାଗୀ ସନ୍ନ୍ୟାସୀ ତାଙ୍କ କଠୋର ଅନୁଶାସନ ସତ୍ତ୍ୱେ କାମନା ଦମନ କରି ନ ପାରନ୍ତି, ତେବେ ଶ୍ରମଣମାନଙ୍କର କଣ ହେବ? ସେମାନେ ତ ସଂସାରରୂପୀ ଫୁଲର ପାଖୁଡ଼ା ମାତ୍ର। ଜାଣନ୍ତି, ଏଇ ଘଟଣା ମୁଁ ସମ୍ରାଟଙ୍କୁ କହିଥିଲି। ସେ ମୋତେ ତଥାଗତଙ୍କ ବାଣୀ ଅନୁଧାବନ କରିବାକୁ କହିଥିଲେ। ମୋ ମନରୁ ସମସ୍ତ କୌତୂହଳ ନିର୍ବାପିତ କରିବାକୁ ଚାହିଁଥିଲେ ସେ। କିନ୍ତୁ ଗୋଟିଏ ମଣିଷ କୌତୂହଳ ବିନା କେମିତି ଜୀବିତ ରହିପାରେ?''

ନିବିଷ୍ଟ ଚିତ୍ତରେ ତିଷ୍ୟା ଗଳ୍ପ ଶୁଣୁଥିଲେ। ବୀତଶୋକଙ୍କର ହୁଏତ ଏମିତି ଅଭିଜ୍ଞତା ହୋଇଥାଇପାରେ। କିନ୍ତୁ ସେ କଥା ଜଣେ ସୁନ୍ଦରୀ ରମଣୀ, ଯିଏ ପୁଣି ସମ୍ପର୍କରେ ତାଙ୍କର ଅଗ୍ରଜା ଏବଂ ମହାରାଣୀ, ତାଙ୍କ ସମ୍ମୁଖରେ ବ୍ୟକ୍ତ କଲାବେଳେ ରୁଚିକୁ ବାଧୁନାହିଁ! ଗଳ୍ପଟିର ସାରାଂଶ— ସାଧନା ଫାଧନା ସବୁ ମିଥ୍ୟା, ପ୍ରବୃତ୍ତି ନିକଟରେ ମଣିଷକୁ ପରାଜୟ ସ୍ୱୀକାର କରିବାକୁ ହିଁ ପଡ଼େ। ତିଷ୍ୟା ଏଇ ଗଳ୍ପର ଉତ୍ତରରେ ବୀତଶୋକଙ୍କୁ ବହୁ କାହାଣୀ ଶୁଣେଇ ପାରିଥାନ୍ତେ। ସ୍ୱୟଂ ବୁଦ୍ଧଙ୍କ ଜୀବନରେ ହିଁ ତ ବିଚିତ୍ର ଅଭିଜ୍ଞତା ଅଛି। ଯିଏ ସୁନ୍ଦରୀ ରମଣୀକୁ ଅବହେଳାରେ ଲକ୍ଷାଧିକ ମୂଲ୍ୟର ରତ୍ନହାର ଦେଇ ଭାବି ପାରନ୍ତି, ଏଇ ଶରୀରଟା ବି ଜୀର୍ଣ୍ଣ, ତଥାପି ମଣିଷ ତା'ରି ଯତ୍ନ ପାଇଁ କେତେ ପାଗଳାମି ନ କରେ! ସେଇ ବୁଦ୍ଧଙ୍କ ଶିଷ୍ୟ ହୋଇ ସୁଦ୍ଧା ବୀତଶୋକଙ୍କ ଚିନ୍ତାରେ ଏଇ ଜାଗତିକ ଆନନ୍ଦର ଲୋଭ ଅହରହ ଚୋଟ ମାରୁଛି।

ତିଷ୍ୟା ବୁଝିପାରିଲେ, ଏଇ ଲୋକଟିଙ୍କୁ ନେଇ ସେ ସ୍ୱଇଚ୍ଛାରେ ଖେଳ ଖେଳିପାରନ୍ତି। ସେ ବୀତଶୋକଙ୍କୁ ସମର୍ଥନ କରି ମସ୍ତକ ଆନ୍ଦୋଳିତ କଲେ, ‘‘ଅତ୍ୟନ୍ତ ସତ କଥା। ଆପଣଙ୍କର କଣ ମନେ ହୁଏ ସମ୍ରାଟଙ୍କ କୌତୂହଳ ଅବଶିଷ୍ଟ ଅଛି ?’’

ଦ୍ରୁତ ମୁଣ୍ଡ ହଲେଇଲେ ବୀତଶୋକ, ‘‘ଏକମାତ୍ର ତଥାଗତ ଏବଂ ତାଙ୍କ ଆଦେଶ ବ୍ୟତୀତ ସମ୍ରାଟ ଅନ୍ୟ ସବୁ ବିଷୟରେ ନିସ୍ପୃହ। ମୁଁ ତ ଭାବିପାରୁ ନାହିଁ ଏଇଭଳି ସୁନ୍ଦରୀ ପତ୍ନୀଙ୍କ ଉପସ୍ଥିତି ସେ କେମିତି ଭୁଲି ରହନ୍ତି।’’

ତିଷ୍ୟା କହିଲେ, ‘‘ରହନ୍ତି ନାହିଁ, ରହିବାକୁ ବାଧ୍ୟ ହୁଅନ୍ତି। ମୋ ସହିତ ତାଙ୍କର ଚୁକ୍ତି ରହିଛି, ବିନାନୁମତିରେ ଏଇ ପ୍ରାସାଦକୁ ସେ ପ୍ରବେଶ କରିବେ ନାହିଁ। ଇଚ୍ଛା ହେଲେ ମଧ୍ୟ ତା’ଦମନ କରିବାକୁ ହେବ। କାରଣ ଜିଜ୍ଞାସା କରିବେ ?’’

ବୀତଶୋକ ତ୍ରସ୍ତ ଆଖିରେ ଚାରିପାଖକୁ ଚାହିଁଲେ, ‘‘ସେ କଥା ସମସ୍ତେ ଜାଣନ୍ତି ମହାରାଣୀ, ଉଚିତ କାର୍ଯ୍ୟ କରିଛନ୍ତି। ଏଇ ଲୋଳଚର୍ମ ବୃଦ୍ଧଙ୍କୁ ଆପଣଙ୍କ ପାଖରେ ସହ୍ୟ କରିହୁଏ ନାହିଁ। ତା’ଛଡ଼ା ସମ୍ରାଟ ଯେଉଁ ହାରରେ ଧର୍ମ କର୍ମ କରୁଛନ୍ତି, ସେଥିରେ ମନେ ହୁଏ ନାହିଁ ସେ ଅଧିକ ଦିନ ଆମ ଗହଣରେ ରହିବେ।’’

ତିଷ୍ୟା ଏତେବେଳକୁ ଖୁସି ହେଲେ। ଗର୍ତ୍ତ ମଧ୍ୟରୁ କର୍କଟ ଯେମିତି ଖାଦ୍ୟବସ୍ତୁ ଲୋଭରେ ବହୁ ପ୍ରତୀକ୍ଷା ପରେ ଧୀରେ ଧୀରେ ବାହାରି ଆସି ଝାମ୍ପି ନେବାକୁ ପ୍ରସ୍ତୁତ ହୁଏ, ବୀତଶୋକ ବର୍ତ୍ତମାନ ଠିକ୍ ସେଇ ଅବସ୍ଥାରେ। ବର୍ତ୍ତମାନ ତାଙ୍କୁ ଆହତ କଲେ ସତ୍ୟ ବାହାରି ଆସିବ। ତିଷ୍ୟା ଅପ୍ରୟୋଜନରେ ଏମିତି ଉପବେଶନ କରିବାର ଭଙ୍ଗୀ ପରିବର୍ତ୍ତନ କଲେ ଯେମିତି ବୀତଶୋକଙ୍କ ମନର ସବୁ ଅର୍ଗଳ ଖୋଲିଯିବ। ସେ କହିଲେ, ‘‘ସମ୍ରାଟଙ୍କ ଅନ୍ତେ ଏଇ ସାମ୍ରାଜ୍ୟର ସିଂହାସନ ନେଇ ସମସ୍ୟା ଦେଖା ଦେଇପାରେ। ରାଜକୁମାରମାନେ ଦେଶାନ୍ତରରେ, ଅବଶ୍ୟ ସାନ ରାଜକୁମାର ଏଠାରେ ଅଛନ୍ତି। ତାଙ୍କ କଥା ମୁଁ ବିଶେଷ ଜାଣିନାହିଁ।’’

ବୀତଶୋକ କହିଲେ, ‘‘ରାଜନୀତିର ସେ କିଛି ବୁଝନ୍ତି ନାହିଁ। ଅସ୍ତ୍ର ଧରିନାହାଁନ୍ତି ଜୀବନରେ। ସମ୍ରାଟଙ୍କ ଖୁବ୍ ପ୍ରିୟ। କାରଣ ଉପଗୁପ୍ତ କହିଛନ୍ତି ରାଜକୁମାର କୁଆଢ଼େ ତଥାଗତଙ୍କ ଆଶୀର୍ବାଦ-ଧନ୍ୟ। କିନ୍ତୁ ସେଥିରେ ତ ଆଉ ଏତେ ବଡ଼ ରାଜ୍ୟ ଶାସନ କରିହୁଏ ନାହିଁ। ତା’ଛଡ଼ା ସେଇ କଳିଙ୍ଗ ଯୁଦ୍ଧ ପରଠାରୁ ଏଇ ସାମ୍ରାଜ୍ୟର ଆୟତନ ସ୍ଥିର ହୋଇ ରହିଛି। ଗୋଦାବରୀ ସେପଟରେ ବିଶାଳ ଭୂଖଣ୍ଡ ସ୍ୱାଧୀନ ହୋଇ ରହିଛି। ସେମାନଙ୍କୁ ଦେଖି ଦେଶର ବିଭିନ୍ନ ସ୍ଥାନରେ ବିଦ୍ରୋହର ପ୍ରସ୍ତୁତି ଯେ ଚାଲୁନାହିଁ, ସେକଥା କିଏ କହିବ ? କନିଷ୍ଠ କୁମାରଙ୍କ ସାଧ୍ୟ ନାହିଁ ଏସବୁ ସମସ୍ୟା ସମାଧାନ କରିବେ। ଜ୍ୟେଷ୍ଠ ରାଜକୁମାର କୁଆଢ଼େ ଭିକ୍ଷୁ ହୋଇ ରହିଛନ୍ତି ବିଦେଶରେ। ସତରେ ଚିନ୍ତାର ବିଷୟ।’’

ତିଷ୍ୟା ଗମ୍ଭୀର ଗଳାରେ କହିଲେ, "ମୁଁ ତ କେବଳ ଆପଣଙ୍କୁ ହିଁ ସୁସ୍ଥ, ସତେଜ ଏବଂ ବୁଦ୍ଧିମାନ ବୋଲି ଅନୁମାନ କରୁଛି। ତେବେ କାଞ୍ଚନମାଳା ଯଦି କୁମାରଙ୍କୁ କୌଣସି ପରାମର୍ଶ ଦିଏ, ତେବେ"...

ବୀତଶୋକ ପ୍ରଫୁଲ୍ଲ ସ୍ୱରରେ କହିଲେ, "ନା, ନା। ସେତ ନିତାନ୍ତ ଇ ବାଳିକା। ତାର ଏଭଳି ମନ୍ତ୍ରଣା ଦେବାର କ୍ଷମତା ନାହିଁ। ଅବଶ୍ୟ ପ୍ରଜାମାନେ ଚାହିଁବେ ରାଜକୁମାର ହିଁ ସିଂହାସନରେ ଆସୀନ ହୁଅନ୍ତୁ। କାରଣ ନରମ ପ୍ରକୃତିର ଲୋକମାନେ ହିଁ ସ୍ନେହ ଆକର୍ଷଣ କରିଥାନ୍ତି।"

ତିଷ୍ୟା ହସିଲେ, "ଆପଣ ସ୍ଥିର ରହନ୍ତୁ। ଇତିହାସ ଭିନ୍ନ କଥା କହିବ। ତେବେ କନିଷ୍ଠ କୁମାରଙ୍କ ସହ ମୁଁ ନିଭୃତରେ କଥା ହେବାକୁ ଚାହେଁ।"

ବୀତଶୋକ ଉତ୍ତେଜିତ, "ବର୍ତ୍ତମାନ ଡକେଇ ପଠଉଛି ତାଙ୍କୁ।"

ବାଧାଦେଲେ ତିଷ୍ୟା, "ନା। ସମସ୍ତେ ତେବେ ଜାଣିଯିବେ। ଆଉ ତା'ହେଲେ ଆପଣଙ୍କର ହିଁ ଅପକାର ହେବ। ସେ ବ୍ୟବସ୍ଥା ମୁଁ କରିବି। ଆଉ ହଁ, ଖଲ୍ଲାତକଙ୍କ ସହିତ ଏସବୁ କଥା ବିସ୍ତାରିତ ଭାବେ ଆଲୋଚନା କରିବାର ପ୍ରୟୋଜନ ନାହିଁ।"

ବୀତଶୋକ କହିଲେ, "ଖଲ୍ଲାତକଙ୍କ ଇଚ୍ଛା ଗୋଦାବରୀ ସେ ପଟକୁ ସୈନ୍ୟଚାଳନା କରିବା। ତାଙ୍କ ଧାରଣା ବସି ବସି ସୈନ୍ୟମାନେ ଯୁଦ୍ଧ ଭୁଲିଯାଉଛନ୍ତି। କିନ୍ତୁ ସମ୍ରାଟ ଏ ବ୍ୟାପାରରେ ତୀବ୍ର ଆପତ୍ତି ଜଣାଇଛନ୍ତି। କୌଣସି ରକ୍ତକ୍ଷୟୀ ଯୁଦ୍ଧାଭିଯାନରେ ସେ ସମ୍ମତି ଦେବେ ନାହିଁ। ମୋର ତ ମଝିରେ ମଝିରେ ମନେ ହୁଏ, ହିଂସ୍ର ହେବିନି, କିନ୍ତୁ ରାଜା ହେବି—ଏହା ଅବିଶ୍ୱାସ୍ୟ। ଖଲ୍ଲାତକ ଠିକ୍ ହିଁ କହୁଛନ୍ତି।"

ତିଷ୍ୟା ସମ୍ମତି ଜଣାଇଲେ, "ଆପଣ ଖଲ୍ଲାତକଙ୍କୁ ଧୀରେ ଧୀରେ ପ୍ରସ୍ତୁତ ହେବାକୁ କହନ୍ତୁ। କିନ୍ତୁ ମନେ ରଖିବେ ଯେ ସେ ଆପଣଙ୍କ ରକ୍ତ-ସମ୍ପର୍କରେ କିମ୍ବା ପ୍ରେମର ବନ୍ଧନରେ ବାନ୍ଧି ହୋଇ ନାହାଁନ୍ତି। ଏଇ ସାମ୍ରାଜ୍ୟର ମନ୍ତ୍ରୀ ଭାବରେ କାର୍ଯ୍ୟ କରି ତାଙ୍କ ମନରେ ମଧ ଲୋଭ ଆସିପାରେ। ଅତଏବ ତାଙ୍କ ନିକଟରେ ମଧ ମନକଥା ଗୋପନ ରଖନ୍ତୁ।"

ବୀତଶୋକ ଏତେଟା ଆନନ୍ଦିତ କେବେ ହୋଇନାହାଁନ୍ତି। ଏଇ ସୁନ୍ଦରୀ ରମଣୀ ଆଡ଼କୁ ଯେତେଥର ସେ ଚାହୁଁଛନ୍ତି, ସେତେଥର ଏକ ଅଦୃଶ୍ୟ ଚୁମ୍ବକର ଆକର୍ଷଣ ଅନୁଭବ କରୁଛନ୍ତି। ରୂପସୀ ନାରୀର ଯଦି ବ୍ୟକ୍ତିତ୍ୱ ଥାଏ, ତେବେ କୌଣସିମତେ ତାକୁ ଉପେକ୍ଷା କରି ହୁଏନାହିଁ। ସେ ତିଷ୍ୟାଙ୍କ ନିକଟରେ ନିଜକୁ ସମର୍ପଣ କଲେ ମନେମନେ। କହିଲେ, "ମହାରାଣୀ ଯା' ଆଦେଶ କରିବେ, ମୁଁ ତାହା ହିଁ କରିବି। ଆପଣ ଯଦି ମୋ ପାଖରେ ଠିଆ, ହୁଅନ୍ତି ତେବେ ସମସ୍ତ ବାଧା ମୁଁ ଅନାୟାସରେ ଅତିକ୍ରମ କରିବି। ମୁଁ ଚିରକୃତଜ୍ଞ ରହିବି।"

ତିଷ୍ୟା ଏଥର ଓଷ୍ଠ ଦଂଶନ କଲେ, "ଖୁସି ହେଲି। କିନ୍ତୁ ମୁଁ କ'ଣ ପାଇବି?"

ବୀତଶୋକ ଦୁଇହାତ ପ୍ରସାରିତ କରି କହିବାକୁ ଯାଉଥିଲେ, "ମହାରାଣୀଙ୍କୁ ଅଦେୟ..."

କିନ୍ତୁ ତିଷ୍ୟା ତାଙ୍କୁ ରୋକି ଦେଇ କହିଲେ, "ଥାଉ। ଭଲ କଥା ପ୍ରକାଶ କରିବାର ନୁହେଁ। ତେବେ ଆପଣ ଘନଘନ ଏଠିକି ଆସିବେ ନାହିଁ। ଅତ୍ୟନ୍ତ ପ୍ରୟୋଜନ ବୋଧ କଲେ ମୁଁ ଆପଣଙ୍କୁ ଡାକି ପଠେଇବି। ଅକାରଣେ ସନ୍ଦେହ ଉଦ୍ରେକରେ କୌଣସି ଲାଭ ହେବ ନାହିଁ।"

ବୀତଶୋକଙ୍କୁ ଭଲ ଲାଗିଲା ନାହିଁ ଏ ନିର୍ଦ୍ଦେଶ। ମହାରାଣୀଙ୍କୁ ଥରେ ଦର୍ଶନ କଲାପରେ ଅନିର୍ଦ୍ଦିଷ୍ଟକାଳ ନ ଦେଖି ରହିପାରିବା କଣ ସମ୍ଭବ? ସେ କହିଲେ, "ସମ୍ରାଟ ବର୍ତ୍ତମାନ ଏସବୁ ଚିନ୍ତାର ଊର୍ଦ୍ଧ୍ୱରେ। ମହାରାଣୀ ନିଶ୍ଚିନ୍ତ ରହନ୍ତୁ।"

ତିଷ୍ୟା କହିଲେ, "ମୁଁ ସମ୍ରାଟଙ୍କ କଥା ଚିନ୍ତା କରୁନାହିଁ। ଖଲ୍ଲାତକଙ୍କୁ ବୁଝେଇବାକୁ ପଡ଼ିବ ଆପଣ ତାଙ୍କ ବନ୍ଧୁ। ସେ ସନ୍ଦେହପରାୟଣ ହେଲେ କାର୍ଯ୍ୟ ଉଦ୍ଧାର ହେବ ନାହିଁ। ଆପଣ ତାଙ୍କ ସହିତ ସୁସମ୍ପର୍କ ରଖି ଚାଲିବେ, କିନ୍ତୁ ପ୍ରକାଶିତ ହେବେ ନାହିଁ।"

ପ୍ରୀତ ଏବଂ ସନ୍ତୁଷ୍ଟ ବୀତଶୋକ ଚାଲିଯିବା ପରେ ତିଷ୍ୟାଙ୍କ ହୃଦୟରେ ତୃପ୍ତି ଆସିଲା। ଶତରଞ୍ଜ ଖେଳରେ ଓହ୍ଲେଇବାକୁ ପଡ଼ିଛି ତାଙ୍କୁ। ବୀତଶୋକ ବା ଖଲ୍ଲାତକ ସାମାନ୍ୟ ସୈନ୍ୟ କି ଗଜ ମାତ୍ର। ଅସଲ ଲକ୍ଷ୍ୟ ତଥାଗତଙ୍କ ଆଡୁଆଳ ଖୋଜୁଥିବା ରାଜକୁମାର! କିସ୍ତି ଦେବାକୁ ପଡ଼ିବ ଏମିତି ଭାବରେ, ଯେମିତି ଅନ୍ୟତ୍ର ଯିବାର ବାଟ ଖୋଲା ନ ରହେ।

ଦ୍ୱିତୀୟ ଥର ପ୍ରତ୍ୟାଖ୍ୟାତା ହେଲେ ତିଷ୍ୟା।

ସାରଙ୍ଗନାଥରେ ସମ୍ରାଟ ଅନେକଗୁଡ଼ିଏ ସ୍ତୂପ ନିର୍ମାଣ କରେଇଥିଲେ। ସେଗୁଡ଼ିକ ଦେଖାଶୁଣା ପାଇଁ ରାଜକୁମାର ଯାଇଥିଲେ ସାରଙ୍ଗନାଥ। ସାରଙ୍ଗନାଥ ସମ୍ପର୍କରେ ରାଜକୁମାରଙ୍କ ଆଗ୍ରହ ଓ ଶ୍ରଦ୍ଧା ସୁବିଦିତ। ଶାକ୍ୟମୁନି ସେଠାରେ ହିଁ ସଂଘ ପ୍ରତିଷ୍ଠା କରନ୍ତି। ପୃଥିବୀ ଇତିହାସରେ ସେଇଟି ହିଁ ପ୍ରଥମ ବିଧିବଦ୍ଧ ସଂଘ। ବାରାଣାସୀର ପଞ୍ଚାବନ ଜଣ ଏବଂ ସଙ୍ଗୀ ପାଞ୍ଚଜଣ ଶିଷ୍ୟଙ୍କୁ ସେଇଠାରେ ହିଁ ତଥାଗତ ଭିକ୍ଷୁତ୍ୱ ପ୍ରଦାନ କରନ୍ତି। ତଥାଗତଙ୍କ ଧର୍ମପ୍ରବର୍ତ୍ତନ ସୂତ୍ର ଏଇଠାରେ ହିଁ ପ୍ରଚାରିତ ହୁଏ।

କଠୋର କୃଚ୍ଛ୍ର ସାଧନା ଯେମିତି ବର୍ଜନ କରାହୋଇଥିଲା, ସେମିତି ଭୋଗବିଳାସପୂର୍ଣ୍ଣ ହୀନ-ଜୀବନ ମଧ୍ୟ ପରିତ୍ୟାଗ କରି ଆର୍ଯ୍ୟାଷ୍ଟାଙ୍ଗିକ ମାର୍ଗର ପ୍ରଚାର କରାହୁଏ ସାରଙ୍ଗନାଥରେ ।

ରାଜକୁମାରଙ୍କ ନିକଟରେ ତେଣୁ ସାରଙ୍ଗନାଥ ଅତି ପବିତ୍ର ତୀର୍ଥ । ଧର୍ମରାଜିକ ସ୍ତୂପ ସମ୍ମୁଖରେ ଠିଆ ହେଲେ ହେଁ ମନେହୁଏ ତଥାଗତଙ୍କ ସ୍ପର୍ଶ ମିଳୁଛି । ତା'ରି ମଧ୍ୟରେ ରକ୍ଷିତ ହୋଇଛି ତଥାଗତଙ୍କ ପୂତାସ୍ଥି । ଧାମେକ ସ୍ତୂପରେ ବିଶେଷ ପ୍ରସ୍ତର ଗାତ୍ରରେ ଉତ୍କୀର୍ଣ୍ଣ ରହିଛି ତଥାଗତଙ୍କ ସଂକ୍ଷିପ୍ତ ଅଥଚ ସିନ୍ଧୁସମାନ ଧର୍ମତତ୍ତ୍ୱ—

"ଯେ ଧମ୍ମା ହେତୁପ୍ପଭବା ତେସଂ ହେତୁଂ ତଥାଗତୋ ଆହ ।
ତେସଞ୍ଚ ଯୋ ନିରୋଧା ଏବଂବାଦୀ ମହାସମଣୋ ।"

ରାଜକୁମାର ଏହି ସତ୍ୟଟି ଗଭୀରଭାବେ ବିଶ୍ୱାସ କରନ୍ତି, ଯେ ସମସ୍ତ ଧର୍ମ ହେତୁରୁ ଉଦ୍‌ଭୂତ ହୋଇଛି ମହାଶ୍ରମଣଙ୍କ ମତରେ ସେମାନଙ୍କର ନିରୋଧ ଅଛି । କ୍ରୋଧ ଏବଂ ଦ୍ୱେଷମୁକ୍ତ ମଣିଷ ଯଦି ଏଇ ଧର୍ମ ସମ୍ୟକ ରୂପେ ଅନୁଧାବନ କରି ନ ପାରେ, ତେବେ ସେମାନଙ୍କୁ ଦୋଷୀ କରାଯାଏ ନାହିଁ । କିନ୍ତୁ ପ୍ରକୃତ ବୌଦ୍ଧ ହେଉଛନ୍ତି ସିଏ, ଯିଏ ଅବୁଝାକୁ ବୁଝେଇ ପାରିବେ, ଅଜ୍ଞାନକୁ ଜ୍ଞାନୀ କରିବାର ଶକ୍ତି ଅର୍ଜିପାରିବେ । ଏଇ ସ୍ତୂପ ସମ୍ମୁଖରେ ଠିଆ ହେଲା ମାତ୍ରେ ରାଜକୁମାର ଶୁଣିପାରନ୍ତି, "ବହୁଜନଙ୍କ ହିତ ପାଇଁ, ସୁଖ ପାଇଁ, କଲ୍ୟାଣ ପାଇଁ ତମେମାନେ ଦିଗ ଦିଗରେ ଗମନ କର । ତମେ ସେଇ ଧର୍ମ ପ୍ରଚାର କର, ଯାହାର ଆଦିରେ କଲ୍ୟାଣ, ମଧ୍ୟରେ କଲ୍ୟାଣ ଏବଂ ଅନ୍ତେ କଲ୍ୟାଣ । ଅର୍ଥଯୁକ୍ତ, ବ୍ୟଞ୍ଜନାଯୁକ୍ତ ଏବଂ ସଂପୂର୍ଣ୍ଣ ପରିପୂର୍ଣ୍ଣ ଓ ପରିଶୁଦ୍ଧ ବ୍ରହ୍ମଚର୍ଯ୍ୟ ପ୍ରଚାର କର ।"

ବାକ୍ୟଗୁଡ଼ିକ ସ୍ମରଣ ହେଲାମାତ୍ରେ ଅନ୍ତରରେ ଅସ୍ଥିରତା ଆସେ । କେବଳ ମନେହୁଏ, ଏ ସଂସାରୀ ଜୀବନ ତାଙ୍କ ପାଇଁ ନୁହେଁ । ବୈରାଗ୍ୟ ପ୍ରବଳ ହୋଇଉଠେ । ଏଇସବୁ ସ୍ତୂପ ସମ୍ମୁଖକୁ ଆସି ଠିଆହେଲେ ସଂସାର ପ୍ରତି ବୀତସ୍ପୃହ ଭାବ ଆହୁରି ଗଭୀର ହୁଏ । ତାଙ୍କର ଦୁଇ ଭ୍ରାତା ଏବଂ ଭଗ୍ନୀଙ୍କ ଭଳି ତଥାଗତଙ୍କ ବାଣୀ ପ୍ରଚାର କରିବାର ସୁଯୋଗ ଲାଭ କଲେ ସେ ଧନ୍ୟ ହୋଇ ଯାଇଥାନ୍ତେ । ଯଦିଓ ସେ ବିବାହିତ, କିନ୍ତୁ ବର୍ତ୍ତମାନ ସୁଦ୍ଧା ତାଙ୍କ ପଥରେ କୌଣସି ବାଧା ହୋଇନାହିଁ କାଞ୍ଚନମାଳା । ତା'ସତ୍ତ୍ୱେ ବି ସଂସାରରେ ରହି ହୃଦୟରେ ପୂର୍ଣ୍ଣତା ଆସିବ ନାହିଁ—ଏଇ ବୋଧ ପ୍ରବଳ ହେଉଥିଲା ।

ସ୍ତୂପଗୁଡ଼ିକର ସୁରକ୍ଷା ସମ୍ପର୍କରେ ନିଶ୍ଚିନ୍ତ ହୋଇ ରାଜକୁମାର ଫେରି ଆସୁଥିଲେ । ଏସବୁ ତୀର୍ଥଯାତ୍ରାରେ କଦାପି ସେ ପ୍ରହରୀ ସାଙ୍ଗରେ ନିଅନ୍ତି ନାହିଁ । ସାଧାରଣ ଲୋକଙ୍କ ସହିତ ପ୍ରହରୀମାନେ ଦୂରତ୍ୱ ବଢ଼େଇ ଦିଅନ୍ତି । ତିନି ଚାରିଜଣ ସଙ୍ଗୀ ତାଙ୍କ ପାଇଁ ଯଥେଷ୍ଟ । ରାଜକୁମାରଙ୍କ କେବଳ ମନେ ହେଉଥିଲା, ପାଟଳିପୁତ୍ରକୁ

ଫେରି ଯାଇ ଉପଗୁପ୍ତଙ୍କ ଅନୁମତି ଭିକ୍ଷା କଲେ କେମିତି ହୁଅନ୍ତା। ଯଦିଓ ସେ କହିଛନ୍ତି ସଠିକ ସମୟ ଉପସ୍ଥିତ ହେଲେ ମନକୁମନ ବନ୍ଧନ ଛିନ୍ନ ହେବ। କିନ୍ତୁ ତଥାପି ମନ ମାନେ ନାହିଁ।

ଚମ୍ପାନଦୀ କୂଳକୁ ଆସି ରାଜକୁମାର ଦେଖିଲେ ଜଳପତନ ବଢ଼ିଛି। ନଦୀ ଅତିକ୍ରମ କରିବା ଏଇ ମୁହୂର୍ତ୍ତରେ ସମ୍ଭବ ନୁହେଁ। ମାଝି କହିଲା, ରାତ୍ରିର ଦ୍ୱିତୀୟ ପ୍ରହରବେଳକୁ ଜଳପତନ କମିବ, ଢେଉ ଶାନ୍ତ ହେବ ଏବଂ ସେତେବେଳଯାଏଁ ଅପେକ୍ଷା କରିବା ଛଡ଼ା ଗତ୍ୟନ୍ତର ନାହିଁ।

ଚମ୍ପାନଦୀର ଅନ୍ୟ ପ୍ରାନ୍ତରେ ଅରଣ୍ୟ ସନ୍ନିକଟରେ ସେତେବେଳେ ତିନୋଟି ଶିବିରରେ ବିଶେଷ ବ୍ୟସ୍ତତା ଦେଖା ଯାଉଥିଲା। ତିନୋଟି ମଧ୍ୟରୁ ଯେଉଁ ଶିବିରଟିର ଆୟତନ ବୃହତ୍, ସେଇଟି ନଦୀକୁ ପ୍ରାୟ ଲାଗି ସ୍ଥାପନ କରାଯାଇଛି। ତିଷ୍ୟା ସେଇ ଶିବିରର ବାତାୟନରେ ଠିଆ ହୋଇ ଉଦ୍‌ଗ୍ରୀବ ହୋଇ ଅନ୍ୟପ୍ରାନ୍ତକୁ ଲକ୍ଷ୍ୟ କରୁଥିଲେ। ରାଜକୁମାରଙ୍କୁ ଫେରିବାକୁ ପଡ଼ିବ ଏଇ ପଥରେ। ସମ୍ବାଦ ଯଦି ସଠିକ ହୁଏ, ତେବେ ଅପେକ୍ଷାର କାଳ ପ୍ରାୟ ଶେଷ ହୋଇ ଆସିଲାଣି!

ରାଜକୁମାର ସାରଙ୍ଗନାଥ ଯାଇଛନ୍ତି ମୁଷ୍ଟିମେୟ ଅନୁଚରଙ୍କୁ ସାଙ୍ଗରେ ନେଇ, ଖବରଟି ଦେଇଥିଲେ ବୀତଶୋକ। ନା, ପ୍ରାସାଦକୁ ଆସି ତିଷ୍ୟାଙ୍କ ସହିତ ସାକ୍ଷାତ୍ କରିବାର ସାହସ ପାଉନାହାଁନ୍ତି ସେ। ତିଷ୍ୟା ମଧ୍ୟ ଚାହିଁନାହାଁନ୍ତି, ଘନ ଘନ ବୀତଶୋକ ତାଙ୍କୁ ସାକ୍ଷାତ କରନ୍ତୁ। ବୀତଶୋକ ତେଣୁ ତାଙ୍କର ଅନୁଗତ ପରିଚାରକ ମାଧ୍ୟମରେ ପତ୍ର ପଠେଉଥିଲେ। କିନ୍ତୁ ସମ୍ବାଦ ଆସିଛି ବୀତଶୋକ ଯିବା ସତ୍ତ୍ୱେ ସେଗୁଡ଼ିକର ରକ୍ଷଣାବେକ୍ଷଣରେ କିଛି ତ୍ରୁଟି ଦେଖାଦେଇଛି। ମନେହୁଏ ଏଇ ପରିପ୍ରେକ୍ଷୀରେ ରାଜକୁମାରଙ୍କୁ ସେଠାକୁ ପଠାଉଛନ୍ତି ସମ୍ରାଟ। ବୀତଶୋକଙ୍କ ଅଜ୍ଞାତରେ କୌଣସି ଅନ୍ୟାୟ ଯଦି ଘଟିଥାଏ ଏବଂ ସେକଥା ରାଜକୁମାର ସମ୍ରାଟଙ୍କୁ ଜଣାଇଲେ ସ୍ୱଭାବତଃ ବୀତଶୋକ ଅପଦାର୍ଥ ପ୍ରମାଣିତ ହେବେ। ପରବର୍ତ୍ତୀ ଚିନ୍ତାଭାବନା ଯେତେବେଳେ ଅନେକଟା ଆଗେଇ ଯାଇଛି ସେତେବେଳେ ଏଇ ସମୟରେ ଗୌରବହାନି ନ ହେବା ହିଁ ବାଞ୍ଛନୀୟ। କିନ୍ତୁ ରାଜକୁମାରଙ୍କୁ ବୁଝିବାର ଏବଂ ବୁଝେଇବାର ସାଧ ବୀତଶୋକଙ୍କର ନାହିଁ। ମହାରାଣୀ ତାଙ୍କ ସହିତ ଏକାନ୍ତରେ ସାକ୍ଷାତ କରିବାକୁ ଚାହିଁଥିଲେ। ଏହା ହିଁ ସୁବର୍ଣ୍ଣ ସୁଯୋଗ। ଫଲ୍‌ଗୁ ନଦୀ ଅତିକ୍ରମ କରି ଯେତେବେଳେ ରାଜକୁମାର ରାଜଧାନୀକୁ ପ୍ରତ୍ୟାଗମନ କରିବେ, ସେତେବେଳେ ବନ-ବିହାର ଉଦ୍ଦେଶ୍ୟରେ ସେଠାରେ ଉପସ୍ଥିତ ହୋଇ ତାଙ୍କ ସହିତ ସ୍ୱଚ୍ଛନ୍ଦରେ ସାକ୍ଷାତ କରିପାରନ୍ତି। ଏଥିରେ କାହାରି କୌଣସି ସନ୍ଦେହ ହେବନାହିଁ ଏବଂ ବୀତଶୋକଙ୍କ ବିନୀତ ଅନୁରୋଧ, ମହାରାଣୀ ବୀତଶୋକଙ୍କ ସମ୍ପର୍କରେ ରାଜକୁମାରଙ୍କ ମନୋଭାବ ଜାଣିନେଇ ତଦନୁସାରେ ପ୍ରତିବିଧାନ କରନ୍ତୁ।

ପତ୍ରଟି ପାଇବା ମାତ୍ରେଇ ମନ ସ୍ଥିର କରିନାହାଁନ୍ତି ତିଷ୍ୟା। ସୁପ୍‌ପବାସାକୁ ସେ ଦାୟିତ୍ୱ ଦେଇଥିଲେ ବୀତଶୋକଙ୍କ ପ୍ରେରିତ ସମ୍ବାଦର ସତ୍ୟତା କେତେ—ଜାଣିବାକୁ। ଦିନକୁ ଦିନ ଏଇ ପରିଚାରିକାଟି ଉପରେ ଆସ୍ଥା ବୃଦ୍ଧି ପାଉଛି ତାଙ୍କର। ସେ ଯେ ଏମିତି ବୁଦ୍ଧିମତୀ ଏବଂ କୁଶଳୀ, ତାହା ପ୍ରଥମରୁ ଅନୁମାନ କରିପାରି ନ ଥିଲେ ତିଷ୍ୟା।

ସୁପ୍‌ପବାସା ଖବର ଆଣିଲା, ସମ୍ବାଦ ସତ୍ୟ। ରାଜଧାନୀ ଛାଡ଼ି ଯିବାକୁ ହେଲେ ରାଜପରିବାରର ମହିଳାମାନଙ୍କୁ ସମ୍ରାଟଙ୍କ ଅନୁମତି ପ୍ରୟୋଜନ। ପ୍ରଥମେ ସେ ଭାବିଥିଲେ ସମ୍ରାଟଙ୍କୁ ଉପେକ୍ଷା କରି ବନ-ବିହାରକୁ ଯିବେ। ଏଇ ବୃଦ୍ଧଙ୍କ ନିକଟରେ ସେ ଦାୟବଦ୍ଧା ନୁହଁନ୍ତି। କିନ୍ତୁ ସୁପ୍‌ପବାସା ତାଙ୍କୁ କହିଲା, "କାର୍ଯ୍ୟଟି ଭୁଲ ହେବ ମହାରାଣୀ। ସମ୍ରାଟଙ୍କୁ ସୌଜନ୍ୟ ଦେଖାଇଲେ ସେ ତୃପ୍ତ ହେବେ। ତାହା ତମ ପାଇଁ ବର୍ମ ଭଳି କାର୍ଯ୍ୟ କରିବ। ତୁମେ କିଛି ମାଗିଲେ, ସେ 'ନା' କହି ପାରିବେନାହିଁ, ଅଥଚ ପ୍ରଜାମାନେ କହିବେ ମହାରାଣୀ ଅତ୍ୟନ୍ତ ବିନୀତା। ସମ୍ରାଟ କେବେ ବି ସନ୍ଦିଗ୍ଧ ହେବେନାହିଁ। ତୁମକୁ ଏମିତି ବାତାବରଣ ସୃଷ୍ଟି କରିବାକୁ ପଡ଼ିବ, ଯେମିତି କେହି ତୁମର ଉଦ୍ଦେଶ୍ୟ ଧରି ନ ପାରେ।

ତିଷ୍ୟା ବୁଝି ପାରିଥିଲେ। ଯୁଦ୍ଧଜୟ ପାଇଁ କେବଳ ଜିଦ୍ ନୁହେଁ, ଛନ୍ଦ ମଧ୍ୟ ପ୍ରୟୋଜନ। ସେ ରାଜାଜ୍ଞା ଭିକ୍ଷା କଲେ। ଜଣାଇଲେ, ସେ ଦୀର୍ଘକାଳ ଏଠାରେ ଅବସ୍ଥାନ କରୁଛନ୍ତି। ପିତ୍ରାଳୟ ଛାଡ଼ି ଆସିବା ପରଠାରୁ କୌଣସି ସ୍ଥାନ ପରିବର୍ତ୍ତନ କରିନାହାଁନ୍ତି। ସମ୍ରାଟ ଯଦି ଅନୁମତି ଦିଅନ୍ତି ତେବେ ସେ ଫଲ୍‌ଗୁ ନଦୀ କୂଳରେ ବନ ବିହାରକୁ ଯାଇ ପାରନ୍ତି। ଶୁଣାଯାଏ, ସେଠାକାର ମୃଗଗୁଡ଼ିକ କୁଆଡ଼େ ଅତୀବ ସୁନ୍ଦର ଏବଂ ମହାରାଣୀ ପୂର୍ବରୁ କେବେ ସେଠାକୁ ଯାଇ ନାହାଁନ୍ତି। ଦ୍ରୁତ ଅନୁମତି ମିଳିଲା। ଖଲ୍ଲାତକ ଆସି ଜଣାଇଲେ, "ସମ୍ରାଟ ମହାରାଣୀଙ୍କ ଏକାକୀତ୍ୱ ଅନୁଭବ କରିଛନ୍ତି। ସେ ସ୍ୱଚ୍ଛନ୍ଦରେ ବନ-ବିହାରର ଅନୁମତି ଦେଇଛନ୍ତି। ଖଲ୍ଲାତକ ତେଣୁ ପଚାରିଛନ୍ତି—ମହାରାଣୀ ତାଙ୍କ ସାଙ୍ଗରେ କିଭଳି ପ୍ରହରୀ ନେବାକୁ ଚାହାଁନ୍ତି? ତିଷ୍ୟା ମନ ସ୍ଥିର କଲେ। ସେ ଜଣେଇଲେ, "ଜଣେ ମହାରାଣୀଙ୍କ ସମ୍ମାନ ଯେଭଳି ସୁରକ୍ଷିତ ରହେ, ସେଭଳି ପ୍ରହରୀ ସାଙ୍ଗରେ ଦେଲେ ଚଳିବ।"

ନିର୍ଦ୍ଦିଷ୍ଟ ଦିନରେ ରାଜଧାନୀରୁ ଯାତ୍ରା କରିଛନ୍ତି ତିଷ୍ୟା। ସାଙ୍ଗରେ ବିରାଟ ସୈନ୍ୟବାହିନୀ। ଏମାନଙ୍କୁ ଦେଖି ସେ ଭୀଷଣ ବିରକ୍ତ ହୋଇଥିଲେ। କିନ୍ତୁ ସୁପ୍‌ପବାସାଙ୍କ ପରାମର୍ଶ ମାନି ନୀରବ ରହିଥିଲେ। ମାତ୍ର ବନାଞ୍ଚଳରେ ପ୍ରବେଶ କଲାପରେ ସେଠାରେ ସେ ପ୍ରଧାନ ପ୍ରହରୀଙ୍କୁ ଆଦେଶ ଦେଲେ, ସେ ଯେମିତି ପ୍ରହରୀମାନଙ୍କୁ ନେଇ ବନର ସମ୍ମୁଖଭାଗ ପହରା ଦିଏ। ମହାରାଣୀ ନିର୍ଜନରେ ରହିବାକୁ ଚାହାଁନ୍ତି। କେହି ଯେମିତି ତାଙ୍କୁ ବିରକ୍ତ ନ କରନ୍ତି, ତାହା ଦେଖିବା ପ୍ରଧାନ ପ୍ରହରୀଙ୍କ କର୍ତ୍ତବ୍ୟ।

ତା'ପରେ ଫଲ୍‌ଗୁ ନଦୀ ତୀରରେ ଶିବିର ସ୍ଥାପନ କରାହୋଇଛି। ତିନୋଟି ଶିବିରରେ ଦାସୀମାନଙ୍କୁ ନେଇ ତିଷ୍ୟା ଓ ସୁପ୍ରବାସା ସମୟ ଅତିବାହିତ କରୁଥିଲେ ବିଭିନ୍ନ ଭାବରେ। ଅନ୍ୟାନ୍ୟ ଦାସୀଙ୍କୁ ନିର୍ଦ୍ଦେଶ ଦିଆ ହୋଇଥିଲା ସଯତ୍ନରେ ବିଭିନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରିବାକୁ। ସେମାନେ ସେଇ କାମରେ ବ୍ୟସ୍ତ।

ମହାରାଣୀ କିଛିଟା ଉଦ୍‌ବିଗ୍ନ ହୋଇ ନଦୀଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଥିଲେ। ସୁପ୍ରବାସା ସସତର୍କ ଥିଲା – ଯେମିତି ରାଜକୁମାରଙ୍କ ଆଗମନ ସମୟରେ କୌଣସି ବିଘ୍ନ ନ ଘଟେ। ନଦୀରେ ବର୍ତ୍ତମାନ ପ୍ରାୟ ପ୍ଲାବନର ଅବସ୍ଥା। ନୌକା ଆଗମନର କୌଣସି ସୁଯୋଗ ନାହିଁ। ଯଦିଓ ପ୍ରକୃତି ଆଦୌ ଅଶାନ୍ତ ନୁହେଁ, ମନ୍ଦମଧୁର ପବନ ବହୁଛି, ଦିନ ଶେଷ ହେଲାକୁ ବସିଲାଣି, କିନ୍ତୁ ମହାରାଣୀଙ୍କ ବାରମ୍ବାର ପ୍ରଶ୍ନର ଉତ୍ତରରେ ସୁପ୍ରବାସାକୁ ଗୋଟିଏ କଥା କହିବାକୁ ପଡୁଛି—କୌଣସି ନୌକା ଦେଖାଯାଉନି।

ତିଷ୍ୟାଙ୍କ ହୃଦୟର ଭାର ବଢ଼ି ଯାଉଥିଲା। ତାଙ୍କ ପ୍ରତ୍ୟାଗମନର ନିର୍ଦ୍ଦିଷ୍ଟ ଦିନ ତ ଆଜି, ଅଥଚ ଦିନ ଅବସାନ ହେଲାଣି, ରାତି ଆସିଲାଣି, ଅଥଚ ନୌକା ଲାଗିବାର କୌଣସି ଚିହ୍ନ ଦେଖାଯାଉନାହିଁ। ଆଉ କଣ ସେ ଆସିବେ? ଦାସୀଗଣ ନୈଶାହାର ଶେଷ କଲେ। ସୁପ୍ରବାସାର ବହୁ ଅନୁରୋଧ ସତ୍ତ୍ୱେ ତିଷ୍ୟା ଖାଦ୍ୟ ସ୍ପର୍ଶ କଲେନାହିଁ। ତାଙ୍କର ମନ ଅଶାନ୍ତ। ତେବେ କଣ ଦିନ ଭୁଲ ହେଲା? ନା କଣ ସେମାନେ ଏଇ ସ୍ଥାନରେ ବିଳମ୍ବରେ ପହଞ୍ଚିଛନ୍ତି, ଏବଂ ତା' ପୂର୍ବରୁ ହୁଏତ ରାଜକୁମାର ଏଇ ସ୍ଥାନ ଅତିକ୍ରମ କରି ଯାଇଛନ୍ତି? ରାଜଧାନୀକୁ ଫେରିଯବାର କଣ ଅନ୍ୟ ପଥ ଅଛି?

କିଛି ଭଲ ଲାଗୁ ନ ଥିଲା ତିଷ୍ୟାଙ୍କୁ। ଏଇ ସମୟରେ ଯାମିନୀର ଦ୍ୱିତୀୟ ପ୍ରହର ଚାଲିଛି। ଚତୁର୍ଦ୍ଦିଗ ନିସ୍ତବ୍ଧ। କେବଳ ମଝିରେ ମଝିରେ ବଣର ପକ୍ଷୀମାନେ ନିଦ ଭାଙ୍ଗି କଳରବ କରୁଛନ୍ତି। ଏତେ ଜ୍ୟୋତିରିଙ୍ଗଣ ଏକ ସାଙ୍ଗରେ କେବେ ଦେଖିନାହାଁନ୍ତି ତିଷ୍ୟା। ଘନ ଅନ୍ଧକାର ମଧ୍ୟରେ ସହସ୍ର ସହସ୍ର କ୍ଷୁଦ୍ର ଆଲୋକ ବିନ୍ଦୁ। ଏଇ ସମୟରେ ସୁପ୍ରବାସା ବ୍ୟସ୍ତ ପଦକ୍ଷେପରେ ଶିବିର ମଧ୍ୟକୁ ପ୍ରବେଶ କରି ଉତ୍ତେଜିତ କଣ୍ଠରେ କହିଲା, "ମହାରାଣୀ, ଦୂରରେ ଗୋଟିଏ ଡଙ୍ଗା ଦେଖାଯାଉଛି।"

ମାଝି କହୁଥିଲା, କାଲି ସକାଳେ ପୁଣି ଜଳପତନ ବଢ଼ିପାରେ, ଅତଏବ ରାତି ଥାଉଥାଉ ନଦୀ ପାରିହେବା ହିଁ ଶ୍ରେୟ। ଯେହେତୁ ବର୍ତ୍ତମାନ ଜଳପତନ କମୁଛି, ଢେଉ ମଧ୍ୟ ଉତ୍ତାଳ ନୁହେଁ, ସେଥିପାଇଁ ରାତିର ଅନ୍ଧକାର କୌଣସି ବାଧା ସୃଷ୍ଟି କରୁନାହିଁ ଦକ୍ଷ ମାଝି ପାଇଁ।

ରାଜକୁମାର ଏବଂ ତାଙ୍କ ଅନୁଗତ ସଙ୍ଗୀଗଣ ଏଇ ନିଶାକାଳରେ ପ୍ରକୃତିର ଆଉ ଏକ ରୂପ ଦେଖୁଥିଲେ ମୁଗ୍ଧ ହୋଇ। ରାଜକୁମାର କହିଲେ, "ଦେଖ,

ଏଇ ଜଗତ କେତେ ଶାନ୍ତ। ଦିନର ଉଦ୍ଦାମତା ଶେଷ ହୋଇ ଗଲେ ଏଇଭଳି ପବିତ୍ର ମୁହୂର୍ତ୍ତ ଆସେ। ତଥାଗତ ଆମକୁ ଶିକ୍ଷା ଦେଇଛନ୍ତି ବାହ୍ୟିକ ଆଡ଼ମ୍ବର ତ୍ୟାଗ କରି ସରଳ ଜୀବନରେ ଅଭ୍ୟସ୍ତ ହେବାପାଇଁ। ସାରଲ୍ୟ ହିଁ ସୁଖ।'' ତା'ପରେ ଜଣେ ଅନୁଗତକୁ ଅନ୍ୟମନସ୍କ ହେବା ଦେଖି କୌତୂହଳୀ ହୋଇ ଜିଜ୍ଞାସା କଲେ, ''ତୁମ ମନରେ କୌଣସି ଦୁଶ୍ଚିନ୍ତା ଆସିଛି କି ମହାନାମ ?''



ମହାନାମ ନାମକ ବ୍ୟକ୍ତିଟି ଲଜ୍ଜିତ ହେଲା। ଦ୍ରୁତ ମୁଣ୍ଡ ହଲେଇ ସେ କହିଲା, ''ସେମିତି କିଛି ନୁହେଁ।''

ରାଜକୁମାରଙ୍କ ଆଗ୍ରହ ହେଲା। ଏଇ ପବିତ୍ର ସମୟରେ ଯେତେବେଳେ ପ୍ରକୃତିରେ ତଥାଗତଙ୍କ ସ୍ପର୍ଶ, ସେତେବେଳେ ମହାନାମ ମନରେ କି ଭାବର ଉଦୟ ହୋଇଛି? ସେ ଜିଜ୍ଞାସା କଲେ, ''ଜାଣିପାରେ କି, ତୁମେ କଣ ଭାବୁଛ ? ଖୁବ୍ ଗୋପନ କିଛି ? କୁଣ୍ଠା ନ କରି କହିପାର।''

''ମହାନାମ ଖୁବ୍ ବିବ୍ରତ। କିଛିଟା ଅନିଚ୍ଛାସତ୍ତ୍ୱେ ସେ କହିଲା, ''ରାଜକୁମାର ଶୁଣିଲେ ହୁଏତ ଅପ୍ରସନ୍ନ ହେବେ। କିନ୍ତୁ ଏ ପରିସ୍ଥିତିରେ ମୁଁ କହିବାକୁ ବାଧ ହେଉଛି। ତେବେ ମୁଁ ଏହା ମଧ କହୁଛି କୌଣସି ଅବସ୍ଥାରେ ବି ମୋ ଭାବନା ମୁଁ ବ୍ୟକ୍ତ କରି ନ ଥାନ୍ତି। କାରଣ ତା' କଲେ..''

ସହାସ୍ୟ ବଦନରେ ରାଜକୁମାର କହିଲେ, ''ତୁମେ ଅଯଥା ସଙ୍କୋଚ ପ୍ରକାଶ କରୁଛ।''

ମହାନାମ କହିଲା, ''ମୁଁ ଅତ୍ୟନ୍ତ କ୍ଷୁଧାର୍ତ୍ତ ରାଜକୁମାର। ସେଇ ପ୍ରଭାତରେ ଆମେ କିଛି ଖାଦ୍ୟ ଗ୍ରହଣ କରିଥିଲୁ। ତା'ପରେ ଆଉ ସୁଯୋଗ ହୋଇ ନାହିଁ। ମୋର ଅନ୍ୟ ବନ୍ଧୁଙ୍କର କଣ ଅବସ୍ଥା ଜାଣେନା। କିନ୍ତୁ ରାଜକୁମାର ସର୍ବଦା ତଥାଗତଙ୍କ ଚିନ୍ତାରେ ବିଭୋର ରହନ୍ତି ବୋଲି କ୍ଷୁଧାତୃଷ୍ଣା କଥା ସ୍ମରଣକୁ ଆସେନା। ମୁଁ ପ୍ରାଣପଣେ ନିଜକୁ ଅନ୍ୟମନସ୍କ ରଖିବାର ଚେଷ୍ଟା କରୁଛି, ଅଥଚ ବାରମ୍ବାର ସେଇ ଚିନ୍ତା ହିଁ ଫେରିଆସିଛି। ମୁଁ ଏସବୁ କଥା କହି ନ ଥାନ୍ତି। କିନ୍ତୁ ରାଜକୁମାର ମୋତେ ବାଧ କଲେ।''

କଥାଟା ଶୁଣିବାମାତ୍ରେ ରାଜକୁମାର ବ୍ୟଗ୍ର ହୋଇ ପଡ଼ିଲେ। ତାଙ୍କର ମନେହେଲା, ଅତ୍ୟନ୍ତ ଅନ୍ୟାୟ ହୋଇଯାଇଛି। ଜଣେ ଏତେ ସମୟ ଅଭୁକ୍ତ ରହିଲେ କ୍ଷୁଧାର୍ତ୍ତ

ତ ହବ ହିଁ। ଅଥଚ ସେ ନିରନ୍ତର ତଥାଗତଙ୍କ ଚିନ୍ତାରେ ମଗ୍ନ ରହି ବାସ୍ତବକୁ ଅସ୍ୱୀକାର କରିଛନ୍ତି। ମହାନାମ ଧରା ପଡ଼ିଯାଇଛି। କାରଣ ସେ କ୍ଷୁଧାର ଜ୍ୱାଳା ସହିପାରି ନାହିଁ। ଅନ୍ୟ ଅନୁଚରମାନଙ୍କର ନିଶ୍ଚୟ ଏକା ଦଶା। ଏମିତିକି କଥାଟା କାନକୁ ଆସିବାପରେ ତାଙ୍କର ନିଜର ମଧ୍ୟ କ୍ଷୁଧାର ଉଦ୍ରେକ ହୋଇଛି। କିନ୍ତୁ ଏଇ ଜନବିରଳ ସ୍ଥାନରେ ରଜନୀର ମଧ୍ୟଯାମରେ ଖାଦ୍ୟବସ୍ତୁ କାହୁଁ ମିଳିବ? ସେ ମାଝିକୁ ଜିଜ୍ଞାସା କଲେ। ମାଝି ବିନୀତ ହୋଇ ଜଣେଇଲା ତା' ପାଖରେ ସାମାନ୍ୟ ମୁଢ଼ି ଚୂଡ଼ା ଅଛି, କିନ୍ତୁ ସେଥିରେ ରାଜକୁମାରଙ୍କ ସେବା କରି ହେବ ନାହିଁ। କିନ୍ତୁ ରାଜକୁମାର ଜଣେଇଲେ ପ୍ରୟୋଜନରେ ସାମାନ୍ୟ ହିଁ ଅସାମାନ୍ୟ ହୋଇଯାଏ। ଚୂଡ଼ା ମୁଢ଼ି ପାଇଲେ ହିଁ ସେମାନେ କୃତଜ୍ଞ ରହିବେ ମାଝି ନିକଟରେ। ତା'ପରେ ରାଜକୁମାରଙ୍କ ମନରେ ଅନ୍ୟ ଚିନ୍ତା ଆସିଲା। ତଥାଗତ ଏବଂ ତାଙ୍କ ଉପଦେଶରେ ମନ ଯେତେ ମଗ୍ନ ଥାଉ ନା କାହିଁକି ଦେହର ପ୍ରୟୋଜନ ନିକଟରେ ଆମେ ସମର୍ପିତ ହେବାକୁ ବାଧ ହେଉ ସମୟ ଅସମୟରେ। କେବଳ ଧର୍ମଚିନ୍ତା ହିଁ ମଣିଷକୁ ଜୀବିତ ରଖିପାରେନା। ତାଙ୍କର ମନେପଡ଼ିଲା ତଥାଗତ ନିଜେ ମଧ୍ୟ 'କୃଚ୍ଛ୍ର ସାଧନା ହିଁ ଏକମାତ୍ର ପଥ' ବୋଲି ସ୍ୱୀକାର କରିନାହାଁନ୍ତି।

ଏଇ ସମୟରେ ମାଝି କହିଲା, "କୂଳ ଆସିଗଲାଣି, ଆପଣମାନେ ପ୍ରସ୍ତୁତ ହୁଅନ୍ତୁ।"

କୂଳରେ ପହଞ୍ଚାଇ ଦେଇ ମାଝି କହିଲା, "ମୋ ପାଖରେ ତ କୌଣସି ପାତ୍ର ନାହିଁ। କେମିତି ଯେ ଆପଣମାନଙ୍କୁ ମୁଢ଼ିଚୂଡ଼ା ଦେବି।" ବିଚାରାକୁ ଖୁବ୍ ବିମର୍ଷ ଦେଖା ଯାଉଥିଲା।

ସେଇ ସମୟରେ ମହାନାମ ଆଲୁଅ ଦେଖିପାରିଲା। ନଦୀକୂଳରେ ଅରଣ୍ୟ ସନ୍ନିକଟରେ ଆଲୋକ ଜଳୁଛି। ସେଇ ଆଲୋକରେ ତିନୋଟି ଶିବିର ଦେଖାଯାଉଛି। ଏଇ ନିର୍ଜନ ନଦୀକୂଳରେ କେଉଁ ଉଦ୍ଦେଶ୍ୟରେ ଏପର୍ଯ୍ୟନ୍ତ ଲୋକେ ଜାଗ୍ରତ ରହିଛନ୍ତି? ଏଇ ସମୟରେ ଗୋଟିଏ ଦୀପ ଆଗେଇ ଆସିବା ଦେଖାଗଲା। ମହାନାମ ସେଆଡ଼କୁ ରାଜକୁମାରଙ୍କ ଦୃଷ୍ଟି ଆକର୍ଷଣ କରିବାରୁ ସେ କହିଲେ, "ମାଝି, ତୁମେ ଟିକିଏ ଅପେକ୍ଷା କର। ଆଉ ମହାନାମ, ତୁମେ ଆଗେଇ ଯାଇ ଦେଖ ଆଗନ୍ତୁକ କିଏ?"

ଶିବିର ଏବଂ ଆଲୋକ ଦେଖି ମହାନାମ ପୁଲକିତ ହୋଇଥିଲା। ଦିନସାରା ଅଭୁକ୍ତ ରହିବା ପରେ ମଧ୍ୟରାତ୍ରିରେ କେବଳ ମୁଢ଼ି ଚୋବେଇ ରହିବାକୁ ପଡ଼ିବ ଭାବି ଖରାପ ଲାଗିଥିଲା। ଏଠି ଯେତେବେଳେ ଶିବିର ସ୍ଥାପିତ ହୋଇଛି, ସେତେବେଳେ ସେମାନେ ନିଶ୍ଚୟ ସମ୍ପନ୍ନ ଲୋକଙ୍କ ଦେଖା ପାଇବେ। ଆଉ ସମ୍ପନ୍ନ ଲୋକମାନେ ସର୍ବଦା ସୁସ୍ୱାଦୁ ଖାଦ୍ୟଦ୍ରବ୍ୟ ପାଖରେ ରଖନ୍ତି। ସେ ଦ୍ରୁତ ପଦଚାରଣା କରି ଆଗେଇ ଯାଇ ଦେଖିଲା ଦୀପ ହାତରେ ଦୁଇଜଣ ସ୍ତ୍ରୀଲୋକ ସାବଧାନରେ ବାଟ ଚାଲୁଛନ୍ତି।

ମୁହାଁମୁହିଁ ହୋଇ ନମସ୍କାର ଜଣାଇ ମହାନାମ କହିଲା, "ଭଦ୍ରେ, ଆପଣମାନେ ଏ ଗଭୀର ରାତ୍ରିରେ କୁଆଡ଼େ ଯାଉଛନ୍ତି? ନଦୀକୂଳରେ ଯେଉଁ ଶିବିର, ତା'କଣ ଆପଣମାନଙ୍କର?"

ସୁପ୍ରବାସା ଚଟୁଳ ହସିଲା। ସେ ମହାନାମକୁ ଚିହ୍ନିପାରିଛି! ଘାଟକିସୁତ୍ତର ନାଗରିକମାନଙ୍କ ମଧ୍ୟରୁ ସେ ଅନେକଙ୍କୁ ଚିହ୍ନେ। ତା'ଛଡ଼ା ଅତ୍ୟନ୍ତ ସୁଧୀର ବ୍ୟକ୍ତି ଭାବରେ ମହାନାମର ବିଶେଷ ପରିଚିତି ଅଛି। ସୁପ୍ରବାସା କହିଲା, "ସେଉ ଶିବିର ମହାରାଣୀଙ୍କର।"

"ମହାରାଣୀ!", ମହାନାମ ଆଶ୍ଚର୍ଯ୍ୟ ହୋଇଗଲା।

"ହଁ। ସେ ବନ-ବିହାରକୁ ଆସିଛନ୍ତି। ହଠାତ୍ ମଝି ରାତିରେ ନଦୀରେ ଡଙ୍ଗା ଦେଖି ମୋତେ ପଠେଇଲେ କୌଣସି ଆପଦବିପଦ ହୋଇଛି କି ନାହିଁ ଦେଖିବାକୁ। ଆମେ ଦୁଇଜଣ ତାଙ୍କ ପରିଚାରିକା, ମୁଁ ସୁପ୍ରବାସା।"

"ସୁପ୍ରବାସା। ହଁ, ହଁ ତୁମକୁ ଦେଖିଛି ବୋଲି ମନେହେଉଛି। ମୁଁ ମହାନାମ। ରାଜକୁମାରଙ୍କ ସହିତ ସାଉତନାଥରୁ ଫେରୁଛି। ଆମେ କ୍ଷୁଧାର୍ତ୍ତ।"

"କ୍ଷୁଧାର୍ତ୍ତ! ମୋତେ ଶୀଘ୍ର ରାଜକୁମାରଙ୍କ ନିକଟକୁ ନେଇ ଚାଲନ୍ତୁ। ସେ ମୋତେ ଭଲଭାବେ ଚିହ୍ନନ୍ତି।"

ଦୀପଧାରିଣୀଙ୍କୁ ସମ୍ମୁଖରେ ଯିବାକୁ କହି ସୁପ୍ରବାସା ମହାନାମର ଅନୁଗାମିନୀ ହେଲା। ସେ ଦୂରରୁ ଦେଖିପାରିଲା ରାଜକୁମାରଙ୍କ ସଙ୍ଗୀଙ୍କ ସଂଖ୍ୟା ବେଶୀ ନୁହେଁ। ଆୟୋଜନ ଯାହା ହୋଇଛି, ତା' ପର୍ଯ୍ୟାପ୍ତ। ମହାନାମକୁ ଦେଖି ତାକୁ ଭଲ ଲାଗୁଥିଲା। ଏହି ଯୁବକଟି ଅତ୍ୟନ୍ତ ଭଦ୍ର ଏବଂ ସରଳ। ନ ହେଲେ କ୍ଷୁଧା କଥା ଏମିତି ଅକପଟରେ କହି ନ ଥାନ୍ତା। ଏତେ ଦିନ କାହିଁକି ଯେ ଏଇ ଯୁବକ କଥା ତା ମନକୁ ଆସିନି! ଏଇ ସମୟରେ ସେ ରାଜକୁମାରଙ୍କୁ ଦେଖି ପାରିଲା। ସଙ୍ଗେ ସଙ୍ଗେ ସୁପ୍ରବାସା ନତ ହୋଇ ଅଭିବାଦନ ଜଣେଇଲା, "ମହାରାଣୀ ରାଜକୁମାରଙ୍କୁ ଆତିଥ୍ୟ ଗ୍ରହଣ କରିବାକୁ ଅନୁରୋଧ ଜଣାଉଛନ୍ତି। ମୁଁ ମହାରାଣୀଙ୍କ ପ୍ରଧାନ ପରିଚାରିକା ସୁପ୍ରବାସା।"

ଚମକି ଉଠିଲେ ରାଜକୁମାର। ଏଇ ସ୍ଥାନରେ ଏବଂ ଏଇ ସମୟରେ ସେ ଏଇ ଦାସୀକୁ ଦେଖିବେ ବୋଲି କଳ୍ପନା ସୁଦ୍ଧା କରି ନ ଥିଲେ। ତା'ଛଡ଼ା ମହାରାଣୀ କେମିତି ଜାଣିଲେ ଯେ ସେ ବର୍ତ୍ତମାନ ନଦୀ ପାରି ହୋଇ ଏପଟକୁ ଆସିବେ? ସେ ଜିଜ୍ଞାସା କଲେ, "ମହାରାଣୀ କଣ ସେଇ ଶିବିରରେ ଅଛନ୍ତି?"

—"ହଁ। ସେ ଅତ୍ୟନ୍ତ କ୍ଳାନ୍ତ ବୋଲି ବନ-ବିହାରକୁ ଆସିଛନ୍ତି।"

—"ଆମେ ଏଇ ପଥରେ ଫେରିବୁ, ତା' କଣ ତମେମାନେ ଜାଣିଥିଲ?"

—"ଶିବିରର ବାତାୟନରେ ଠିଆ ହୋଇ ମହାରାଣୀ ଆପଣଙ୍କୁ ନୌକାରେ ଦେଖିପାରିଥିଲେ।"

"ତା' କିପରି ସମ୍ଭବ ? ଏଇ ଅନ୍ଧକାର ରାତିରେ ଏତେ ଦୂରରୁ କଣ ଦେଖାଯାଏ ?"

–"ରାଜକୁମାର, ଅପରାଧ ମାର୍ଜନା କରିବେ, ସୂର୍ଯ୍ୟ ଉଦିତ ହେଲେ ମେଘ ତାକୁ ଯେତେ ନିଷ୍ପ୍ରଭ କରୁ, ପୃଥିବୀକୁ ଅଧିକ ସମୟ ଅନ୍ଧକାରାଚ୍ଛନ୍ନ କରି ରଖିପାରେନା । ବର୍ତ୍ତମାନ ଦୟା କରି ଯଦି ଶିବିରରେ ଉପସ୍ଥିତ ହୁଅନ୍ତି, ତେବେ ମହାରାଣୀ ପ୍ରୀତ ହେବେ ।"

ସେଇ ରାତ୍ରିର ସ୍ମୃତି ରାଜକୁମାର ସଚରାଚର ସ୍ମରଣ କରନ୍ତି ନାହିଁ। ସେ ଘଟଣା କଥା ସେ କାହାକୁ କହିନାହାଁନ୍ତି। ଏପରିକି କାଞ୍ଚନମାଳାକୁ ମଧ ନୁହେଁ। କିଛି କିଛି ଦୁଃସ୍ୱପ୍ନ ଭୁଲିଯିବା ହିଁ ସୁଖକର। କିନ୍ତୁ ବର୍ତ୍ତମାନ ଏଇ ରାତ୍ରିରେ ମହାରାଣୀଙ୍କ ଉପସ୍ଥିତି ତାଙ୍କୁ ଦୁଶ୍ଚିନ୍ତାଗ୍ରସ୍ତ କଲା। କିନ୍ତୁ ଅନୁଚରମାନେ ସୁପ୍ପବାସାର ପ୍ରସ୍ତାବରେ ଅତ୍ୟନ୍ତ ପ୍ରଫୁଲ୍ଲ ହୋଇ ଉଠିଛନ୍ତି। ସେମାନଙ୍କ କ୍ଷୁଧାତୃଷ୍ଣାର ଉପଶମ ହେବାକୁ ଯାଉଛି ବୁଝିପାରି ଖୁସି ହୋଇଛନ୍ତି। କେଉଁ ଯୁକ୍ତିରେ ସେ ଏମାନଙ୍କୁ ନିରାଶ କରିବେ ? ତାଙ୍କର ମନେ ପଡ଼ିଲା ଉପଗୁପ୍ତଙ୍କ କଥା, 'ମଣିଷ ଭୁଲ କରେ ଏବଂ ସେ ଭୁଲ ପୁଣି ମଣିଷ ହିଁ ସଂଶୋଧନ କରେ।' ମହାରାଣୀ କଣ ସେଇ ସଂଶୋଧନ ପଥରେ ?

ରାଜକୁମାର ସାନୁଚର ମହାରାଣୀଙ୍କ ଆତିଥ୍ୟ ଗ୍ରହଣ କଲେ। ତୃତୀୟ ଶିବିରଟିରେ କୌଣସି ଲୋକ ନ ଥିଲେ। ସେଠାରେ ମହାନାମ ଓ କୁମାରଙ୍କ ଅନ୍ୟାନ୍ୟ ଅନୁଚରଙ୍କ ପାଇଁ ରହିବାର ବ୍ୟବସ୍ଥା କରାଗଲା। ରାଜକୁମାର ସେଠାରେ ବସି ତଥାଗତଙ୍କ ଉପାସନା ଶେଷକରି ଯେତେବେଳେ ସଙ୍ଗୀମାନଙ୍କ ସହ ଆହାର ପାଇଁ ପ୍ରସ୍ତୁତ ହେଉଛନ୍ତି, ସେତେବେଳେ ସୁପ୍ପବାସା ତାଙ୍କୁ ଜଣେଇଲା, "ମହାରାଣୀ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି।"

ଏବଂ ସେତେବେଳେ ହିଁ ରାଜକୁମାରଙ୍କ ଅନୁଶୋଚନା ହେଲା। ତାଙ୍କ ହୃଦୟ ନିର୍ମଳ ନୁହେଁ। ତଥାଗତଙ୍କ ପ୍ରତି ଉତ୍ସର୍ଗୀକୃତ ହେବା ସତ୍ତ୍ୱେ ସେ ମୁକ୍ତ ହୋଇ ପାରିନାହାଁନ୍ତି। ନହେଲେ ମହାରାଣୀଙ୍କ ଆତିଥ୍ୟ ଗ୍ରହଣ କରିବା ସତ୍ତ୍ୱେ ତାଙ୍କ ସହ ସାକ୍ଷାତ କରିବାର ସୌଜନ୍ୟବୋଧ ମନକୁ ଆସିନାହିଁ କାହିଁକି ? ଏବଂ ଆସିଲେ ମଧ ସେଇ ରାତ୍ରିର ସ୍ମୃତି ତାଙ୍କୁ ଛଳନା କରିବାକୁ ଶିଖେଇଛି। ଅନୁଚରମାନଙ୍କ ସହ ଏଇ ଶିବିରରେ ବସି ରହିବା ମଧରେ ଅକାରଣ ଆତ୍ମଗୋପନର ପ୍ରଚେଷ୍ଟା ନାହିଁକି !

ରାଜକୁମାର ସୁପ୍ପବାସାକୁ ଅନୁସରଣ କଲେ। ଶିବିର ଦ୍ୱାରରେ ଯେଉଁ ପରିଚାରିକା ପହରାରେ ଥିଲା, ତାକୁ ଅନ୍ୟତ୍ର ଯିବାର ନିର୍ଦ୍ଦେଶ ଦେଇ ସୁପ୍ପବାସା କହିଲା, "ଆସନ୍ତୁ ରାଜକୁମାର।"

ଭିତରକୁ ପ୍ରବେଶ କରି ରାଜକୁମାର ଦେଖିଲେ, ମହାରାଣୀ ତାଙ୍କ ଆଡ଼କୁ ପଛ କରି ବାତାୟନ-ପଥରେ ରାତ୍ରିର ନଦୀ ଦେଖୁଛନ୍ତି। ସେ ସମ୍ଭ୍ରମ ସହକାରେ କହିଲେ,

"ତଥାଗତ ମହାରାଣୀଙ୍କୁ ଶାନ୍ତି ଦିଅନ୍ତୁ। ଅତ୍ୟନ୍ତ ପ୍ରୟୋଜନୀୟ ମୁହୂର୍ତ୍ତରେ ଆପଣ ଆମକୁ ଆଶ୍ରୟ ଦେଇଥିବାରୁ ଆମେ କୃତଜ୍ଞ।"

ତିଷ୍ୟା ଫେରି ଚାହିଁଲେ ନାହିଁ। ଉଦାସ କଣ୍ଠରେ କହିଲେ, "ସୁପ୍ପବାସା, ରାଜକୁମାରଙ୍କୁ ବସିବାପାଇଁ ଆସନ ଦେ। ଆଉ ଦେଖ, ସବୁ ଠିକ୍ ଅଛି କି ନା।"



ଆସନ ପ୍ରସ୍ତୁତ ଥିଲା। ରାଜକୁମାର ସ୍ୱୟଂ ତା' ଗ୍ରହଣ କଲେ। ସୁପ୍ପବାସା ଅଳ୍ପ ହସି ଶିବିର ତ୍ୟାଗ କଲା। ତିଷ୍ୟା ଗମ୍ଭୀର ସ୍ୱରରେ ସେମିତି ପଛକୁ ଫେରି କହିଲେ, "ଶୁଣିଲି ତମେମାନେ ଅଭୁକ୍ତ। କିନ୍ତୁ ରାଜକୁମାର କାହିଁକି ଅପ୍ରୟୋଜନରେ ପରିଚାରକମାନଙ୍କ ସହିତ ବସି ଆହାର ଗ୍ରହଣ କରିବେ? ତା'ଛଡ଼ା ମୁଁ ଅଛି ଜାଣି ସୁଦ୍ଧା।" ତିଷ୍ୟାଙ୍କ କଣ୍ଠରୋଧ ହେଲା।

"ମାର୍ଜନା କରିବେ। ମୋର ଅପରାଧ ହୋଇ ଯାଇଛି।"

"ଏଇଭଳି ଅପରାଧ କଲେ କେଉଁ ତଥାଗତ ମୋତେ ଶାନ୍ତି ଦେଇ ପାରିବେ, କହି ପାରିବ?" ଚାବୁକ୍ ଭଳି ପ୍ରଶ୍ନଟି ଫୋପାଡ଼ି ଦେଇ ବୁଲି ଠିଆ ହେଲେ

ତିଷ୍ୟା, "ଦୟା କରି ମୋ ସହିତ ସାକ୍ଷାତ ହେଲା ମାତ୍ରେ ଶାନ୍ତି ଶବ୍ଦଟି ଉଚ୍ଚାରଣ କର ନାହିଁ।"

ରାଜକୁମାର ମୁହଁ ଟେକି ଚାହିଁବା ମାତ୍ରେ ଚାରିଚକ୍ଷୁର ମିଳନ ହେଲା। ତିଷ୍ୟାଙ୍କର ସମସ୍ତ ମାନଅଭିମାନ ମୁହୂର୍ତ୍ତ ମଧ୍ୟରେ ମ୍ଳାନ ହୋଇଗଲା। ରାଜକୁମାର ଚକ୍ଷୁ ଅବନତ ନ କରିବା ପର୍ଯ୍ୟନ୍ତ ସେ ସ୍ଥିର ହୋଇ ରହିଲେ। ତାଙ୍କ ଭିତରେ କେଉଁଠି କଣ ଭାଙ୍ଗିଯାଉଥିଲା। ସେ ଦ୍ରୁତ ପ୍ରସଙ୍ଗ ପରିବର୍ତ୍ତନ କରିବାକୁ ଚାହିଁଲେ। କହିଲେ, "ମୁଁ କେବେ ସାରଙ୍ଗନାଥ ଯାଇନାହିଁ। ଶୁଣିଛି ସ୍ଥାନଟି ଅତ୍ୟନ୍ତ ମନୋରମ।"

ରାଜକୁମାର ସମର୍ଥନରେ ମସ୍ତକ ଆନ୍ଦୋଳିତ କଲେ, "ସ୍ଥାନଟି ଅତ୍ୟନ୍ତ ପବିତ୍ର।"

—"ବୀତଶୋକ କଣ ତାଙ୍କ ଦାୟିତ୍ୱ ସୁଚାରୁଭାବେ ପାଳନ କରିନାହାଁନ୍ତି ?"

—"ଖୁଲ୍ଲତାତଙ୍କ ସମ୍ପର୍କରେ ଏ ଧାରଣା ଅମୂଳକ।"

ତିଷ୍ୟା ରାଜକୁମାରଙ୍କୁ ବୁଝି ପାରିଲେ। ସେ କଦାପି ଏମିତି କଥା କହିବେ ନାହିଁ, ଯେଉଁଥିରେ ତାଙ୍କ ରୁଚି ନିମ୍ନମୁଖୀ ହୁଏ। ରାଜକୁମାରଙ୍କ ପାଇଁ ତାଙ୍କର କଷ୍ଟ ହେଉଥିଲା। ବିଚାରା ଜାଣିନାହାଁନ୍ତି ସିଂହାସନକୁ ନେଇ ଯେଉଁ ଅଗ୍ନି ପ୍ରଜ୍ୱଳିତ ହେବାକୁ ଯାଉଛି, ତାର ତାତିରୁ ଅବ୍ୟାହତି ପାଇବା ହେବ ସୁକଠିନ। ଏଇ ସମୟରେ ସୁପ୍ରବାସା ସୁଦୃଶ୍ୟ ପାତ୍ରରେ ଆହାର୍ଯ୍ୟ ବସ୍ତୁ ନେଇ ଆସିଲା।

ରାଜକୁମାରଙ୍କ ଆହାର ଶେଷ ହେଲା। ସେ ଆସନ ପରିତ୍ୟାଗ କରିବାର ଉପକ୍ରମ ଦେଖି ତିଷ୍ୟା କହିଲେ, "ତୁମ ସହିତ ମୋର କିଛି କଥା ଅଛି।"

—"ଆଦେଶ କରନ୍ତୁ।"

ଆଦେଶ ଶବ୍ଦଟି ଅତ୍ୟନ୍ତ ଅପସନ୍ଦ ହେଲା ତିଷ୍ୟାଙ୍କର। କିନ୍ତୁ ତା'ନେଇ ଅଧିକ କଥା କହି ସେ ମୂଳ ପ୍ରସଙ୍ଗକୁ ଆସିଲେ, "ସେଇ ରାତ୍ରିରେ ମୁଁ କଣ ଦୁର୍ବ୍ୟବହାର କରିଛି ?"

ରାଜକୁମାର ବିବ୍ରତ ବୋଧ କଲେ। କି ଉତ୍ତର ଦେବେ ସେ ? ସତ୍ୟ କଣ ମହାରାଣୀଙ୍କୁ ଭଲ ଲାଗିବ ? ଅକାରଣରେ କଷ୍ଟ ଦେବା ମଧ୍ୟ ସମୀଚୀନ ନୁହେଁ।

ତିଷ୍ୟା ମୁହୂର୍ତ୍ତେ ଅପେକ୍ଷା କଲେ। ତା'ପରେ ଦୀର୍ଘନିଶ୍ୱାସ ପକେଇ କହିଲେ, "ତୁମକୁ ମୋର କିଛି କଥା କହିବା ପ୍ରୟୋଜନ। ତୁମେ କଣ ମୋର ଇତିହାସ ଜାଣିଛ ?"

ରାଜକୁମାର କହିଲେ, "ଶୁଣିଚି, ପିତା କୌଣସି ଏକ ସମୟରେ ଆପଣଙ୍କୁ ବିବାହ କରିଥିଲେ।"

—"କେବଳ ଏତିକି ମାତ୍ର ?" ତିଷ୍ୟା କରୁଣଭାବେ ହସିଲେ। ତା'ପରେ ଗଭୀର ନିଶ୍ୱାସ ନେଇ ତାଙ୍କର ଇତିହାସ କହିବା ଆରମ୍ଭ କଲେ। ତାଙ୍କ ଜୀବନର ସମସ୍ତ ଘଟଣା, ଗୋଟିକ ପରେ ଗୋଟିଏ ଯନ୍ତ୍ରଣାର କାହାଣୀ ନିଃସଙ୍କୋଚରେ କହିଗଲେ।

କେତେବେଳେ ଯେ ତାଙ୍କ ଦୁଇ ଆଖିରୁ ଲୁହ ବହି ଆସିଛି, ସେ ନିଜେ ବି ଖିଆଲ କରିନାହାଁନ୍ତି । ଯେତେବେଳେ ରାଜକୁମାର ଭାରୀ ଗଳାରେ କହିଲେ, ''ମହାରାଣୀ ଶାନ୍ତ ହୁଅନ୍ତୁ'', ସେତେବେଳେ ଯାଇ ସେ ଚେତନାକୁ ଫେରିଲେ । ଏବଂ ତତ୍‌କ୍ଷଣାତ୍



କ୍ଷୁବ୍ଧସ୍ୱରରେ କହିଉଠିଲେ, ''ତୁମର ମନେ ହୋଇପାରେ ସେ ଦିନ ମୁଁ ଅସଂଲଗ୍ନ ବ୍ୟବହାର କରିଥିଲି। କିନ୍ତୁ ମୁଁ ଯେ ତୁମରି କଥା ଭାବି ଏତେକାଳ ବଞ୍ଚି ରହିଛି! ପୃଥିବୀର କୌଣସି ଶକ୍ତି ନାହିଁ, ମୋ ମନରୁ ତୁମକୁ ଅପସାରିତ କରାଇପାରେ! ଏଭଳି ସାଧ କାହାରି ନାହିଁ। ଏପରିକି ତୁମର ତଥାଗତ ମଧ-ପାରିବେ ନାହିଁ।''

ରାଜକୁମାର ଦ୍ରୁତ କାନ ଢାଙ୍କିଲେ, ''ଏ ସବୁ କଥା ଉଚ୍ଚାରଣ କରିବେ ନାହିଁ।''

''କାହିଁକି କରିବି ନାହିଁ? କାହିଁକି ତମେ ଶୁଣିବନି? ଗୋଟିଏ ଝିଅ ତୁମପାଇଁ କାଙ୍ଗାଳୁଣୀ ହୋଇ ରହିଛି। କେବଳ ଧୂସର ହୋଇ ଯାଇଥିବା କେତେଗୋଟି ବିବାହର ମନ୍ତ୍ର ପାଇଁ ତାକୁ ଦୂରେଇ ଦେବ? ଏ କେମିତି ବିଚାର?'' ତିଷ୍ୟା ଉଠିଲେ ତାଙ୍କ ଆସନରୁ। ତା'ପରେ ରାଜକୁମାରଙ୍କ ପାଦ ପାଖରେ ଅବନତ ହୋଇ କହିଲେ, ''ତୁମେ ମୋତେ ଗ୍ରହଣ କର। ମୋର ଏଇ ବକ୍ଷରେ ମୁଣ୍ଡ ନ ରଖିଲେ ଚିତା ଲିଭିବ ନାହିଁ। ରାଜକୁମାର ତୁମ ପାଦ ଧରୁଛି, ମୋତେ ଦୟା କର।''

ରାଜକୁମାର ଯେମିତି ଅଗ୍ନିଦଗ୍ଧ, ଏଭଳି ଅନୁଭୂତି ନେଇ ଆସନ ଛାଡ଼ି ଉଠି ଠିଆହେଲେ। ତା'ପରେ ମୁହଁ ଫେରାଇ ନେଇ କହିଲେ, ''ଆପଣ ମୋତେ ଅକାରଣରେ ପାପ ପଥକୁ ଟାଣି ନେଇ ଯାଉଛନ୍ତି।''

—''ପାପ?'' ତିଷ୍ୟାଙ୍କ ହୃଦୟ ଯେମିତି ବିଦୀର୍ଣ୍ଣ ହେଲା।

—''ନିଶ୍ଚୟ। ଜନନୀ ମୁଖରୁ ଏଇଭଳି ବାକ୍ୟ ଶୁଣିବା ମହାପାପ। ଆପଣଙ୍କୁ ମୁଁ ଅନୁରୋଧ କରୁଛି, ମନରୁ କଳ୍ପିତ ଧାରଣା ଦୂର କରନ୍ତୁ। ମୁଁ ସମ୍ପର୍କରେ ଆପଣଙ୍କ ସନ୍ତାନ। ଏଇ ବାସ୍ତବକୁ ଅସ୍ୱୀକାର କରିବେ ନାହିଁ। ପିତା ଆପଣଙ୍କୁ ଯେଉଁ ସମ୍ମାନ ଦେଇଛନ୍ତି ତାର ମର୍ଯ୍ୟାଦା ରକ୍ଷା କରି ତଥାଗତଙ୍କ ଶରଣ ଗ୍ରହଣ କରନ୍ତୁ। ମୁଁ ଯାଉଛି।''

—''ନା -। ତୁମେ ଯାଇ ପାରିବ ନାହିଁ।''

—''ଏ କଥାର ଅର୍ଥ?''

—''ତୁମକୁ ନିଭୃତରେ ପାଇବି ବୋଲି ମୁଁ ରାଜଧାନୀ ଛାଡ଼ି ଏତେ ଦୂରରେ ରହିଛି। ତୁମେ ମଣିଷ ତିଆରି ସମ୍ପର୍କ ଗୁଡ଼ିକ କଥା ଭୁଲିଯାଅ। ବିଶ୍ୱାସ କର, ମୋ ଭଳି କେହି ତୁମକୁ ଭଲପାଇ ପାରିବେ ନାହିଁ। ତୁମେ ସୁଖୀ ହେବ, ଆମେ ସୁଖୀ ହେବା।''

—''ଛିଃ। ଆପଣ ବାକ୍‌ସଂଯତ କରନ୍ତୁ। ଆପଣଙ୍କ ଏସବୁ କଥା କାହାକୁ କହିପାରିବି ନାହିଁ। କିନ୍ତୁ ଉପଗୁପ୍ତ ଯଦି ଜାଣିବାକୁ ଚାହାଁନ୍ତି, ତେବେ ତାଙ୍କୁ ନ ଜଣେଇ ମୋର ଉପାୟ ନାହିଁ। ଆପଣଙ୍କୁ ମୋର ଅନୁରୋଧ, ଆଉ ମୋତେ ଯନ୍ତ୍ରଣା ଦିଅନ୍ତୁ ନାହିଁ।''

—''ଓ। ମୋର ଅପରାଧ ମୁଁ ଏଇ ଜରାଗ୍ରସ୍ତ ମଣିଷଟିର ପରିଚୟରେ ପରିଚିତ ବୋଲି? ଯଦି ତା' ନ ହୋଇଥାନ୍ତି ତେବେ ତୁମେ ଆପତ୍ତି କରି ନ ଥାନ୍ତ?''

ସରଳ ଭାବେ ହସିଲେ ରାଜକୁମାର, "ନା। ଜନନୀ! ପୃଥିବୀର କୌଣସି ନାରୀ ପ୍ରତି ଆଉ ମୋର ଆକର୍ଷଣ ନାହିଁ। ଯିଏ ଥରେ ଅମୃତର ସ୍ୱାଦ ପାଇଛି, ତା ନିକଟରେ ଅତ୍ୟନ୍ତ ସୁସ୍ୱାଦୁ ଫଳରସ ମଧ୍ୟ ଅବାନ୍ତର ମନେ ହୁଏ। ତଥାଗତଙ୍କ ବ୍ୟତୀତ ମୁଁ ଅନ୍ୟ କିଛି ଚିନ୍ତା କରିପାରେନା। ଜନନୀ, ମୋତେ ବିଦାୟ ଦିଅନ୍ତୁ।"

ରାଜକୁମାର ଆଉ ସେଠାରେ ରହିଲେ ନାହିଁ। ସେତେବେଳେ ଘନ ଅରଣ୍ୟର ବୃକ୍ଷ ଶାଖାରେ ପକ୍ଷୀଗଣ ନିଦ୍ରିତ। ଏମିତି ନିସ୍ତବ୍ଧ ଅରଣ୍ୟ ପୂର୍ବରୁ କେବେ ବୋଧହୁଏ ହୋଇନାହିଁ। ମଧ୍ୟରାତ୍ରିର ପବନ ନଦୀବୁକୁରେ ମୃଦୁ ଆଲୋଡ଼ନ ତୋଳି ତିଷ୍ୟାଙ୍କ ବାତାୟନ ଦେଇ ପ୍ରବେଶ କରୁଥିଲା। ଭୂପତିତା ତିଷ୍ୟାଙ୍କ ଦୁଇ ଆଖିରେ ଲୁହ ନାହିଁ। ସେ ରାଜକୁମାରଙ୍କ ଯିବା ପଥକୁ ନିର୍ନିମେଷ ଚାହିଁଥିଲେ। ତାଙ୍କ ଦୃଷ୍ଟିରେ ଅଗ୍ନିର ଅନୁଭୂତି। ନା, ଆଉ କୌଣସି ନରମ ଆବେଦନ ନୁହେଁ; ଯାହା ସହଜରେ ମିଳେ ନାହିଁ, ତା'କୁ ଯେ କୌଣସି କୌଶଳରେ ସେ ନିଶ୍ଚୟ ଆଦାୟ କରିବେ। ସେ ସୁନ୍ଦର ଆଉ ସୁକୁମାର ମୁହଁର ଏକମାତ୍ର ସ୍ଥାନ ଏଇ ବୁକୁରେ।

କିଛିଦିନ ଯାବତ୍ ସମ୍ରାଟଙ୍କ ଶରୀର ଅସୁସ୍ଥ। ଅଳ୍ପ ବୟସର ଉଚ୍ଛୃଙ୍ଖଳତା ତାଙ୍କ ଦେହରେ ଅକାଳ ଜରାପ୍ରବେଶକୁ ତ୍ୱରାନ୍ୱିତ କରିଥିଲା। ତଥାଗତଙ୍କ ଆଶ୍ରୟ ଗ୍ରହଣ କରିବା ପରେ ସମ୍ରାଟ ଅପାର ଶାନ୍ତିର ସନ୍ଧାନ ପାଇଛନ୍ତି। କିନ୍ତୁ ସମ୍ପ୍ରତି କିଛି ଶାରୀରିକ ଅସୁବିଧା ତାଙ୍କୁ ବିବ୍ରତ କରୁଛି।

ବୋଧିସତ୍ତ୍ୱଙ୍କ ମହାପରିନିର୍ବାଣ ପରେ ଦୁଇଶତ ବର୍ଷ ଅତିକ୍ରାନ୍ତ ହୋଇଛି। ସମ୍ରାଟଙ୍କ ପ୍ରବଳ ପ୍ରଚେଷ୍ଟାରେ କେବଳ ଲୁମ୍ବିନୀ, ଉରୁବେଲା, ସାରଙ୍ଗନାଥ, କୁଶୀନଗର, ଶ୍ରାବସ୍ତୀ, ରାଜଗୃହ, ବୈଶାଳୀ, ସାଂକାଶ୍ୟ, ତକ୍ଷଶୀଳା କିମ୍ବା ନାଳନ୍ଦାରେ ବୌଦ୍ଧଧର୍ମମତ ସୀମାବଦ୍ଧ ନ ହୋଇ ବିସ୍ତାରିତ ହୋଇଛି ଦେଶର ବିଭିନ୍ନ ଅଂଶରେ ଏବଂ ବିଦେଶରେ। କିନ୍ତୁ ସମ୍ରାଟ ଜାଣିଛନ୍ତି ତାଙ୍କ ମୃତ୍ୟୁ ପରେ ଏତେବଡ଼ ସାମ୍ରାଜ୍ୟକୁ ଏକ ସିଂହାସନ ଅଧୀନରେ ରଖିବା କଷ୍ଟକର ହେବ। ଧର୍ମଚିନ୍ତା ପୁତ୍ରମାନଙ୍କୁ ରାଜନୀତିରୁ ଦୂରରେ ରଖିଛି। ମଣିଷ ହୃଦୟରେ ତାଙ୍କ ପ୍ରଚାରିତ ଗୌତମଙ୍କ ଉପଦେଶ କ୍ଷଣିକ ପ୍ରତିକ୍ରିୟା ସୃଷ୍ଟି

କରିଛିଏ କିନ୍ତୁ ନିରନ୍ତର ସେ ବିଷୟରେ ଚର୍ଚ୍ଚା ନ ହେଲେ ପୁଣି ଲୋଭ ଏବଂ ଈର୍ଷା ତା ସ୍ଥାନ ଅଧିକାର କରିବ। ସେ କ୍ଷେତ୍ରରେ ବିଦ୍ରୋହ ଅନିବାର୍ଯ୍ୟ। ଏହା ବ୍ୟତୀତ ଖଲ୍ଲାତକଙ୍କ ସମ୍ପର୍କରେ ସେ ଖୁସି ନୁହଁନ୍ତି। ଉତ୍ତମ ପ୍ରଶାସକ; କିନ୍ତୁ ରାଜ୍ୟଜୟର ଲୋଭ ସେ ପରିତ୍ୟାଗ କରିପାରୁ ନାହିଁ। ଏତେଦିନ ଧରି ନିଜକୁ ନିଃଶେଷ କରି ସେ ଯେଉଁ ବାତାବରଣ ଦେଶରେ ସୃଷ୍ଟି କରିଛନ୍ତି ତା' ଖଲ୍ଲାତକ ନଷ୍ଟ କରିଦେବ, ତା' କେମିତି ସହ୍ୟ ହେବ? ଯେ କୌଣସି ମୁହୂର୍ତ୍ତରେ ସେ ଖଲ୍ଲାତକଙ୍କୁ ଅପସାରିତ କରିପାରନ୍ତି, କିନ୍ତୁ ତାର ଅନ୍ୟାନ୍ୟ ଗୁଣର ବିକଳ୍ପ କୌଣସି ବ୍ୟକ୍ତି ଯେ ମିଳୁ ନାହିଁ।

ବୀତଶୋକ ସମ୍ପର୍କରେ ମଧ୍ୟ ସମ୍ପ୍ରତି ସେ ଖୁସି ନୁହଁନ୍ତି। ବୌଦ୍ଧଧର୍ମରେ ଦୀକ୍ଷିତ ହେବା ସତ୍ତ୍ୱେ ସେ ସ୍ଥିର ନୁହେଁ। ବହୁ ସମୟରେ କୌତୂହଳ ପ୍ରକାଶର ଆଳ କରି ଧର୍ମବିରୁଦ୍ଧ କଥା କହେ, କାମ ମଧ୍ୟ କରେ। ଏଇ କନିଷ୍ଠ ଭ୍ରାତାଟି ପରବର୍ତ୍ତୀ କାଳରେ ସିଂହାସନ ଆରୋହଣ କଲେ ଦେଶର କି ଅବସ୍ଥା ହେବ, ତା' ସେ ଚିନ୍ତା ବି କରିପାରନ୍ତି ନାହିଁ। ମେରୁଦଣ୍ଡହୀନ ଲୋକ କଣ କେବେ ରାଜ୍ୟଶାସନ କରିପାରେ! ରାଜକୁମାରଙ୍କ ସମ୍ପର୍କରେ ତାଙ୍କ ସ୍ନେହ ସର୍ବାଧିକ। କିନ୍ତୁ ସେ ତ ନିଜକୁ ତଥାଗତଙ୍କ ପାଦରେ ଉତ୍ସର୍ଗ କରିଛନ୍ତି। ସମ୍ରାଟ ସର୍ବତୋକରଣରେ ଚାହୁଁଥିଲେ ତାଙ୍କ ଜ୍ୟେଷ୍ଠ ପୁତ୍ର ଦେଶକୁ ପ୍ରତ୍ୟାଗମନ କରୁ। ଏଇ ସମୟରେ ସେ ଶଯ୍ୟାଶାୟୀ ହୋଇପଡ଼ିଲେ। ତାଙ୍କ ଉଦରରେ ପ୍ରଚଣ୍ଡ ଯନ୍ତ୍ରଣା ହେଉଥିଲା ଗତ କିଛି ଦିନ ଧରି। ସାମାନ୍ୟ ତାପ ବଢ଼ିଛି ଦେହରେ। ରାଜବୈଦ୍ୟ ବହୁ ଚେଷ୍ଟା କରୁଛନ୍ତି, କିନ୍ତୁ କୌଣସିମତେ ରୋଗ ଉପଶମ ହେଉନାହିଁ।

ଦେଶର ସର୍ବତ୍ର ସମ୍ରାଟଙ୍କ ଅସୁସ୍ଥତାର ଖବର ପ୍ରଚାରିତ ହେଲା। ସମସ୍ତ ଆନନ୍ଦାନୁଷ୍ଠାନ ସ୍ଥଗିତ ହେଲା। ସମ୍ବାଦ ପହଞ୍ଚିଲା ଉରୁବେଳାରେ। ସେଠାରେ ସନ୍ନ୍ୟାସୀ ଉପଗୁପ୍ତ ନବନିର୍ମିତ ଚୈତ୍ୟକୁ ଉପାସନା ଉପଲକ୍ଷେ ଯାଇଥିଲେ। କାଳବିଳମ୍ବ ନ କରି ସେ ଫେରିଆସିଲେ ରାଜଧାନୀକୁ। ତା'ପରେ ସମ୍ରାଟଙ୍କ ଶଯ୍ୟା ପାଖରେ ଉପସ୍ଥିତ ହେଲେ। ସମ୍ରାଟ ତାଙ୍କୁ ଦର୍ଶନ କରିବା ମାତ୍ରେ କାନ୍ଦି ପକେଇଲେ। ବାରମ୍ବାର ଆବେଦନ କରିବାକୁ ଲାଗିଲେ, ଯେମିତି ତଥାଗତଙ୍କ ଅଂଶ ନେଇ ଉପସ୍ଥିତ ସନ୍ନ୍ୟାସୀ ତାଙ୍କର ଜ୍ୱାଳାଯନ୍ତ୍ରଣା ଦୂର କରି ଦିଅନ୍ତି।

ଉପଗୁପ୍ତ କେବଳ ତ୍ରିଶରଣ ମନ୍ତ୍ର ଉଚ୍ଚାରଣ କଲେ। ସେ ଯେତେବେଳେ ଉଚ୍ଚାରଣ କଲେ, ''ତତିୟମ୍ପି ସଂଘ ଶରଣଂ ଗଚ୍ଛାମି'', ସେତେବେଳେ କିଞ୍ଚିତ ମାନସିକ ଶାନ୍ତି ବୋଧ କଲେ ସମ୍ରାଟ। ତାହା ଅନୁଭୂତ ହେବାମାତ୍ରେ ସମ୍ରାଟ ଆବିଷ୍କାର କଲେ, ତେବେ ଏତେବେଳଯାଏଁ ଦେହ ସହ ମନର ମଧ୍ୟ ଅଶାନ୍ତି ଥିଲା। ସେ ଜାଣିଛନ୍ତି, ଅନ୍ତରୀକ୍ଷରେ, ପର୍ବତରେ ବା ସମୁଦ୍ରରେ ଏମିତି କୌଣସି ସ୍ଥାନ ନାହିଁ— ଯେଉଁଠାକୁ

ଗଲେ ହୃଦୟରେ ଶାନ୍ତି ଆସେ, ଯଦି ତାହା ନିଜେ ଅର୍ଜନ କରା ନ ଯାଏ। ସନ୍ନ୍ୟାସୀ ଉପଗୁପ୍ତଙ୍କ ଆଶୀର୍ବାଦ ଅଶାନ୍ତି ହ୍ରାସ କରିପାରେ ମାତ୍ର। ତାଙ୍କୁ କିନ୍ତୁ କାର୍ଯ୍ୟ କରିବାକୁ ହେବ। ନିଜର କର୍ମଫଳ ଭୋଗ ଶେଷ ହୋଇନାହିଁ ଏବେ ସୁଦ୍ଧା। ଏଇ କାରଣରୁ ତାଙ୍କୁ ବଞ୍ଚି ରହିବାକୁ ପଡ଼ିବ। ଆଉ ସେଥିପାଇଁ ଶରୀରର କ୍ଳେଶ ଦୂର ହେବା ପ୍ରୟୋଜନ। ପ୍ରୟୋଜନ ହେଲେ ପୃଥିବୀର ଶ୍ରେଷ୍ଠ ବୈଦ୍ୟକୁ ଅଣାଯିବ। ଉପଗୁପ୍ତ କହିଲେ, "ଶାନ୍ତ ହୁଅ। ଭଗବାନଙ୍କୁ ସ୍ମରଣ କର। ସେ ନିଶ୍ଚୟ ତୁମକୁ ବିମୁଖ କରିବେ ନାହିଁ।"

କିନ୍ତୁ ସେଦିନ ଅପରାହ୍ନରେ ରାଜକୁମାର ବିମର୍ଷ ମୁହଁରେ ପିତାଙ୍କ ଶଯ୍ୟା ପାର୍ଶ୍ୱରେ ବସି ଯନ୍ତ୍ରଣାର ସ୍ୱରୂପ ଦର୍ଶନ କଲେ। ପ୍ରଚଣ୍ଡ କଷ୍ଟ ପାଉଛନ୍ତି ସମ୍ରାଟ। ତାଙ୍କୁ ମୂତ୍ରକୃଚ୍ଛ୍ର ହୋଇଛି। ଉଦର ସ୍ଫୀତ। ଯନ୍ତ୍ରଣା ତୀବ୍ରତର ହେଲେ ପିତା ସବୁକିଛି ବିସ୍ମୃତ ହେଉଛନ୍ତି। ଏମିତିକି ତଥାଗତ ପର୍ଯ୍ୟନ୍ତ ତାଙ୍କ ସ୍ମରଣକୁ ଆସୁ ନାହାଁନ୍ତି। ମାନବଜୀବନର ଜୀର୍ଣ୍ଣତା ସମ୍ପର୍କରେ ଅବହିତ ହୋଇ ରାଜକୁମାର ଛୁଟିଗଲେ ଉପଗୁପ୍ତଙ୍କ ନିକଟକୁ। ଉପଗୁପ୍ତ ତାଙ୍କୁ ଶାନ୍ତ ହେବା ପାଇଁ କହି ଉପଦେଶ ସ୍ମରଣ କରାଇ ଦେଲେ, "ନିଜର କୃତକର୍ମରେ ମଣିଷ ନିଜେ ହିଁ ସଂଶ୍ଳିଷ୍ଟ ହୁଏ। କେହି କାହାକୁ ବିଶୁଦ୍ଧ କରେଇ ପାରେ ନାହିଁ।"

ସମ୍ରାଟ ମୃତ୍ୟୁଶଯ୍ୟାରେ। ବୈଦ୍ୟମାନେ ଆଶା ଛାଡ଼ି ଦେଇଛନ୍ତି। ତାଙ୍କ ଉଦର ଦେଶରେ ଯନ୍ତ୍ରଣା କ୍ରମଶଃ ବଢ଼ି ଚାଲିଛି– ଏ ସମ୍ବାଦ ସର୍ବତ୍ର ପହଞ୍ଚି ଯିବାରୁ ଶୋକର ଛାୟା ଓହ୍ଲେଇ ଆସିଲା ସାରା ମଗଧରେ। ସାମ୍ରାଜ୍ୟର ସମସ୍ତ ଲୋକେ ପ୍ରାର୍ଥନା କରିବାକୁ ଲାଗିଲେ ତଥାଗତ ଯେମିତି ସମ୍ରାଟଙ୍କୁ ସୁସ୍ଥ କରି ତୋଳନ୍ତୁ। ରାଣୀ ପଦ୍ମାବତୀ ଆହାର ତ୍ୟାଗ କରି ଦିନରାତି ଆରାଧନା ଆରମ୍ଭ କଲେ। ସମ୍ବାଦ ପହଞ୍ଚିଲା ତିଷ୍ୟାଙ୍କ ପ୍ରାସାଦରେ। ସୁପ୍ରବାସା କହିଲା, "ମହାରାଣୀ, ସମ୍ରାଟ ଚାଲିଗଲେ ଆମର କଣ ହେବ? ଖଲ୍ଲାତକ କୁଆଡ଼େ ବୀତଶୋକଙ୍କୁ ପ୍ରସ୍ତୁତ ହେବାକୁ କହିଛନ୍ତି।"

"ବୀତଶୋକ! ତାକୁ ଥରେ ଖବର ଦେ।"

ସମ୍ବାଦ ପ୍ରେରଣ କରାଗଲା। କିନ୍ତୁ ବୀତଶୋକ ଜଣେଇଲେ, ସେ ଅତ୍ୟନ୍ତ ବ୍ୟସ୍ତ। ସମୟ ହେଲାମାତ୍ରେ ସାକ୍ଷାତ କରିବେ। ତିଷ୍ୟାଙ୍କର ସନ୍ଦେହ ହେଲା। ସେ ଯେଉଁସବୁ

କଥା ବୀତଶୋକଙ୍କୁ କହିଛନ୍ତି ସେଗୁଡ଼ିକ ଯଦି ଖଲ୍ଲାତକ କାନରେ ପହଞ୍ଚିଯାଏ, ତେବେ ତାର ଫଳ ନିଶ୍ଚୟ ହେବ ଭୟାନକ। ଦୁଇଦିନ ଧରି ତାଙ୍କ ମସ୍ତିଷ୍କରେ ଅନ୍ୟ ଏକ ଚିନ୍ତା କାର୍ଯ୍ୟ କରୁଥିଲା। ବୀତଶୋକ ସମ୍ରାଟ ହେଲେ ରାଜକୁମାର ନିଶ୍ଚୟ ବିତାଡ଼ିତ ହେବେ। ତାଙ୍କ ନିଜ ଅବସ୍ଥା ମଧ୍ୟ କଣ ହେବ କିଏ ଜାଣେ! ବୀତଶୋକ ଏକାକୀ ହେଲେ ସେ ତାଙ୍କୁ ନିୟନ୍ତ୍ରିତ କରିପାରିଥାନ୍ତେ, କିନ୍ତୁ ଖଲ୍ଲାତକଙ୍କୁ ସେ ବିଶ୍ବାସ କରିପାରୁନାହାଁନ୍ତି। ଅତଏବ ତାଙ୍କ ନିଜ ସ୍ୱାର୍ଥ ପାଇଁ ଆପାତତଃ ସମ୍ରାଟଙ୍କୁ ଜୀବିତ ରଖିବା ପ୍ରୟୋଜନ। ଏବଂ ସେ ବିଷୟରେ ତାଙ୍କର ଯଦି ଅନ୍ୟତମ ଭୂମିକା ଥାଏ, ତେବେ ସମ୍ରାଟ ନିଶ୍ଚୟ କୃତଜ୍ଞ ହେବେ। କିନ୍ତୁ ସେ କଣ ପାରିବେ ?

ପ୍ରାସାଦରୁ ଅଶ୍ବଚାଳିତ ରଥଯୋଗେ ତିଷ୍ୟା ଯାତ୍ରାକଲେ ରାଜ ପ୍ରାସାଦ ଅଭିମୁଖେ। ରାଜପଥରେ ନାଗରିକଗଣ ବିମର୍ଷ, ଏପରିକି ରାସ୍ତାରେ ଲୋକଚଳାଚଳ ମଧ୍ୟ କମିଗଲାଣି।

ପୂର୍ବରୁ ହିଁ ସୁପ୍ରବାସା ସମ୍ବାଦ ଦେଇଥିଲା। ମହାରାଣୀ ଉପସ୍ଥିତ ହେବାମାତ୍ରେ ତାଙ୍କୁ ସମ୍ରାଟଙ୍କ ଶଯ୍ୟା ପାଖକୁ ପାଛୋଟି ନିଆଗଲା। ଜରାଗ୍ରସ୍ତ ସମ୍ରାଟଙ୍କୁ ଏବେ ଆହୁରି କରୁଣ ଦେଖାଯାଉଛି। ମହାରାଣୀ କକ୍ଷମଧ୍ୟକୁ ପ୍ରବେଶ କରି ଦେଖିଲେ ସେଠାରେ ଅନେକ ଲୋକ, କେହି କେହି କ୍ରନ୍ଦନ କରୁଛନ୍ତି ନିମ୍ନସ୍ବରରେ। ଏମାନେ ସମସ୍ତେ ରାଜ ପରିବାର ଅନ୍ତର୍ଭୁକ୍ତ। ସମ୍ରାଟଙ୍କ ପାଖରେ ଠିଆ ହେବାମାତ୍ରେ, କାତର ଆଖିରେ ଚାହିଁଲେ। ଏଇ ସମୟରେ ମହାରାଣୀଙ୍କ ଦୃଷ୍ଟି ପଡ଼ିଲା ରାଜକୁମାରଙ୍କ ଉପରେ। ମୁହୂର୍ତ୍ତ ମଧ୍ୟରେ ମନ ସ୍ଥିର କଲେ ତିଷ୍ୟା। ତା'ପରେ କଠୋର ସ୍ବରରେ ରାଜବୈଦ୍ୟଙ୍କୁ ଜିଜ୍ଞାସା କଲେ, "ଏଭଳି ଜଣେ ଅସୁସ୍ଥ ମଣିଷଙ୍କ ଚାରିପାଖରେ ଏତେ ଭିଡ଼ କାହିଁକି ? ପବନ ଆସିବା ପଥ ମଧ୍ୟ ରୁଦ୍ଧ ରହିଛି। ସମସ୍ତଙ୍କୁ କକ୍ଷରୁ ଚାଲିଯିବାକୁ କହନ୍ତୁ।"

ରାଜବୈଦ୍ୟଙ୍କୁ ଆଦେଶଟି ଜଣାଇବାର ପ୍ରୟୋଜନ ହେଲାନାହିଁ। ପ୍ରଥମେ ରାଜକୁମାର ଏବଂ ତାଙ୍କ ପରେ ଅନ୍ୟମାନେ କକ୍ଷତ୍ୟାଗ କଲେ। ତିଷ୍ୟା ସାମାନ୍ୟ ଆଶ୍ଚର୍ଯ୍ୟ ହେଲେ। ସେ ଭାବିଥିଲେ ରାଜକୁମାର ନିଶ୍ଚୟ ପ୍ରତିବାଦ କରିବେ। ଏଥର ସେ ରାଜବୈଦ୍ୟଙ୍କଠାରୁ ସମ୍ରାଟଙ୍କ ରୋଗ-ସଂକ୍ରାନ୍ତ ତଥ୍ୟ ଜାଣିବାକୁ ଚାହିଁଲେ। ସବୁକିଛି ଶୁଣିବା ପରେ ତାଙ୍କର ସ୍ମରଣ ହେଲା ପିତୃଦେବ ଏଇଭଳି ରୋଗ-ନିଦାନରେ କୃତକାର୍ଯ୍ୟ ହୋଇଥିଲେ। କିନ୍ତୁ ସେ ସମ୍ପର୍କରେ ତାଙ୍କ ଜ୍ଞାନ ନିତାନ୍ତ କମ। କୌଣସି ଚାକ୍ଷୁଷ

ଅଭିଜ୍ଞତା ନାହିଁ। କିନ୍ତୁ ବର୍ତ୍ତମାନ ପିତୃଦେବଙ୍କୁ ସମ୍ବାଦ ଦେଲେ ଏତେ ବାଟ ଅତିକ୍ରମ କରି ପହଞ୍ଚିବା ପୂର୍ବରୁ ହିଁ ଘଟଣା ଘଟିଯାଇପାରେ। ସେ ରାଜବୈଦ୍ୟଙ୍କୁ ଜିଜ୍ଞାସା କଲେ, ''ଆପଣ କଣ ମନେ କରନ୍ତି ସମ୍ରାଟଙ୍କ ପରମାୟୁ ସୀମିତ ?'' ଇସାରାରେ ସେ କଥା ସମର୍ଥନ କଲେ ରାଜବୈଦ୍ୟ।

ତିଷ୍ୟା ବିନୀତ ସ୍ୱରରେ ଜିଜ୍ଞାସା କଲେ, ''ଆପଣ କଣ ମୋତେ ଥରେ ସୁଯୋଗ ଦେବେ ? ମୁଁ ଚେଷ୍ଟା କରିବାକୁ ଚାହେଁ।''

ରାଜବୈଦ୍ୟ ବିସ୍ମିତ। ସେ ତିଷ୍ୟାଙ୍କ ଅତୀତ ସମ୍ପର୍କରେ କିଛି ଜାଣି ନଥିଲେ। କିନ୍ତୁ ମହାରାଣୀ ଯେତେବେଳେ ଇଚ୍ଛା ପ୍ରକାଶ କରିଛନ୍ତି ଏବଂ ସମ୍ମୁଖରେ ଅନ୍ୟ କୌଣସି ପଥ ନାହିଁ, ସେତେବେଳେ ସମ୍ମତି ନ ଦେବାର କୌଣସି କାରଣ ନାହିଁ।

ତିଷ୍ୟା ଖୁସି ହେଲେ। ଏବଂ ତା' ସହିତ ତାଙ୍କ ଛାତି ଭିତରେ ଭୂମିକମ୍ପ ଆରମ୍ଭ ହେଲା। ସେ ଜାଣିନାହାଁନ୍ତି ପରିଣତି କଣ ହେବ, କିନ୍ତୁ ଏହା ସହିତ ଜଡ଼ିତ ରହିଛି ତାଙ୍କର ସମସ୍ତ ଗୌରବ, ତାଙ୍କ ଆକାଙ୍‌କ୍ଷାରେ ପରିତୃପ୍ତି। ସେ ଦୃଢ଼ ସଂକଳ୍ପ ହେଲେ। ରାଜବୈଦ୍ୟଙ୍କୁ ସେ କହିଲେ, ''ଆପଣ ଗୃହକୁ ଫେରିଯା'ନ୍ତୁ। ବର୍ତ୍ତମାନଠୁଁ ସମ୍ରାଟଙ୍କ ସମସ୍ତ ଦାୟିତ୍ୱ ମୁଁ ଗ୍ରହଣ କରୁଛି। ଆପଣମାନେ ଯେତେବେଳେ ପ୍ରକାଶ୍ୟରେ ଘୋଷଣା କରିଛନ୍ତି ସମ୍ରାଟଙ୍କ ନିରାମୟର କୌଣସି ଉପାୟ ଆପଣମାନଙ୍କୁ ଜଣା ନାହିଁ, ସେତେବେଳେ ଏ ବ୍ୟବସ୍ଥାରେ ଆପଣ ନିଶ୍ଚୟ ଅସନ୍ତୁଷ୍ଟ ହେବେ ନାହିଁ।''

ରାଜବୈଦ୍ୟ କକ୍ଷ ତ୍ୟାଗ କଲେ। ତିଷ୍ୟା ସମ୍ରାଟଙ୍କ ଆଡ଼କୁ ଚାହିଁଲେ। ବର୍ତ୍ତମାନ ସେମାନେ ଦୁଇଜଣ। କକ୍ଷରେ ଆଉ କେହି ନାହାଁନ୍ତି। ସମ୍ରାଟଙ୍କ ଶଯ୍ୟା ପାର୍ଶ୍ୱରେ ଉପବେଶନ କଲାମାତ୍ରେ ଅସ୍ୱସ୍ତି ଅନୁଭବ କଲେ ସେ। ସମ୍ରାଟଙ୍କ ଶରୀରରୁ ରୋଗର ଦୁର୍ଗନ୍ଧ। କିନ୍ତୁ ତା' ସତ୍ତ୍ୱେ ସେ ନିଜକୁ ସଂଯତ କଲେ। ତା'ପରେ ସମ୍ରାଟଙ୍କ ଲଲାଟରେ ମୃଦୁ ହସ୍ତଚାଳନା କଲାମାତ୍ରେ ସେ ଆଖି ଖୋଲିଲେ। କିଛି ସମୟ ତିଷ୍ୟାଙ୍କ ଆଡ଼କୁ ଚାହିଁ ସମ୍ରାଟ କାତର ଗଳାରେ କହିଲେ, ''ଏଠି ମୋ ପାଖରେ ତୁମକୁ ଖରାପ ଲାଗୁନି ?''

ତିଷ୍ୟା ହସିଲେ। ତା'ପରେ କହିଲେ, ''ସମ୍ରାଟ କଣ ଜୀବନର ଆଶା ତ୍ୟାଗ କରିଛନ୍ତି ?''

—''ନା। ମୁଁ ବଞ୍ଚିବାକୁ ଚାହେଁ।'' ତୀବ୍ର ଅଭିଳାଷ ଛିଟ୍‌କି ବାହାରି ଆସିଲା ସମ୍ରାଟଙ୍କ କଣ୍ଠରୁ।

''କିନ୍ତୁ ରାଜବୈଦ୍ୟ ତ ଅକ୍ଷମତା ପ୍ରକାଶ କରିଛନ୍ତି।'' ତିଷ୍ୟା କଠୋର ଗଳାରେ ଜଣେଇଲେ। ''ଅଥଚ କାହିଁକି ଆପଣ ବଞ୍ଚିବାକୁ ଚାହାଁନ୍ତି ?''

—''ମୋର କର୍ମଫଳ ଭୋଗ ଏବେ ସୁଦ୍ଧା ଯେ ସରିନାହିଁ।''

—"ମୁଁ ଯଦି ଆପଣଙ୍କୁ ମୃତ୍ୟୁରୁ ଫେରେଇ ଆଣେ ?"

—"ତେବେ ଦୟା କର ମହାରାଣୀ, ମୋତେ କୃତାର୍ଥ କର।"

—"କିନ୍ତୁ ପ୍ରତିବଦଳରେ ମୁଁ କଣ ପାଇବି ?"



—"ଯାହା ତୁମେ ଚାହିଁବ। ପ୍ରାଣର ବିନିମୟରେ ତୁମକୁ ଅଦେୟ ମୋର କିଛି ନାହିଁ। ତୁମେ ଯଦି ମୋତେ ରୋଗ ମୁକ୍ତ କରିପାର"— ସମ୍ରାଟଙ୍କ ସ୍ୱର ରୁଦ୍ଧ ହେଲା।

—"ମୁଁ ଚେଷ୍ଟା କରିବି। କିନ୍ତୁ ତଥାଗଙ୍କତ ନାମରେ ଆପଣଙ୍କୁ ପ୍ରତିଶ୍ରୁତି ଦେବାକୁ ପଡ଼ିବ।"

—"କି ପ୍ରତିଶ୍ରୁତି ଚାହଁ ? କୁହ ?"

ତିଷ୍ୟା ମୁହୂର୍ତ୍ତେ ଚିନ୍ତା କଲେ। ତା'ପରେ ନିଜକୁ ନିସ୍ପୃହ ରଖି ଉଚ୍ଚାରଣ କଲେ, "ରୋଗମୁକ୍ତ ହେଲେ ଆପଣ ଏକ ମାସ ପାଇଁ ରାଜଧାନୀ ତ୍ୟାଗ କରି ଚାଲିଯିବେ। ସେଇ ସମୟରେ ସାମ୍ରାଜ୍ୟର ଶାସନଭାର ମୋତେ ଦେବାକୁ ପଡ଼ିବ। ଆପଣ

ଆଦେଶ ଦେବେ ଯେମିତି ମୋ' ଇଚ୍ଛାରେ ଏଇ ସାମ୍ରାଜ୍ୟର ସମସ୍ତ କାର୍ଯ୍ୟ ସମ୍ପନ୍ନ ହୁଏ। ଏଇ ଏକ ମାସ ମଧ୍ୟରେ ଆପଣ କୌଣସି କାରଣରୁ ବି ରାଜଧାନୀକୁ ଫେରି ପାରିବେ ନାହିଁ। ଆପଣ ସମ୍ମତ ?''

ଜୀବନ ଆଶାରେ ବ୍ୟଗ୍ର ସମ୍ରାଟ ସଙ୍ଗେସଙ୍ଗେ ସମ୍ମତି ଜଣାଇଲେ, ''ବେଶ୍ ତାହା ହିଁ ହେବ। ମୁଁ ପ୍ରତିଶ୍ରୁତି ଦେଲି।''

ମହାରାଣୀଙ୍କ ମୁହଁରେ ହସ ଫୁଟିଉଠିଲା।

ପ୍ରତିଶ୍ରୁତି ଆଦାୟ କରି ଭୟ ବଢ଼ିଲା ତିଷ୍ୟାଙ୍କର। ଯଦି ସେ ହାରିଯାଆନ୍ତି! ଯଦି ସେ କୃତକାର୍ଯ୍ୟ ନ ହୁଅନ୍ତି! ଦୀର୍ଘକାଳ ସେ ଶଲ୍ୟବିଦ୍ୟା ସହ ଯୁକ୍ତ ନାହାଁନ୍ତି। ଅନଭ୍ୟାସ କର୍ମଦକ୍ଷତା ହ୍ରାସ କରେ, ହୃଦୟରେ ଦୁର୍ବଳତା ଆଣେ। ସମ୍ରାଟଙ୍କ ମୃତ୍ୟୁ ସୁନିଶ୍ଚିତ, ଏକଥା ସମସ୍ତେ ଜାଣିଲେ ମଧ୍ୟ ମହାରାଣୀଙ୍କ ହାତରେ ମୃତ୍ୟୁ ହୋଇଛି— ଏ ସମ୍ବାଦ ପ୍ରଜାମାନଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିପାରେ।

କିନ୍ତୁ ତିଷ୍ୟା ବୁଝିପାରୁଥିଲେ ଏହାଛଡ଼ା ଆଉ କୌଣସି ପଥ ନାହିଁ। ସମ୍ରାଟଙ୍କ ପ୍ରାଣ ଆଉ ତିନିଦିନ ରହିବ କି ନାହିଁ ସନ୍ଦେହ। ମୃତ୍ୟୁର ମଳିନ ଛାୟା ମୁଖମଣ୍ଡଳରେ ଓହ୍ଲେଇବାକୁ ଆରମ୍ଭ କଲାଣି। ଫଳ ଆଡ଼କୁ ନ ଚାହିଁ ତାଙ୍କୁ କାର୍ଯ୍ୟ କରିଯିବାକୁ ପଡ଼ିବ। ତିରିଶ ବର୍ଷ ପିତୃଦେବଙ୍କ ସହ ଶଲ୍ୟତନ୍ତ୍ରାଗାରରେ ଉପସ୍ଥିତ ରହିବା ଏବଂ କେତେବେଳେ କେତେବେଳେ ନିଜେ ଶସ୍ତ୍ରୋପଚାର କରି ସାଫଲ୍ୟଲାଭ କରିଥିବାର ସ୍ମୃତି ତାଙ୍କୁ ଉତ୍ସାହିତ କଲା। ବର୍ତ୍ତମାନ ପିତୃଦେବ ସାଙ୍ଗରେ ରହିଥିଲେ ଭଲ ହୋଇଥାନ୍ତା। କିନ୍ତୁ ତାଙ୍କୁ ଡାକି ଏଠାକୁ ଆଣିବାର ଆଉ ସମୟ ନାହିଁ। ତିଷ୍ୟା ତତ୍କ୍ଷଣାତ୍ ରାଜବୈଦ୍ୟଙ୍କୁ ଡକେଇ ପଠେଇଲେ।

ପାଟଳିପୁତ୍ରରେ ଯେଉଁ ଶଲ୍ୟତନ୍ତ୍ରାଗାରଟି ଅଛି ତାର ଉପଯୁକ୍ତ ଅଧ୍ୟକ୍ଷ ନାହାଁନ୍ତି। ଯିଏ ଅଛନ୍ତି ସେ ସାମାନ୍ୟ ଅସ୍ତ୍ରୋପଚାରରେ ହିଁ ସିଦ୍ଧହସ୍ତ, କେବେହେଲେ ଜଟିଳ କିଛି କରିବାକୁ ସାହସ କରି ନାହାଁନ୍ତି— ଯଦିଓ ତାଙ୍କ ଶଲ୍ୟତନ୍ତ୍ରାଗାରରେ ଯଥେଷ୍ଟ ପରିମାଣର ଶସ୍ତ୍ର ରହିଛି। ସେଗୁଡ଼ିକର ବିଶୁଦ୍ଧୀକରଣ ପାଇଁ ଆଦେଶ ଦେଇ ତିଷ୍ୟା ଜାଣିଲେ ଯେ ଏଠାରେ ବକ୍ଷ ବା ଉଦରର ଶସ୍ତ୍ରୋପଚାର ନ ହେବାର ଅନ୍ୟତମ କାରଣ ହେଲା ଶରୀରର ଦ୍ୱିଖଣ୍ଡିତ ଅଂଶ ଯୋଡ଼ିଦେବା ପାଇଁ ସଠିକ କୌଣସି ଔଷଧର ପ୍ରୟୋଗ ଏମାନେ ଜାଣି ନାହାଁନ୍ତି। ସେ ଅଧ୍ୟକ୍ଷ ଏବଂ ରାଜବୈଦ୍ୟଙ୍କ

ସହ ଆଲୋଚ଼ନା କରି ବୁଝିଲେ ଯେ ଏ ସଂକ୍ରାନ୍ତରେ ପାଟଳିପୁତ୍ରରେ ସେମିତି ବିଶେଷ ଚର୍ଚ୍ଚା ମଧ୍ୟ ହୁଏ ନାହିଁ। ଅଥଚ ପିତୃଦେବ ଏ ବିଷୟରେ ସିଦ୍ଧହସ୍ତ। ତାଙ୍କ ନିକଟରୁ ତଣ୍ଡୁଳରସ ନିର୍ମାଣ କୌଶଳ ଶିକ୍ଷା କରିଛନ୍ତି ତିଷ୍ୟା। ଏଇ ରସ ପ୍ରୟୋଗ କରି ପିତୃଦେବ ମାତ୍ର ତିନିଦିନ ମଧ୍ୟରେ ଶରୀରର ଦ୍ୱିଖଣ୍ଡିତ ଅଂଶ ସୁନ୍ଦରଭାବେ ଯୋଡ଼ି ଦିଅନ୍ତି।

ଶସ୍ତ୍ରୋପଚାରର ସମସ୍ତ ବ୍ୟବସ୍ଥା ସମ୍ପୂର୍ଣ୍ଣ କରିବାପରେ ମଧ୍ୟ ତିଷ୍ୟାଙ୍କର ମନେ ହେଲା ଏତେଟା ଝୁଙ୍କି ନେବା ପୂର୍ବରୁ ଯଦି ଏମିତି କାହାକୁ ମିଳନ୍ତା ଯାହାର ଶରୀର ଦ୍ୱିଖଣ୍ଡିତ କରିବାରେ ବାଧା ନାହିଁ, ତେବେ ତାଙ୍କର ଆତ୍ମପ୍ରତ୍ୟୟ ବୃଦ୍ଧି ପା'ନ୍ତା। କିନ୍ତୁ ଯେଉଁ ରାଜ୍ୟରେ ରକ୍ତପାତ ନିଷିଦ୍ଧ, ସେଠାରେ କିଏ ନିଜକୁ ଉତ୍ସର୍ଗ କରିବାକୁ ଆସିବ? ବଳପୂର୍ବକ କାହାକୁ ଧରିଆଣିବା ତ ହେବ ମହାପାପ। କିନ୍ତୁ ଚେଷ୍ଟା କରିବାରେ କୌଣସି ଅସୁବିଧା ନାହିଁ।

ତିଷ୍ୟା ଖଲ୍ଲାତକଙ୍କୁ ଡକେଇ ପଠାଇଲେ। ଖଲ୍ଲାତକ ଆପାତତଃ ବିମର୍ଷ, ଯେମିତି ସମ୍ରାଟ ମୃତ୍ୟୁଶଯ୍ୟାରେ ଶାୟିତ ହେଲେ ପ୍ରଫୁଲ୍ଲ ରହିବା ବାରଣ! ଅଭିବାଦନ ଜଣାଇ ଖଲ୍ଲାତକ କହିଲେ, "ଆଦେଶ କରନ୍ତୁ ମହାରାଣୀ।"

ତିଷ୍ୟା ତାଙ୍କୁ ଦେଖିଲେ। ତା'ପରେ କହିଲେ, "ବୀତଶୋକ ସମ୍ବାଦ କଣ?"

ଚମକି ଉଠିଲେ ଖଲ୍ଲାତକ, "ବୀତଶୋକ? ସେତ ରାଜଧାନୀରେ ହିଁ ଅଛନ୍ତି।"

"ଆପଣଙ୍କ ସହିତ ତାଙ୍କର ସାକ୍ଷାତ ହୁଏନା? କଥାବାର୍ତ୍ତା, ପରାମର୍ଶ ଇତ୍ୟାଦି ଚାଲନା?"

ଖଲ୍ଲାତକ ତିର୍ଯ୍ୟକ ଦୃଷ୍ଟିରେ ଚାହିଁଲେ, "ମହାରାଣୀଙ୍କ କଥାର ଅର୍ଥ ମୁଁ ଅନୁଧାବନ କରିପାରୁ ନାହିଁ।

"କାହିଁକି? ଆପଣ ବୁଦ୍ଧିମାନ! ଆଉ କିଏ ନ ଜାଣେ ବୁଦ୍ଧିମାନମାନଙ୍କ ପାଇଁ ସାମାନ୍ୟ ଇସାରା ସୁଦ୍ଧା ଯଥେଷ୍ଟ! ଆପଣଙ୍କ ମାନସିକ ପ୍ରସ୍ତୁତି କେଉଁ ପ୍ରକାରର"?

"କେଉଁ ପରିପ୍ରେକ୍ଷୀରେ?"

"ସମ୍ରାଟ ମୃତ୍ୟୁଶଯ୍ୟାରେ। ବର୍ତ୍ତମାନ ଆଉ କି ପରିପ୍ରେକ୍ଷିତ ଥାଇପାରେ?"

ଖଲ୍ଲାତକ ପ୍ରସ୍ତୁତ ହେଲେ। ଏଇ ରମଣୀ ଯେ ସାଧାରଣ ନୁହଁନ୍ତି, ତା' ପ୍ରଥମ ଦର୍ଶନରୁ ହିଁ ମନେ ହୋଇଥିଲା। ବୀତଶୋକ ନିର୍ବୋଧ ଭଳି ଯାଙ୍କ ପାଖରେ ବହୁ କଥା କହିଛି। କିନ୍ତୁ ସେ ଯେ ସିଧାସଳଖ ଏଭଳି ପ୍ରଶ୍ନର ସମ୍ମୁଖୀନ ହେବେ, ଏ କଥା ଖଲ୍ଲାତକ କଳ୍ପନା କରି ନ ଥିଲେ। କିନ୍ତୁ ମୁହୂର୍ତ୍ତ ମଧ୍ୟରେ ସେ ମନ ସ୍ଥିର କରି ନେଲେ। ଅସାଧାରଣ ସହିତ ଅସାଧାରଣ ବ୍ୟବହାର କରିବା ହିଁ ସଙ୍ଗତ। ସେ କହିଲେ, "ମୁଁ ଯାହା ଚିନ୍ତା କରେନା କାହିଁକି, ମହାରାଣୀଙ୍କ ସମ୍ମତି ବ୍ୟତୀତ ତାହା କେବେ ବି କାର୍ଯ୍ୟକାରୀ ହେବ ନାହିଁ। ତାଙ୍କ ବିନାନୁମତିରେ ମୁଁ କିଛି କରୁ ନାହିଁ।"

ତିଷ୍ୟା ମନେମନେ ହସିଲେ। ଧୂର୍ତ୍ତ ଲୋକର ସବୁ ଲକ୍ଷଣ ଖଲ୍ଲାତକ କଥାରେ ସ୍ପଷ୍ଟ। ସେ ଏଥର ପ୍ରସଙ୍ଗକୁ ଫେରି ଆସିଲେ, ''ମୋର ପ୍ରୟୋଜନ ଜଣେ ମଣିଷ।''

''ମଣିଷ ?'' ଖଲ୍ଲାତକ ପ୍ରାୟ ହତବାକ୍।

''ହଁ। ଯାହାର କୌଣସି ଆତ୍ମୀୟ ବନ୍ଧନ ବା ଅନ୍ୟ କୌଣସି ବନ୍ଧନ ନାହିଁ। ତେବେ ସାଧାରଣ ସୁସ୍ଥ ମଣିଷ କଥା ମୁଁ କହୁନାହିଁ। ଯେଉଁ ମଣିଷ ଅଶ୍ମରୀ-ଆକ୍ରାନ୍ତ। ସମ୍ରାଟଙ୍କ ରୋଗର ଯାହା ଲକ୍ଷଣ ଅଛି ସେଇ ଲକ୍ଷଣଗୁଡ଼ିକ ଲୋକଟି ଦେହରେ ଥିବ।''

''ଏଭଳି ମଣିଷ କଣ ମିଳିବା ସମ୍ଭବ ?'' ଖଲ୍ଲାତର୍କ ଉଦ୍ଦେଶ୍ୟ ଅନୁମାନ କରିପାରୁ ନଥିଲେ।

—''ପୃଥିବୀରେ ଅସମ୍ଭବ ବୋଲି କିଛି ନାହିଁ। ଏତେବଡ଼ ସାମ୍ରାଜ୍ୟରେ ବହୁ ମଣିଷ ନାନାପ୍ରକାର ରୋଗରେ ଆକ୍ରାନ୍ତ ହୋଇ ଦିନଯାପନ କରୁଛନ୍ତି। ସେମାନଙ୍କ ମଧ୍ୟରୁ ଅଶ୍ମରୀ ହୋଇନାହିଁ— ଏଭଳି ଲୋକର ଅସ୍ତିତ୍ୱ ନାହିଁ ବୋଲି ମୁଁ ବିଶ୍ୱାସ କରେ ନାହିଁ।

ଖଲ୍ଲାତକ କହିଲେ, ''ଯଦି ଅପରାଧ ନ ଘେନନ୍ତି ତେବେ ପ୍ରଶ୍ନ କରିପାରେ କି କେଉଁ ଉଦ୍ଦେଶ୍ୟରେ ଆପଣଙ୍କର ଏଭଳି ବ୍ୟକ୍ତିଟିଏ ପ୍ରୟୋଜନ ?''

ତିଷ୍ୟା ରୁଷ୍ଟ ହେବାକୁ ଯାଇ ମଧ୍ୟ ନିଜକୁ ସମ୍ବରଣ କଲେ, ''ଅପ୍ରୟୋଜନରେ ମୁଁ କିଛି ଚାହେଁ ନାହିଁ। ତା'ଛଡ଼ା ସମସ୍ତଙ୍କୁ ମୋର ମନକଥା ମୁଁ କହିବାକୁ ଭଲ ପାଏ ନାହିଁ।''

ଖଲ୍ଲାତକ ଏଥର ହସିଲେ, ''ମହାରାଣୀଙ୍କୁ ସ୍ମରଣ କରେଇ ଦେଉଛି ଅତୀତରେ ମୁଁ ଅନ୍ତତଃ ଥରଟିଏ ତାଙ୍କ ସେବାରେ ଲାଗିପାରି ଖୁସି ହୋଇଛି।''

ତିଷ୍ୟା ଆଶ୍ଚର୍ଯ୍ୟ ହେଲେ, ''ମୋ ସେବା ? କି ପ୍ରକାର ସେବା ?''

''ମୋ'ରି ନିର୍ଦ୍ଦେଶିତ ପଥ ସୁପ୍ରବାସା ବ୍ୟବହାର କରିଥିଲା ପରମାନ୍ନ ସଂଗ୍ରହ କରିବା ପାଇଁ।''

ତିଷ୍ୟା ସଚକିତା ହେଲେ। ତେବେ ଖଲ୍ଲାତକ ସେଇ ଘଟଣାଟି ସମ୍ପର୍କରେ ଅବଗତ ଅଛନ୍ତି। ନିଶ୍ଚୟ ସେ ଜାଣନ୍ତି ଫଲ୍‌ଗୁନଦୀ ତୀରରେ ରାଜକୁମାରଙ୍କୁ ସେ ଶିବିରକୁ ଆଣିଥିଲେ। କିନ୍ତୁ ଏ କଥା କଣ ସେ ଜାଣନ୍ତି ଯେ ରାଜକୁମାର ବାରମ୍ବାର ତାଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଛନ୍ତି ? ତିଷ୍ୟାଙ୍କ ମନରେ ଭୀତି ଜନ୍ମିଲା। ସେ ବୁଝି ପାରିଲେ, ଦ୍ରୁତ ପ୍ରସଙ୍ଗାନ୍ତରକୁ ଯିବା ହିଁ ବୁଦ୍ଧିମତୀର କାର୍ଯ୍ୟ ହେବ।

ତିଷ୍ୟା ମଧୁର ହସଟିଏ ହସି କହିଲେ, ''ସମ୍ରାଟ ବର୍ତ୍ତମାନ ପୀଡ଼ିତ। ତାଙ୍କ ମୃତ୍ୟୁ ସମସ୍ତ ସମସ୍ୟା ସରଳଭାବେ ସମାଧାନ କରିବ ନାହିଁ। ଅତଏବ ଲକ୍ଷ୍ୟସ୍ଥଳରେ

ପହଞ୍ଚିବାକୁ ଗଲେ ମୋ ଉପରେ ଆସ୍ଥା ରଖିବାକୁ ପଡ଼ିବ ଆପଣମାନଙ୍କୁ। ମୁଁ କଥା ଦେଉଛି ଆପଣମାନଙ୍କ ଉଦ୍ଦେଶ୍ୟ ଅସିଦ୍ଧ ହେବ ନାହିଁ। କିନ୍ତୁ ସେଇ କାରଣରୁ ମୋର ଜଣେ ପ୍ରାୟ-ଜୀବିତ ବ୍ୟକ୍ତି ପ୍ରୟୋଜନ। ଆପଣ ଅବିଳମ୍ବେ ଜଣେ ଅଶ୍ମରୀ-ରୋଗଯୁକ୍ତ ବ୍ୟକ୍ତି ସନ୍ଧାନ କରନ୍ତୁ। ଆଗାମୀ କାଲି ଏଇ ସମୟ ମଧ୍ୟରେ ତାକୁ ମିଳିବା ପ୍ରୟୋଜନ।"

ଖଲ୍ଲାତକ ମହାରାଣୀଙ୍କ ଉଦ୍ଦେଶ୍ୟ ବୁଝିପାରୁ ନଥିଲେ। କିନ୍ତୁ ବର୍ତ୍ତମାନ ବି କୌଣସି କଥା ନ କହି ସୁଦ୍ଧା ବହୁ କଥା ପ୍ରକାଶ କଲେ ମହାରାଣୀ। ସେଇ ପ୍ରକାଶିତ ଅର୍ଥ ଯଦି ସତ୍ୟ ହୁଏ, ତେବେ ତାଙ୍କର କିଛି ହରେଇବାର କୌଣସି ଆଶଙ୍କା ରହୁନାହିଁ। ସେ କହିଲେ, "ମହାରାଣୀଙ୍କ ଆଦେଶ ଅବଶ୍ୟ ହିଁ ଶିରୋଧାର୍ଯ୍ୟ। ମୁଁ ବର୍ତ୍ତମାନ ସନ୍ଧାନ କାର୍ଯ୍ୟ ଆରମ୍ଭ କରୁଛି।"

ପାଟଳିପୁତ୍ରର ଲୋକେ ସ୍ୱସ୍ତିଲାଭ କଲେ। ମହାରାଣୀଙ୍କ ଆଦେଶ ପ୍ରଚାରିତ ହୋଇଥିଲା। ସମ୍ରାଟଙ୍କ ରୋଗର ଲକ୍ଷଣ ସହ ସାଦୃଶ୍ୟ ଅଛି, ଏଭଳି ଜଣେ ଅନାଥ ବ୍ୟକ୍ତି ଆବଶ୍ୟକ। ସେମାନେ ଏହା ମଧ୍ୟ ଶୁଣିଲେ ମହାରାଣୀଙ୍କ ପିତୃଦେବ ବିଖ୍ୟାତ ଶଲ୍ୟବିଦ୍। ପିତୃଦେବଙ୍କ ନିକଟରୁ ମହାରାଣୀ ନିଶ୍ଚୟ ଉପଯୁକ୍ତ ଶିକ୍ଷାଲାଭ କରିଛନ୍ତି। ଅତଏବ ସେମାନଙ୍କ ପ୍ରିୟ ସମ୍ରାଟଙ୍କ ଜୀବନ ରକ୍ଷାର ବର୍ତ୍ତମାନ ବି ଶେଷ ଉପାୟ ରହିଛି। ସେମାନେ ମଧ୍ୟ ପଥକୁ ବାହାରି ପଡ଼ିଲେ। ଲୋକଟିକୁ ନେଇ ମହାରାଣୀ କଣ କରିବେ ସେ କଥା ସେମାନଙ୍କୁ ଜଣାନାହିଁ। କେହି କେହି ଧାରଣା କଲେ ଲୋକଟିର ପ୍ରାଣ ସମ୍ରାଟଙ୍କ ଦେହରେ ପୂରେଇ ଦିଆହେବ। କେହି କହିଲା, "ଯେହେତୁ ମହାରାଣୀ ଧର୍ମାନୁଷ୍ଠାନରେ ଯୋଗ ଦିଅନ୍ତି ନାହିଁ, ତେଣୁ ସେ ନିଶ୍ଚୟ କୌଣସି ଯଜ୍ଞାନୁଷ୍ଠାନରେ ଲୋକଟିକୁ ଉତ୍ସର୍ଗ କରିବେ।"

ଗୁଜବ ଯେତେବେଳେ ଯଥେଷ୍ଟ ପ୍ରଚାରିତ, ଜଣେ ବ୍ୟକ୍ତିର ସନ୍ଧାନ ମିଳିଲା। ଲୋକଟି ବୃଦ୍ଧ। ଭିକ୍ଷାଲବ୍ଧ ଅନ୍ନରେ ତାର ଦିନ ଯାପିତ ହେଉଥିଲା। କିଛିଦିନ ଧରି ସେ ଅଶ୍ମରୀ ରୋଗରେ ଭୟାନକଭାବେ ଆକ୍ରାନ୍ତ। ତାର ଉଦର ସ୍ଫୀତତର ହୋଇଛି, ନିଃଶ୍ୱାସରେ କଷ୍ଟ, ପଥପାର୍ଶ୍ୱରେ ଏକ ବୃକ୍ଷତଳେ ଶେଷ ମୁହୂର୍ତ୍ତଟିକୁ ତ୍ୱରାନ୍ୱିତ କରିବା ପାଇଁ କେବଳ ପ୍ରାର୍ଥନା କରୁଛି।

ଖବର ପାଇ ରାଜପୁରୁଷମାନେ ଛୁଟି ଗଲେ ତା' ପାଖକୁ। ବୃଦ୍ଧ ଆଶ୍ଚର୍ଯ୍ୟ ହୋଇ ଦେଖିଲା, ତାକୁ ପରମ ସମାଦର ସହକାରରେ ଶିବିକାରେ ଚଢ଼େଇ ରାଜପ୍ରାସାଦକୁ ନିଆଯାଉଛି। ଜୀବନରେ ଏଇ ପ୍ରଥମଥର ସେ ଏଭଳି ସୌଭାଗ୍ୟର ସ୍ୱାଦ ପାଇଲା। କିନ୍ତୁ ସେ ସୌଭାଗ୍ୟ ଉପଭୋଗର ସାମର୍ଥ୍ୟ ତାର ନଥିଲା। ସାମାନ୍ୟ ହଲଚଲରେ ତାର ଯନ୍ତ୍ରଣା ବୃଦ୍ଧି ପାଉଥିଲା।

ତିଷ୍ୟା ଚମକିତ ଏବଂ ଆନନ୍ଦିତ ହେଲେ। ତାଙ୍କ ନିର୍ଦ୍ଦେଶରେ ବୃଦ୍ଧକୁ ଅଣାଯାଇଛି ଶଲ୍ୟତନ୍ତ୍ରାଗାରକୁ। ଅର୍ଦ୍ଧମୃତ ବ୍ୟକ୍ତିଟି ସହ ସମ୍ରାଟଙ୍କ ଉପସର୍ଗଗୁଡ଼ିକର ଚମତ୍କାର ସାମଞ୍ଜସ୍ୟ। ଏହା କାକତାଳୀୟ ହୋଇପାରେ, କିନ୍ତୁ ତିଷ୍ୟାଙ୍କ ଆତ୍ମପ୍ରତ୍ୟୟ ବହୁଗୁଣ ବୃଦ୍ଧି ପାଇଲା। ତିଷ୍ୟା ତାକୁ କହିଲେ, "ମୁଁ ଆପଣଙ୍କ ଶରୀରର ଯନ୍ତ୍ରଣା ଅନୁମାନ କରୁଛି। ପୃଥିବୀର କୌଣସି ଔଷଧ ଆପଣଙ୍କୁ ନିରାମୟ କରିପାରିବ ନାହିଁ।"

ବୃଦ୍ଧ ଚିତ୍କାର କରି ଉଠିଲା, "ମୁଁ ଏଭଳିଭାବେ ବଂଚିବାକୁ ଚାହେଁନା। ମୋତେ ମାରିଦିଅ।"

ତିଷ୍ୟା କହିଲେ, "ମୃତ୍ୟୁ ଈଶ୍ୱରଙ୍କ ଇଚ୍ଛାରେ ଆସେ। ତେବେ ମୁଁ ଆପଣଙ୍କୁ ବଂଚେଇବାକୁ ଚେଷ୍ଟା କରୁଛି। ଯଦି ତା' କରିବାକୁ ଯାଇ ଆପଣଙ୍କ ପ୍ରାଣହାନି ଘଟେ, ଜାଣିବେ ତାହା ମୋ ଇଚ୍ଛା ବିରୁଦ୍ଧରେ ହିଁ ହୋଇଛି, ଆପଣ ଆପଣଙ୍କ ଶେଷ ପ୍ରାର୍ଥନା ସାରି ନିଅନ୍ତୁ।"

ବୃଦ୍ଧ କହିଲା, "ପ୍ରାର୍ଥନା ? ମୋର ଏକମାତ୍ର ପ୍ରାର୍ଥନା– ମୃତ୍ୟୁ।" ତା'ପରେ ନିଜ ମନକୁମନ କହିବାକୁ ଲାଗିଲା, "ଏ ଜନ୍ମର ସମସ୍ତ କର୍ମଫଳ ଭୋଗ ହୋଇ ଯାଇଛି। ଗତ ଜନ୍ମର ବି। ଏବେ ଆଉ ମରିବାକୁ ଆପତ୍ତି ନାହିଁ।"

ବୃଦ୍ଧକୁ ଏକ ଉଚ୍ଚ ସ୍ଥାନରେ ଶୁଆଇ ଦିଆଗଲା। କକ୍ଷରେ ତିଷ୍ୟାଙ୍କୁ ସାହାଯ୍ୟ କରିବା ପାଇଁ ଦୁଇଜଣ ଦକ୍ଷ ଶୁଶ୍ରୂଷାକାରୀଙ୍କ ବ୍ୟତୀତ ଆଉ କେହି ନାହାଁନ୍ତି। ସଂଜ୍ଞାହୀନ କରିବା ପାଇଁ ତୀକ୍ଷ୍ଣ ଶଲାକା ଦେଇ ସଂବେଦ ଶିରା ବିଦ୍ଧ କଲେ ତିଷ୍ୟା। ଏଇ ପ୍ରକ୍ରିୟାରେ ମଣିଷ ଖୁବ ଦ୍ରୁତଜ୍ଞାନ ଫେରି ପାଏ ନାହିଁ ବୋଲି ପିତୃଦେବଙ୍କ ସହ ଶସ୍ତ୍ରୋପଚାର କଲା ବେଳେ ଜାଣିଛନ୍ତି ତିଷ୍ୟା।

ବୃଦ୍ଧର ଶରୀର ସ୍ଥିର ହୋଇଯିବା ପରେ ତିଷ୍ୟାଙ୍କ ନିର୍ଦ୍ଦେଶରେ ବୀଜାଣୁମୁକ୍ତ ଜଳରେ ତା' ଉଦର ଧୋଇ ଦେଲେ ଶୁଶ୍ରୂଷାକାରୀଗଣ। ଉଦର ଏଇ ମୁହୂର୍ତ୍ତରେ ଅତିରିକ୍ତ ସ୍ଫୀତ, ଯେମିତି ଯେ କୌଣସି ସମୟରେ ବିଦୀର୍ଣ୍ଣ ହୋଇ ଯାଇପାରେ। ତିଷ୍ୟା ପିତୃଦେବଙ୍କୁ ସ୍ମରଣ କଲେ। ତା'ପରେ ଅତି ସନ୍ତର୍ପଣରେ ତୀକ୍ଷ୍ଣ କ୍ଷୁରିକା ସାହାଯ୍ୟରେ ଉଦର ଦ୍ୱିଖଣ୍ଡିତ କଲେ। ସଙ୍ଗେ ସଙ୍ଗେ ସେ ପତଳା ହୋଇ ଆସିଥିବା ମୂତ୍ରାଶୟ ଦେଖି ପାରିଲେ। ବୃଦ୍ଧର ଦେହରେ ସାମାନ୍ୟତମ ସଙ୍କୋଚନ ନାହିଁ। ତା'ଛଡ଼ା ବୋଧହୁଏ ରକ୍ତଶୂନ୍ୟ ହୋଇ ପଡ଼ିଛି ସେ। ତିଷ୍ୟା କାଳ ବିଳମ୍ବ ନ

କରି ମୂତ୍ରାଶୟର ଆବରଣୀ ଛିନ୍ନ କଲା ମାତ୍ରେ ଦୁର୍ଗନ୍ଧଯୁକ୍ତ ଜଳରାଶି ପ୍ଲାବନ ଭଳି ବାହାରି ଆସିଲା ! ତାପରେ ଶୁଶ୍ରୂଷାକାରୀ ଦ୍ୱୟଙ୍କ ସାହାଯ୍ୟରେ ବୃଦ୍ଧଙ୍କୁ ଶୁଷ୍କକରି ତିଷ୍ୟା ତାର ମୂତ୍ରାଶୟ ପରୀକ୍ଷା କରିବାକୁ ଯାଇ ଚମକି ଉଠିଲେ। ଦୁଇଟି ବିଶାଳ କୀଟ କ୍ରମାଗତ ବିଷ୍ଠା ତ୍ୟାଗକରି ମୂତ୍ରନଳୀର ମୁଖ ବନ୍ଦ କରି ଦେଇଛନ୍ତି !! ସେଇ ନଳୀରେ କୀଟଜ ଅଶ୍ମ ବୃଦ୍ଧି ପାଇବା ଫଳରେ ମୂତ୍ରକୃଚ୍ଛ୍ର ହୋଇଛି। ସେଇ କୀଟ ଏବଂ ଅଶ୍ମ ଶରୀରରୁ ଅପସାରିତ କରି ତିଷ୍ୟା ପୁଂଖାନୁପୁଂଖ ପର୍ଯ୍ୟବେକ୍ଷଣ କଲେ ବୃଦ୍ଧର ଉଦରଦେଶ। କିଛି ଯେମିତି ଅଜ୍ଞାତ ରହି ନଯାଏ, ସେ ବିଷୟରେ ସେ ଅତିରିକ୍ତ ସତର୍କ। ଏଇ ସମୟରେ ଜଣେ ଶୁଶ୍ରୂଷାକରୀ ଜଣାଇଲା ବୃଦ୍ଧର ହୃତ୍ସ୍ପନ୍ଦନ ବନ୍ଦ ହୋଇଯାଇଛି। ତିଷ୍ୟା ଦ୍ରୁତ ଧମନୀ ସ୍ପର୍ଶ କଲେ। ତାଙ୍କ ଚିବୁକ ଦୃଢ଼ ହେଲା। ସଂବେଦ ଶିରାରୁ ଶଳାକା ତୋଳି ନେଇ ଶୁଶ୍ରୂଷାକାରୀମାନଙ୍କୁ କହିଲେ, "ରାଜପୁରୁଷମାନଙ୍କୁ କୁହ ଏହାର ସତ୍କାର କରିବେ।"

ସେଦିନ ତିଷ୍ୟା ଅସ୍ଥିର ହୋଇପଡ଼ିଲେ। ସେ ରୋଗର କାରଣ ଜାଣି ପାରିଛନ୍ତି। ମୂତ୍ରନଳୀ ମଧ୍ୟରେ ଅଶ୍ମ ଜମି ରହିବା ହିଁ ପୀଡ଼ାର ଉତ୍ସ। ହୁଏତ ପ୍ରଥମ ପ୍ରଥମ ଅଶ୍ମ ଯେତେବେଳେ କ୍ଷୁଦ୍ର ଥିଲା, ସେତେବେଳେ ସମ୍ରାଟ ଅବହେଳା କରିଛନ୍ତି। କାରଣ କ୍ଷୁଦ୍ର ଅଶ୍ମ ରାଜବୈଦ୍ୟ ଔଷଧ ମାଧ୍ୟମରେ ତରଳ କରିଦେଇ ପାରିଥାନ୍ତେ। କିନ୍ତୁ ଆକୃତି ବୃଦ୍ଧି ପାଇବା ଫଳରେ ତାହା କୃତକାର୍ଯ୍ୟ ହୋଇ ନାହିଁ। ଅତଏବ ସମ୍ରାଟଙ୍କୁ ସୁସ୍ଥ କରିବାପାଇଁ ସେ ସାହସୀ ହୋଇଥାନ୍ତି। ମୃତ୍ୟୁ ହେଲା, ବୃଦ୍ଧର କାରଣ ସେ ମୃତ୍ୟୁ ଚାହୁଁଥିଲା। ହୁଏତ ସେ ଯେତେଟା ସମୟ ନେବା ଆବଶ୍ୟକ, ତାଠୁଁ ଅଧିକ ସମୟ ନେଇଛନ୍ତି। ଦ୍ରୁତ କାର୍ଯ୍ୟ ଶେଷ କରିଥିଲେ ବୃଦ୍ଧର ବଞ୍ଚିଯିବାର ସମ୍ଭାବନା ରହିଥାନ୍ତା। ସମ୍ରାଟଙ୍କ ଜୀବନରକ୍ଷା ଅଧିକ ଜରୁରୀ ଏବଂ ଏ ତଥ୍ୟ ତାଙ୍କୁ ସେ କାର୍ଯ୍ୟରେ ସାହାଯ୍ୟ କରିବ। କିନ୍ତୁ ସମ୍ରାଟଙ୍କର ଯଦି ଏକା ଅବସ୍ଥା ହୁଏ ! ଯଦି ଅଶ୍ମମୁକ୍ତ ହେବା ସମୟରେ ହିଁ ସେ ପ୍ରାଣ ହରାନ୍ତି ? ତିଷ୍ୟା ଏ ଦ୍ୱନ୍ଦ୍ୱରେ ପୀଡ଼ିତା ହେଉଥିଲେ। ଶେଷକୁ ତାଙ୍କର ମନେହେଲା ସମ୍ରାଟ ତ ମରଣୋନ୍ମୁଖ। ସେ ନ ରହିଲେ ହୁଏତ ତାଙ୍କୁ ପିତ୍ରାଳୟକୁ ଫେରିଯିବାକୁ ପଡ଼ିବ। ତେଣୁ ଏ ଦାୟିତ୍ୱ ନେଲେ ତାଙ୍କର କିଛି ହରାଇବାର ଭୟ ନାହିଁ। ବରଂ ଆଜିର ଶିକ୍ଷାଲବ୍ଧ ଜ୍ଞାନ ସେ ଯଦି ଦକ୍ଷତା ସହକାରେ ପ୍ରୟୋଗ କରି ପାରନ୍ତି, ତେବେ ଭବିଷ୍ୟତର ଦିନଗୁଡ଼ିକ ବଦଳି ଯାଇପାରେ। ଅତଏବ ଏ କାର୍ଯ୍ୟ ତାଙ୍କୁ କରିବାକୁ ହିଁ ପଡ଼ିବ। ସେ କଦାପି ପରାଜୟ ମାନିନେବେ ନାହିଁ।

ସମସ୍ତ ରାଜଧାନୀ ଆଜି ନିଃଶ୍ୱାସ ବନ୍ଦ କରିରହିଛି। ବୃଦ୍ଧର ମୃତ୍ୟୁ ସମ୍ବାଦ ସାଧାରଣ ଲୋକ ପାଇଛନ୍ତି। ସେମାନେ ଜାଣିଛନ୍ତି ମହାରାଣୀଙ୍କ ଅନଭ୍ୟାସ ହିଁ

ଏ ମୃତ୍ୟୁର କାରଣ। ତେଣୁ ସମ୍ରାଟଙ୍କ ଉପରେ ଅସ୍ତ୍ରୋପଚାର ଯଦି ବ୍ୟର୍ଥ ହୁଏ ଏବଂ ଯାହା ହେବାର ଯଥେଷ୍ଟ ଆଶଙ୍କା ରହିଛି, ତେବେ ଏଇ ଧର୍ମପ୍ରାଣ ମଣିଷଟିର ଶେଷମୁହୂର୍ତ୍ତ କାହିଁକି ଛିନ୍ନଭିନ୍ନ ହୋଇ ଶେଷ ହେବ ?

କିନ୍ତୁ ଖଲ୍ଲାତକ ଏବଂ ବୀତଶୋକ ମହାରାଣୀଙ୍କ କାର୍ଯ୍ୟ ସମର୍ଥନ କରିଛନ୍ତି। ଏ ପରିସ୍ଥିତିରେ ସାଧାରଣ ଲୋକଙ୍କର କରଣୀୟ ବା କଣ ଥାଇପାରେ ? ସେମାନେ କେବଳ ଉତ୍କଣ୍ଠିତ ହୋଇ ଶଲ୍ୟତନ୍ତ୍ରାଗାର ସମ୍ମୁଖରେ ଠିଆ ହୋଇଛନ୍ତି। ଖଲ୍ଲାତକ ଏବଂ ବୀତଶୋକ ଅଧୀର ହୋଇ ପ୍ରତୀକ୍ଷା କରୁଛନ୍ତି। ଏଇ ସମୟରେ ରାଜକୁମାର ସେମାନଙ୍କ ସହ ଅଳିନ୍ଦରେ ଆସି ଠିଆ ହେଲେ ଉଦ୍‌ବିଗ୍ନ ମୁଖରେ। ଦ୍ୱାର ବନ୍ଦ। ମହାରାଣୀ ଶସ୍ତ୍ରୋପଚାର ଆରମ୍ଭ କରିଛନ୍ତି କିଛି ସମୟ ପୂର୍ବରୁ। ଆଜି ଏଇ ମୁହୂର୍ତ୍ତରେ ପାଟଳିପୁତ୍ର ଶବ୍ଦହୀନ। ନା, ଠିକ୍ ଶବ୍ଦହୀନ କହିଲେ ଭୁଲ୍ ହେବ। ଭିକ୍ଷୁଗଣ ପ୍ରାର୍ଥନା କରୁଛନ୍ତି ଅବିରତ। ଉପାସନାର ଶବ୍ଦ ଶୁଭୁଛି। ତଥାଗତଙ୍କ ସ୍ୱର୍ଶ ବର୍ତ୍ତମାନ ଗଗନ ପବନରେ।

ଏକ ସମୟରେ ଦ୍ୱାର ଉନ୍ମୁକ୍ତ ହେଲା !

ଜଣେ ଶୁଶ୍ରୂଷାକାରୀ ଉଜ୍ଜ୍ୱଳ ମୁହଁରେ ବାହାରି ଆସି ଘୋଷଣା କଲା, "ଶସ୍ତ୍ରୋପଚାର ନିର୍ବିଘ୍ନରେ ସମ୍ପନ୍ନ ହୋଇଛି !! ମହାରାଣୀ ଦକ୍ଷତା ସହକାରରେ ସମ୍ରାଟଙ୍କ ଶରୀର ଅଶ୍ମମୁକ୍ତ କରିଛନ୍ତି !!!"

ସଙ୍ଗେସଙ୍ଗେ ଅଜସ୍ର ଲୋକଙ୍କ କଣ୍ଠରୁ ସ୍ୱସ୍ତି ଏବଂ ଆନନ୍ଦମିଶ୍ରିତ ଧ୍ୱନି ନିର୍ଗତ ହେଲା। କେହି ଜଣେ ଚିତ୍କାର କରି ଉଠିଲା, "ଜୟ ତଥାଗତଙ୍କ ଜୟ।" ସଙ୍ଗେସଙ୍ଗେ ଜୟଧ୍ୱନି ସହସ୍ର କଣ୍ଠରେ ଧ୍ୱନିତ ହେଲା। ଏଇ ସମୟରେ ଖଲ୍ଲାତକ ଶୁଶ୍ରୂଷାକାରୀଙ୍କୁ ବ୍ୟଗ୍ର ସ୍ୱରରେ ପ୍ରଶ୍ନ କଲେ, "ସମ୍ରାଟଙ୍କ ଅବସ୍ଥା ବର୍ତ୍ତମାନ କିପରି ?"

—"ସେ ବର୍ତ୍ତମାନ ସୁଦ୍ଧା ସଂଜ୍ଞାହୀନ। ତାଙ୍କ ସଂବେଦ-ଶିରାରୁ ଶଳାକା ମୁକ୍ତ କରା ହୋଇଛି। ତଣ୍ଡୁଳ ରସରେ ତାଙ୍କ ଉଦର ପୁଣିଥରେ ସୁଚାରୁଭାବେ ଯୁକ୍ତ କରା ହୋଇଛି। ମହାରାଣୀ ତାଙ୍କ ପଦତଳେ ବସି ଅପେକ୍ଷା କରିଛନ୍ତି। ସମ୍ଭବତଃ ସନ୍ଧ୍ୟାବେଳେ ତାଙ୍କ ଚେତନା ଫେରିବ। ବର୍ତ୍ତମାନ ତାଙ୍କ ଧମନୀ ନିୟମିତ, ତେଣୁ ମହାରାଣୀ ମନେ କରୁଛନ୍ତି, ସେ ଆପାତତଃ ବିପଦମୁକ୍ତ।" ଶୁଶ୍ରୂଷାକାରୀ ଏ ସମ୍ବାଦ ଦେଇ ପୁଣିଥରେ କକ୍ଷମଧ୍ୟକୁ ଫେରିଗଲେ।

ବୀତଶୋକ ଆହ୍ଲାଦିତ ହୋଇ ରାଜକୁମାରଙ୍କୁ ଆଲିଙ୍ଗନ କଲେ, "ମୁଁ ଭାବି ପାରୁ ନାହିଁ କେଉଁ ଯାଦୁରେ ମହାରାଣୀ ଏ ଅସମ୍ଭବକୁ ସମ୍ଭବ କଲେ !"

ରାଜକୁମାର ଉତ୍ତର ଦେଲେ, "ଆମେ ତାଙ୍କ ନିକଟରେ କୃତଜ୍ଞ।"

ବୀତଶୋକ ଆବେଗ ବଶରେ ଆହୁରି କିଛି କହିବାକୁ ଯାଉଥିଲେ, କିନ୍ତୁ ତାଙ୍କ ଦୃଷ୍ଟି ପଡ଼ିଲା ଖଲ୍ଲାତକଙ୍କ ଉପରେ। ଖଲ୍ଲାତକ ସେତେବେଳେ ବିରକ୍ତ ଭଙ୍ଗୀରେ ଇସାରା କରୁଛନ୍ତି ତାଙ୍କୁ ନୀରବ ରହିବା ପାଇଁ। ବୀତଶୋକ ହଠାତ୍ ନୀରବ ହୋଇଯାଇ ଟିକିଏ ଦୃଷ୍ଟିକଟୁ ଭାବରେ ଘୁଞ୍ଚିଗଲେ। ସନ୍ତୁଷ୍ଟ ଖଲ୍ଲାତକ ସେତେବେଳେ ସମବେତ ଜନତାଙ୍କ ଉଦ୍ଦେଶ୍ୟରେ କହିଲେ, "ଆପଣମାନେ ନିଜ ନିଜ କାମକୁ ଫେରିଯାନ୍ତୁ। ସମ୍ରାଟ ସୁସ୍ଥ ହେବାକୁ ଯାଉଛନ୍ତି। ବର୍ତ୍ତମାନ ଏଠାରେ ଉପସ୍ଥିତ ରହି ମହାରାଣୀଙ୍କ ବିରକ୍ତି ଉତ୍ପାଦନ କରନ୍ତୁ ନାହିଁ। ସେ ପରିଶ୍ରାନ୍ତ।"

ଖଲ୍ଲାତକଙ୍କ କଥାରେ ମନକୁ ନ ପାଇଲେ ମଧ୍ୟ ସାଧାରଣ ଲୋକେ ତାଙ୍କୁ ଅବଜ୍ଞା କରିବାକୁ ସାହସ ପାଇଲେ ନାହିଁ। ସ୍ଥାନଟି ଜନଶୂନ୍ୟ ହେଲାପରେ ଖଲ୍ଲାତକ ଏବଂ ବୀତଶୋକ ବିଦାୟ ନେଲେ। ସେତେବେଳେ ରାଜକୁମାର ଜଣେ ପରିଚାରିକା ମାଧ୍ୟମରେ ଭିତରକୁ ଖବର ପଠାଇଲେ; ମହାରାଣୀଙ୍କୁ କୃତଜ୍ଞତା ନିବେଦନ ପାଇଁ ସେ ଥରେ ଦର୍ଶନ ପାଇବାକୁ ଚାହୁଁଛନ୍ତି।

ପରିଚାରିକା ଫେରି ଆସି ଜଣାଇଲା, "ମହାରାଣୀ ଅତ୍ୟନ୍ତ ବ୍ୟସ୍ତ। ତାଙ୍କ ପକ୍ଷରେ ବାହାରକୁ ଆସିବା ଅସମ୍ଭବ।"

ଅସ୍ତ୍ରୋପଚାର ପରେ ତିରିଶ ଦିନ ଅତିକ୍ରାନ୍ତ ହୋଇଛି।

ତିଷ୍ୟା ଏଇ ସମୟ ମଧ୍ୟରେ ବିଶେଷ ପ୍ରୟୋଜନ ବ୍ୟତୀତ ସମ୍ରାଟଙ୍କ ଶଯ୍ୟା ନିକଟରୁ ଉଠି ନାହାଁନ୍ତି। ଦିନରାତି ସେ ଅତନ୍ଦ୍ର ସେବା କରି ଚାଲିଛନ୍ତି। ସାଧାରଣ ଶୁଶ୍ରୂଷାକାରୀମାନଙ୍କୁ ମଧ୍ୟ ପାଖ ପୂରେଇ ଦେଇ ନାହାଁନ୍ତି। ଶସ୍ତ୍ରୋପଚାର ସମ୍ପୂର୍ଣ୍ଣ ସଫଳ ହୋଇଛି। ପୁରାତନ ପୀଡ଼ାର କୌଣସି ଉପସର୍ଗ ଆଉ ନାହିଁ। ସମ୍ରାଟ ଦ୍ରୁତ ସୁସ୍ଥ ହୋଇ ଉଠିଛନ୍ତି।

ସାମ୍ରାଜ୍ୟର ସର୍ବତ୍ର ତିଷ୍ୟାଙ୍କ ଏଇ ସେବା କଥା ପ୍ରଚାରିତ। ସାଧାରଣ ଲୋକ ବର୍ତ୍ତମାନ ତାଙ୍କ ଜୟଗାନରେ ମୁଖର। ମହାରାଣୀ ସମ୍ରାଟଙ୍କ ଜୀବନ ଫେରେଇଦେଇ କ୍ଷାନ୍ତ ହୋଇ ନାହାଁନ୍ତି, ତା'ର ସୁରକ୍ଷାର ବ୍ୟବସ୍ଥା ମଧ୍ୟ କରିଛନ୍ତି। ମହାରାଣୀଙ୍କ ନାମ ଏବେ ସମ୍ମାନଜନକ ଉଦାହରଣ ଭାବେ ଗୃହୀତ।

ସମ୍ରାଟ ନିଜେ ମଧ୍ୟ ମୁଗ୍ଧ। ସେ ବର୍ତ୍ତମାନ ସୁସ୍ଥ। କିନ୍ତୁ ତିଷ୍ୟା ତାଙ୍କୁ ସମ୍ପୂର୍ଣ୍ଣ ସୁସ୍ଥ ଘୋଷଣା ନ କଲା ପର୍ଯ୍ୟନ୍ତ ସେ କକ୍ଷ ବାହାରକୁ ଯାଇ ପାରୁନାହାଁନ୍ତି।

ଏଇ ଦୀର୍ଘକାଳ ତିଷ୍ୟା କାହାକୁ ଏ କକ୍ଷରେ ପ୍ରବେଶ କରିବାକୁ ଦେଇ ନାହାଁନ୍ତି। ସମ୍ରାଟଙ୍କୁ ସମସ୍ତେ ଦେଖି ଯାଇଛନ୍ତି ଦ୍ୱାରରେ ଠିଆ ହୋଇ। ଶେଷରେ ତିଷ୍ୟା ଘୋଷଣା କଲେ, "ସମ୍ରାଟ, ଏବେ ଆପଣ ସମ୍ପୂର୍ଣ୍ଣ ବିପଦମୁକ୍ତ।

ସମ୍ରାଟ ପ୍ରସନ୍ନ ହେଲେ। କହିଲେ, "ମହାରାଣୀ, ମୁଁ ତୁମ ନିକଟରେ କୃତଜ୍ଞ। ତୁମେ ମୋତେ ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା କରିଛ।"

ତିଷ୍ୟା କିଛି ଉତ୍ତର ନ ଦେଇ ମୁହଁ ଫେରାଇ ନେଲେ।

ସମ୍ରାଟ ବିମର୍ଷ ହେଲେ ତିଷ୍ୟାଙ୍କ ଭଙ୍ଗୀ ଦେଖି। ସେ ପ୍ରଶଂସା ଶୁଣି ବିରକ୍ତ କାହିଁକି ହେଲେ ? ତେବେ କ'ଣ ତିଷ୍ୟା ବର୍ତ୍ତମାନ ସୁଦ୍ଧା ଅତୀତ ବିସ୍ମୃତ ହୋଇ ନାହାଁନ୍ତି ? ତାଙ୍କୁ ମହାରାଣୀର ମର୍ଯ୍ୟାଦା ଦେଲା ପରେ ମଧ୍ୟ ସେ ଦିନକ ପାଇଁ ହେଲେ ତାଙ୍କ ନିକଟରେ ଗ୍ରହଣୀୟ ହୋଇ ନାହାଁନ୍ତି। ଏଇ ଦୀର୍ଘ ସମୟ ତାଙ୍କୁ ସୁସ୍ଥ କରିବା ପାଇଁ ତିଷ୍ୟା ପ୍ରାଣପାତ ପରିଶ୍ରମ କରିଛନ୍ତି। ପୃଥିବୀର ଶ୍ରେଷ୍ଠ ସୁନ୍ଦରୀ ଦିନ ପରେ ଦିନ, ରାତି ପରେ ରାତି ନ ଖାଇ, ନ ଶୋଇ କ୍ରମଶଃ କୃଶରୁ କୃଶତର ହୋଇଛନ୍ତି। ତାଙ୍କ ଚକ୍ଷୁ ତଳେ ମସୀ, ମୁଖ ମଳିନ। କିନ୍ତୁ ଏ ଆତ୍ମତ୍ୟାଗ ଯାହା ପାଇଁ, ସେ ପ୍ରଶ୍ନ କଲାମାତ୍ରେ ମୁହଁ ଫେରେଇ ନେଲେ ? ସମ୍ରାଟ ଏଭଳି ବ୍ୟବହାରର କୌଣସି ଅର୍ଥ ଧରି ପାରୁ ନ ଥିଲେ।

ସମ୍ରାଟ ନରମ ଗଳାରେ କହିଲେ, "ମହାରାଣୀ, ତରୁଣ ବୟସରେ ମୁଁ ଯେଉଁ ଅପରାଧ କରିଥିଲି, ବର୍ତ୍ତମାନ ସୁଦ୍ଧା କ'ଣ ପ୍ରାୟଶ୍ଚିତ ହୋଇନାହିଁ? କୁହ କ'ଣ କଲେ–"

ତିଷ୍ୟା ଅନ୍ୟ ଆଡ଼କୁ ମୁହଁ ଫେରେଇ କହିଲେ, "କିଛି କରିବାକୁ ହେବ ନାହିଁ ଆପଣଙ୍କୁ। ଏଇ ମୁହୂର୍ତ୍ତରେ ମୁଁ ବିଶ୍ରାମ ନେବାକୁ ଚାହୁଁଛି। ମୋତେ ବିଦାୟ ଦିଅନ୍ତୁ।"

ରାଜଧାନୀରେ ବର୍ତ୍ତମାନ ଆନନ୍ଦ ଉତ୍ସବ ଚାଲିଛି। ସମ୍ରାଟ ସୁସ୍ଥ ହୋଇ ଉଠିଥିବାରୁ ପ୍ରଜାମାନଙ୍କୁ ନାନା ପ୍ରକାର ଉପଢ଼ୌକନ ଦେଉଛନ୍ତି। ତଥାଗତଙ୍କ ବାଣୀ ଏବଂ ଉପଦେଶ ଅନୁସାରେ ସମ୍ରାଟ ସାଧାରଣ ଲୋକଙ୍କ ମଙ୍ଗଳ ପାଇଁ ନାନାବିଧ ଜନହିତକର ପରିକଳ୍ପନା କଥା ଘୋଷଣା କଲେ। ସେଇ ସମୟରେ ବୀତଶୋକଙ୍କୁ ନେଇ ଖଲ୍ଲାତକ ତିଷ୍ୟାଙ୍କ ସହିତ ସାକ୍ଷାତ କରିବାକୁ ଆସିଲେ। କିଛିକାଳ ବିଶ୍ରାମ ନେବା ପରେ ତିଷ୍ୟା କିଛିଟା ସବଳ ହୋଇଛନ୍ତି। ପୁଣି ତାଙ୍କ ମୁଖ ଚନ୍ଦ୍ର ଭଳି ନିର୍ମଳ ହୋଇଛି

ସମୁଦ୍ର ଭଳି ତରଙ୍ଗାୟିତ ହୋଇଛି ଶରୀର।

ତିଷ୍ୟା ଆସନରେ ବସିଥିଲେ। ଖଲ୍ଲାତକ ଏବଂ ବୀତଶୋକଙ୍କୁ ଏକତ୍ର ଦେଖି ସେ ଟିକେ ଆଶ୍ଚର୍ଯ୍ୟ ହେଲେ। ଏ ଦୁଇଜଣଙ୍କ ସମ୍ପର୍କ ନେଇ କେହି କେହି ଯେତେବେଳେ ଅନ୍ୟର୍ଥ କରନ୍ତି, ସେତେବେଳେ ପ୍ରକାଶ୍ୟରେ ସେମାନେ ତାଙ୍କ ନିକଟକୁ ଆସିଲେ କାହିଁକି ?

ଆସନ ଗ୍ରହଣ କରି ବୀତଶୋକ କହିଲେ, "ମହାରାଣୀ, ଖଲ୍ଲାତକ ସମସ୍ତ ବ୍ୟବସ୍ଥା କରି ରଖିଥିଲେ। ଅଶ୍ମକ ରାଜ୍ୟର ସେପଟେ ଯେଉଁ ବିଶାଳ ଭୂଖଣ୍ଡ ତା' ଅଧିକାର କରିବା ପାଇଁ ସୈନ୍ୟମାନଙ୍କୁ ପ୍ରସ୍ତୁତ ରହିବାକୁ ଆଦେଶ ଦିଆଯାଇଥିଲା। କିନ୍ତୁ ସମ୍ରାଟ ସୁସ୍ଥ ହୋଇ, ସେ ପ୍ରସ୍ତାବ ବାତିଲ କରି ଦେଇଛନ୍ତି। କେବଳ ସେତିକି ନୁହେଁ, ଏ କାର୍ଯ୍ୟ ପାଇଁ ସେ ଖଲ୍ଲାତକଙ୍କୁ ଯଥେଷ୍ଟ ଭର୍ତ୍ସନା କରିଛନ୍ତି। ଆପଣ ଯଦି କଠୋର ସେବା ଏବଂ ତତ୍‌ପର ଅସ୍ତ୍ରୋପଚାର ଦ୍ୱାରା ସମ୍ରାଟଙ୍କ ଅସୁସ୍ଥତା ଦୂର କରିନଥାନ୍ତେ, ତେବେ ସାମ୍ରାଜ୍ୟର ସୀମା ବିସ୍ତୃତ ହୋଇଥାନ୍ତା।"

ତିଷ୍ୟା ଶାନ୍ତ ଭଙ୍ଗୀରେ ବକ୍ତବ୍ୟ ଶୁଣିଲେ। ତା'ପରେ ଜିଜ୍ଞାସା କଲେ, "ମୋ ପାଖକୁ ଅପାଣମାନଙ୍କ ଆସିବା ଉଦ୍ଦେଶ୍ୟ କ'ଣ ଏଇ ଅଭିଯୋଗ ଜଣାଇବା !"

ଏଥର ଖଲ୍ଲାତକ କହିଲେ, "ନା, ଅଭିଯୋଗ ନୁହେଁ। ମୁଁ ମହାରାଣୀଙ୍କୁ ସ୍ମରଣ କରେଇ ଦେବାକୁ ଚାହେଁ, ସେ ଅସ୍ତ୍ରୋପଚାର ପୂର୍ବରୁ କି ପ୍ରତିଶ୍ରୁତି ଦେଇଥିଲେ। ଆମେ ଆପଣଙ୍କୁ ଚାହିଁ ବସିଛୁ। ମହାରାଣୀ ଯେଉଁ ବ୍ୟବସ୍ଥା ଗ୍ରହଣ କରିବେ, ମୁଁ ତାହା ସମର୍ଥନ କରିବି।"

—"ଚମତ୍‌କାର। କିନ୍ତୁ ଆପଣ ଦୁଇଜଣ ଏକତ୍ର ଆସିଲେ କାହିଁକି ? ସମ୍ରାଟଙ୍କ ନିକଟରେ ଯଦି ଏସବୁ କଥା ପ୍ରକାଶ ପାଏ, ତେବେ ତାହା ସୁଖକର ହେବ ନାହିଁ।"

—"ଜାଣେ। ମୁଁ ବୀତଶୋକଙ୍କୁ ନିଷେଧ କରିଥିଲି। କିନ୍ତୁ କୌଣସି କୌଣସି ବ୍ୟକ୍ତି ସହସା ଅବାଧ୍ୟ ହେଲେ କିଛି କରି ହୁଏ ନାହିଁ।"

—"ଅବାଧ୍ୟ ! ବୀତଶୋକ କାହିଁକି ଅବାଧ୍ୟ ହେଲେ ?"

ତିଷ୍ୟାଙ୍କ ପ୍ରଶ୍ନର ଉତ୍ତରରେ ବୀତଶୋକ ସଲଜ୍ଜ ଭଙ୍ଗୀରେ କହିଲେ, "ସମ୍ରାଟଙ୍କ ସେବା କରିବାକୁ ଯାଇ ମହାରାଣୀ ନିଜେ ଅସୁସ୍ଥ ହୋଇ ପଡ଼ିଥିଲେ ବୋଲି ଶୁଣାଯାଏ। ମୋର ଖୁବ୍ ଇଚ୍ଛା ହେଲା ମହାରାଣୀଙ୍କୁ ଦର୍ଶନ କରିବା ପାଇଁ।"

ତିଷ୍ୟାଙ୍କ ଚିବୁକ ଦୃଢ଼ ହେଲା, "ଏ ପ୍ରକାର ବାସନା ଭବିଷ୍ୟତରେ ଆପଣଙ୍କର ଯେପରି ନହୁଏ। ହଁ, ମନ୍ତ୍ରୀ ମହାଶୟ, ପ୍ରତିଶ୍ରୁତି କଥା ସ୍ମରଣ କରେଇ ଦେଇଥିବା ହେତୁ ଆପଣଙ୍କୁ ଧନ୍ୟବାଦ। କିନ୍ତୁ ତା'ପୂର୍ବରୁ କୁହନ୍ତୁ ତ 'ବର୍ତ୍ତମାନ ଏ ସାମ୍ରାଜ୍ୟରେ କିଏ ଅଧିକ ଜନପ୍ରିୟ ?"

—"ନିଶ୍ଚିତ ଭାବେ ଆପଣ।"

—"ଠିକ୍! ବର୍ତ୍ତମାନ ମୁଁ ଯେଉଁ କାର୍ଯ୍ୟ କରିବି ତା' ପ୍ରଜାମାନଙ୍କୁ ଭଲ ଲାଗିବ। ତେଣୁ ମୋ ଉପରେ ଆପଣମାନେ ଆସ୍ଥା ରଖନ୍ତୁ। ଖୁବ୍‌ଶୀଘ୍ର ଆପଣ ଯୁଦ୍ଧଯାତ୍ରାର ଆଦେଶ ପାଇବେ। ମାତ୍ର କେତୋଟି ଦିନ ଅପେକ୍ଷା କରିବାକୁ ପଡ଼ିବ।"

—"କଣ କହୁଛନ୍ତି? ବର୍ତ୍ତମାନ ସମ୍ରାଟ ସମ୍ପୂର୍ଣ୍ଣ ସୁସ୍ଥ। ସେ ଅହିଂସାନୀତି ତ୍ୟାଗ କରି ଖଲ୍ଲାତକଙ୍କୁ ସାମ୍ରାଜ୍ୟ ବିସ୍ତାର ପାଇଁ ଅନୁମତି ଦେବେ? ନା, ଏକଥା—ବିଶ୍ୱାସ କରିବା ମୋ ପକ୍ଷରେ ଅସମ୍ଭବ। ମହାରାଣୀ ଭୁଲ କରୁଛନ୍ତି।" ବୀତଶୋକଙ୍କ ଅନାସ୍ଥା ତୀବ୍ରଭାବେ ପ୍ରକାଶିତ ହେଲା।

—"ମୁଁ କେବେ ଭୁଲ କରେନା। ଏ କ୍ଷେତ୍ରରେ ବି ଭୁଲ ହେବ ନାହିଁ। କିନ୍ତୁ ବୀତଶୋକ, ମୁଁ ଆହ୍ୱାନ ନ କଲାଯାଏଁ ଆପଣ କଦାପି ମୋ ସହିତ ସାକ୍ଷାତ କରିବାକୁ ଆସିବେ ନାହିଁ। ବର୍ତ୍ତମାନ ଆପଣମାନେ ଯାଇ ପାରନ୍ତି।"

ତିଷ୍ୟାଙ୍କ କଥା ଶୁଣି ବିମର୍ଷ ହେଲେ ବୀତଶୋକ। ଖଲ୍ଲାତକଙ୍କ କପାଳ କୁଞ୍ଚିତ ହେଲା। ସେ ଆଦୌ ଅନୁମାନ କରିପାରୁ ନ ଥିଲେ, ମହାରାଣୀ କେଉଁ ପଥରେ ଅଗ୍ରସର ହେଉଛନ୍ତି। କିନ୍ତୁ ସେ ଏତିକି ବୁଝିଲେ, ଏଇ ମହିଳାଙ୍କୁ ମାନି ନେବା ହିଁ ବୁଦ୍ଧିମାନର କାର୍ଯ୍ୟ ହେବ। ସେ ଅଭିବାଦନ ଜଣାଇ ବୀତଶୋକଙ୍କ ସହ ମହରାଣୀଙ୍କ ପ୍ରାସାଦ ତ୍ୟାଗ କଲେ।

ତିଷ୍ୟା ଏଥର ଅଧର ଦଂଶନ କଲେ। ଅନେକ ହେଲାଣି। ଆଉ କାଳକ୍ଷେପ କରିବା ବୁଦ୍ଧିମତୀର କାର୍ଯ୍ୟ ହେବ ନାହିଁ। ସେ ସୁପ୍ପବାସାକୁ ଡାକିଲେ, "ଗୋଟିଏ ପତ୍ର ଲେଖିବାକୁ ହେବ ସୁପ୍ପା! ବର୍ତ୍ତମାନ। ଆଉ ତୁ ନିଜେ ରାଜପ୍ରାସାଦକୁ ସେ ପତ୍ର ନେଇ ଯିବୁ। ମୁଁ ଦେଖିବାକୁ ଚାହେଁ ସମ୍ରାଟ ତଥାଗତଙ୍କ ପ୍ରତି କେତେଦୂର ଅନୁରକ୍ତ।"

ପତ୍ରଟି ହାତରେ ଧରି ସମ୍ରାଟ କିଛି ସମୟ ସ୍ଥବିର ଭଳି ବସି ରହିଲେ। ତାଙ୍କର ବୋଧବୁଦ୍ଧି ପ୍ରାୟ ଲୋପ ପାଇଲା। ସେ ବୁଝିପାରୁନଥିଲେ କଣ କରିବେ। ସେତେବେଳ ସୁଦ୍ଧା ତାଙ୍କ ସମ୍ମୁଖରେ ମହାରାଣୀଙ୍କ ପରିଚାରିକା ଦଣ୍ଡାୟମାନ। ସେ କୌଣସିମତେ କହିଲେ, "ଠିକ୍ ଅଛି। ତୁମେ ଯାଇପାର।"

ପରିଚାରିକା ସୁପପ୍‌ବାସା କହିଲା, "ମହାରାଣୀ ଆଦେଶ କରିଛନ୍ତି ଏ ପତ୍ରର ଉତ୍ତର ସାଙ୍ଗରେ ନେଇଯିବା ପାଇଁ। ସେ ଖୁବ୍ ଉଦ୍‌ବିଗ୍ନ।"

ସମ୍ରାଟ ଇତସ୍ତତଃ ହେଲେ। ଏ ପତ୍ରର ଉତ୍ତର ବର୍ତ୍ତମାନ ଲେଖିବା ପୂର୍ବରୁ ତାଙ୍କର ଉଚିତ ତିନିଜଣଙ୍କ ସହ ପରାମର୍ଶ କରିବା। ଅନ୍ତତଃ ସନ୍ନ୍ୟାସୀ ଉପଗୁପ୍ତଙ୍କଠାରୁ ଅନୁମତି ନେବା ପ୍ରୟୋଜନ। ସେ ସାଧାରଣ ସ୍ୱରରେ କହିଲେ, ''ମହାରାଣୀଙ୍କୁ ଜଣେଇବ ସେ ଆଜି ମଧ୍ୟରେ ଉତ୍ତର ପାଇ ଯିବେ। ଯାଅ।''

ସୁପ୍ରବାସର ଇଚ୍ଛା ନଥିଲା, କିନ୍ତୁ ସମ୍ରାଟଙ୍କ ଅବାଧ୍ୟ ହେବା ପାଇଁ ସାହସ କଲାନାହିଁ।

ସାରାଦିନ ତିଷ୍ୟାଙ୍କ ମନରେ ଚିନ୍ତା ଏବଂ ବିପରୀତ ଚିନ୍ତା। ସେ ସୁପ୍ରବାସାଠୁଁ ଟିକିନିଖି କରି ସବୁ ଜାଣି ନେଇଛନ୍ତି। ସମ୍ରାଟ ଯେ ଏପରି ପତ୍ର ଆଶା କରି ନଥିଲେ, ତା' ସୁପ୍ରବାସା ତାଙ୍କ ମୁହଁ ଦେଖି ବୁଝି ପାରିଛି।

ବର୍ତ୍ତମାନ ସମ୍ରାଟ ଯଦି ଅସ୍ୱୀକାର କରନ୍ତି? କିମ୍ୱା ସେଇ ଅତ୍ୟନ୍ତ ଅସୁସ୍ଥତା ସମୟରେ କାତର ଗଳାରେ କଣ କହିଥିଲେ ତା' ଯଦି ତାଙ୍କର ସ୍ମରଣକୁ ନ ଆସେ! ଦ୍ୱିତୀୟ ଚିନ୍ତାଟି ବାତିଲ୍ କଲେ ତିଷ୍ୟା। ଏ ପତ୍ର ତାଙ୍କୁ ନିଶ୍ଚୟ ସ୍ମରଣ କରେଇ ଦେବ। ପ୍ରାଣ ବଞ୍ଚେଇବା ଦାୟରେ ମୁହଁରେ ଯା' ଆସିଥିଲା ତା' କହିଛନ୍ତି ସମ୍ରାଟ, କିନ୍ତୁ ବଞ୍ଚି ଯାଇଥିବା ପ୍ରାଣ କଣ ତା' ମାନିନେବ? ଏ ବିଶାଳ ସାମ୍ରାଜ୍ୟ, କ୍ଷମତା, କଥାପଦକରେ ମାସେ ପାଇଁ ଛାଡ଼ି ଯିବା କଣ ସହଜ କଥା!

ତିଷ୍ୟାଙ୍କର କେବଳ ମନେ ହେଉଥିଲା ସେ ଭୁଲ୍ କରିଛନ୍ତି। କେବଳ କଥା ଉପରେ ନିର୍ଭର ନ କରି ସମ୍ରାଟଙ୍କ ପ୍ରତିଶ୍ରୁତି ଲିପିବଦ୍ଧ କରିରଖିବା ଉଚିତ ଥିଲା—ଯଦିଓ ସମ୍ରାଟ ବର୍ତ୍ତମାନ ସତ୍ୟ କଥା କହନ୍ତି, ତଥାଗତଙ୍କ ଆଦର୍ଶ ଅନୁସରଣ କରି ସରଳ ଜୀବନଯାପନ କରନ୍ତି। କିନ୍ତୁ ଏ କ୍ଷେତ୍ରରେ ସେ ଯଦି ଅସ୍ୱୀକାର କରନ୍ତି, ତେବେ ତିଷ୍ୟାଙ୍କର ଆଉ କିଛି କରିବାର ନାହିଁ।

କିଛିଦିନ ତଳର ଗୋଟିଏ ଘଟଣା କଥା ତାଙ୍କର ମନେ ପଡ଼ିଲା। ସମ୍ରାଟ ସେତେବେଳେ ବିପଦମୁକ୍ତ, କିନ୍ତୁ ଅତ୍ୟନ୍ତ ଦୁର୍ବଳ। ଦିନରାତି ଶଯ୍ୟା ପାର୍ଶ୍ୱରେ ରହି ତିଷ୍ୟା ତାଙ୍କର ସେବା କରୁଛନ୍ତି। ସମ୍ରାଟଙ୍କ ହୃତ୍‌ସ୍ପନ୍ଦନ ସ୍ୱାଭାବିକ ନୁହେଁ – ଏମିତି ସମୟରେ ସମ୍ରାଟ୍ ନିମ୍ନ ସ୍ୱରରେ କହିଥିଲେ, ''ମହାରାଣୀ! ମୁଁ କଳ୍ପନା କରିପାରି ନ ଥିଲି ତୁମେ ମୋତେ ଏତେ ଭଲପାଅ।''

ସଙ୍ଗେ ସଙ୍ଗେ କପାଳ କୁଞ୍ଚିତ ହୋଇଥିଲା ତିଷ୍ୟାଙ୍କର। ବକ୍ରସ୍ୱରରେ କହିଥିଲେ, ''ସତରେ!''

–''ହଁ, ନ ହେଲେ ମୋ ପାଇଁ ଏଭଳି ପ୍ରାଣପାତ ପରିଶ୍ରମ କରି ନଥାନ୍ତ। ତିଷ୍ୟା, ତେବେ ମୋତେ କାହିଁକି ଦୂରେଇ ରଖୁଛ? ମୁଁ ଅକାଳରେ ବୃଦ୍ଧ ହୋଇଛି, କିନ୍ତୁ ଯୌବନ ତ ଅମରତ୍ୱ ପାଏନାହିଁ। ତୁମେ ମୋ ପ୍ରାସାଦକୁ ଚାଲିଆସ।''

–''ଅସମ୍ଭବ।''

–''ବେଶ୍, ମୁଁ ତୁମ ପ୍ରାସାଦକୁ ଯିବି। ଆମେ ଦୁଇଜଣ ସର୍ବକ୍ଷଣ ପରସ୍ପର ପ୍ରତି

ଅନୁରକ୍ତ ରହି ତଥାଗତଙ୍କ ଧ୍ୟାନ କରିବା। ଦେଖିବ, ଏହାଠାରୁ ଅଧିକ ଶାନ୍ତି ଆଉ କେଉଁଠୁ ମିଳିବ ନାହିଁ।''

ତିଷ୍ୟା ଉଠି ଠିଆହେଲେ। ଏସବୁ ପ୍ରେମମୟ ସଂଳାପ ଅସହ୍ୟ ବୋଧ ହେଉଥିଲା ତାଙ୍କୁ।

—''କୁଆଡ଼େ ଯାଉଛ ?'' ସମ୍ରାଟ ଅସହାୟ।

—''ମୁଁ କ୍ଷୁଧା ବୋଧ କରୁଛି।''

—''ଓ। ତେବେ ଏଠାରେ ହିଁ ତ ଅନେକ ଫଳମୂଳ ମିଷ୍ଟାନ୍ନ ଅଛି। ଏଇଠି ବସି ଆହାର କର।''

—''ଫଳମୂଳ ?'' ତିଷ୍ୟା କକ୍ଷରୁ ପ୍ରସ୍ଥାନ କରିବା ପୂର୍ବରୁ କହିଥିଲେ, ''ପଥ୍ୟ ମୋର ପ୍ରୟୋଜନ ନାହିଁ, ମୋର ଖାଦ୍ୟ ଆବଶ୍ୟକ।''

ଅର୍ଥ ଅନୁଧାବନ କରି ପାରିଥିଲେ କି ନା ସମ୍ରାଟ କିଏ ଜାଣେ ! କିନ୍ତୁ ସେତେବେଳେ ମଧ୍ୟ ତାଙ୍କୁ ଜାବୁଡ଼ି ଧରିବାର ପ୍ରାଣପଣ ପ୍ରଚେଷ୍ଟା ଥିଲା। ଅତଏବ ଆଜି ପତ୍ର ପାଇବା ପରେ ସେ ସହଜରେ ନତି ସ୍ୱୀକାର କରିବେ ବୋଲି ମନେହୁଏ ନାହିଁ। ତା' ହୋଇଥିଲେ ପତ୍ରପାଠ ମାତ୍ରେ ହିଁ ଜଣେଇ ଦେଇଥାନ୍ତେ। ତିଷ୍ୟା କଣ ବର୍ତ୍ତମାନ ଜଣଜଣଙ୍କୁ ଡାକି କହିବେ ଯେ ସମ୍ରାଟ ଅଙ୍ଗୀକାର ରକ୍ଷା କରିନାହାଁନ୍ତି ! ମହାମତି ସମ୍ରାଟ ସେଭଳି କାର୍ଯ୍ୟ କରିଛନ୍ତି ବୋଲି ଲୋକେ କଣ ବିଶ୍ୱାସ କରିବେ ?

ଅପରାହ୍ନ ବେଳକୁ ସମ୍ବାଦ ଆସିଲା ସମ୍ରାଟ ତାଙ୍କୁ ରାଜସଭାକୁ ଆମନ୍ତ୍ରଣ ଜଣାଇଛନ୍ତି। ତିଷ୍ୟା ଆଶ୍ଚର୍ଯ୍ୟ ହେଲେ। ରାଜସଭାରେ ବିଶେଷ କାରଣ ବ୍ୟତୀତ ମହାରାଣୀଙ୍କ ଉପସ୍ଥିତି ପ୍ରୟୋଜନ ହୁଏ ନାହିଁ। ତେବେ କଣ ସମ୍ରାଟ ପୁଣି ତାଙ୍କୁ ନୂଆ କରି ମହାରାଣୀତ୍ୱର ସ୍ୱାଦୁ ଚଖେଇ ଭୁଲେଇ ରଖିବାକୁ ଚାହାଁନ୍ତି ? ତିଷ୍ୟା ଭାବି ପାରୁ ନ ଥିଲେ, ସେ କଣ କରିବେ। ସୁପ୍ପବାସା ଜଣାଇଲା ରାଜଧାନୀର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତି ମଧ୍ୟ ଆଜି ଆମନ୍ତ୍ରିତ ହୋଇଛନ୍ତି। ସୁସ୍ଥ ହେବାପରେ ଏହା ହିଁ ସମ୍ରାଟଙ୍କ ରାଜସଭାରେ ପ୍ରଥମ ଆତ୍ମପ୍ରକାଶ। ଅତଏବ ରାଜଧାନୀରେ ଆଜି ଆନନ୍ଦର, ଲହଡ଼ି ଭାଙ୍ଗୁଛି। ତିଷ୍ୟା ମନସ୍ଥ କଲେ ସେ ରାଜସଭାକୁ ଯିବେ। ଏବଂ ପ୍ରକାଶ୍ୟରେ ସମ୍ରାଟଙ୍କୁ ସ୍ମରଣ କରେଇ ଦେବେ ତାଙ୍କ ଅଙ୍ଗୀକାର କଥା।

ମହାରାଣୀ ତିଷ୍ୟା ଆଜି ଇନ୍ଦ୍ରାଣୀଙ୍କୁ ମଧ୍ୟ ଲଜ୍ଜିତ କରିବେ। ପ୍ରସାଧନ ତାଙ୍କ ରୂପର ଆକର୍ଷଣ ବହୁଗୁଣରେ ବର୍ଦ୍ଧିତ କରିଛି। ପରିଚାରିକାମାନଙ୍କ ଗହଣରେ ସେ ଯେତେବେଳେ ରାଜସଭାରେ ଉପସ୍ଥିତ ହେଲେ, ସେତେବେଳେ ସଭାକାର୍ଯ୍ୟ ଆରମ୍ଭ ହେବାକୁ ଯାଉଛି। ବିଖ୍ୟାତ ଏବଂ ଗଣ୍ୟମାନ୍ୟ ବ୍ୟକ୍ତିମାନେ ଯେ ତାଙ୍କୁ ମୁଗ୍ଧ ହୋଇ ଦେଖୁଛନ୍ତି, ତା' ନାରୀର ସହଜାତ ସଂସ୍କାରରେ ଅନୁଭବ କଲେ ସେ।

ସମ୍ରାଟ ସାମାନ୍ୟ ଗମ୍ଭୀର। ଅସୁସ୍ଥତାରୁ କୌଣସିମତେ ହଠାତ୍ ଆରୋଗ୍ୟଲାଭ କାରଣରୁ ଏପରି ହୋଇଛି ବୋଲି ସଭାସଦଗଣଙ୍କ ଧାରଣା ହୋଇଥିଲା। ସମ୍ରାଟଙ୍କୁ

ଦେଖି ସମ୍ଭ୍ରମ ସହକାରେ ଠିଆ ହେଲେ ସମ୍ରାଟ । କିନ୍ତୁ ତାଙ୍କ ରୂପରେ ଆକ୍ରାନ୍ତ ହେଲେ କି ନା ବୁଝି ହେଲା ନାହିଁ । କାରଣ ସମ୍ରାଟଙ୍କ ମୁହଁରେ ହସ ଫୁଟିଲା ନାହିଁ । ସେ ବିନୟୀ ଏବଂ ଧର୍ମପରାୟଣ । ତେଣୁ ଶୋଭନ ଯାହା, ତାହା ହିଁ ସେ କଲେ । ସାମ୍ରାଜ୍ଞୀଙ୍କୁ ସିଂହାସନ ନିକଟରେ ମର୍ଯ୍ୟାଦାପୂର୍ଣ୍ଣ ଆସନରେ ସ୍ଥାନ ଗ୍ରହଣ କରିବାକୁ ଆମନ୍ତ୍ରଣ ଜଣାଇଲେ ।

ସାମ୍ରାଜ୍ଞୀ ଆସନରେ ସ୍ଥିତ ହେଲା ପରେ ସଭାର ଗୁଞ୍ଜନ ଶାନ୍ତ ହେଲା । ତିଷ୍ୟା ଥରେ ଆଖି ବୁଲେଇ ଦେଖିନେଲେ, ରାଜକୁମାର ଅପେକ୍ଷାକୃତ ସାଧାରଣ ଆସନରେ ବସି ତାଙ୍କ ଆଡ଼କୁ ଚାହିଁଛନ୍ତି । ତାଙ୍କର ମନେ ହେଲା ଅଜସ୍ର ବଣୁଆ ଫୁଲ ମଧ୍ୟରେ ଗୋଟିଏ ରକ୍ତଗୋଲାପ ଫୁଟି ଉଠିଛି ! ତାଙ୍କୁ ଚିହ୍ନି ନେବାକୁ ବିନ୍ଦୁମାତ୍ର ବିଳମ୍ବ ବା ଅସୁବିଧା ହୁଏ ନାହିଁ । କିନ୍ତୁ କଣ ଦେଖୁଛନ୍ତି ସେ ? ତାଙ୍କ ରୂପ ? ନା, ହୃଦୟ ? ଆହା, ହୃଦୟ ବି ତ ଦେଖିହୁଏ । ତେବେ ତା' ଦେଖିବା ପାଇଁ ଆଖି ଦରକାର । ରାଜକୁମାରଙ୍କର କଣ ସେ ଆଖି ଫିଟିଲାଣି ? ତିଷ୍ୟାଙ୍କର ଛାତି କମ୍ପି ଉଠିଲା, ଆଖି ମୁଦି ହୋଇ ଆସିଲା, ଶରୀରରେ କଦମ୍ବ ଫୁଟିଲା ।

ଏଇ ସମୟରେ ସମ୍ରାଟ ସିଧାହୋଇ ବସିଲେ । ରାଜସଭା ସଂପୂର୍ଣ୍ଣ ନିସ୍ତବ୍ଧ ହେଲାପରେ ସେ କହିଲେ, "ହେ ମୋର ମହାମାନ୍ୟ ନାଗରିକବୃନ୍ଦ ! ତଥାଗତଙ୍କ ଆଶୀର୍ବାଦରୁ ମୁଁ ପୁଣି ଆପଣମାନଙ୍କ ସମ୍ମୁଖରେ କଥା କହିବାର ସୌଭାଗ୍ୟ ଅର୍ଜନ କରିଛି । ଆପଣମାନେ ଜାଣନ୍ତି ମୃତ୍ୟୁ ମୋ' ଉପରେ ଅବନତ ହୋଇଥିଲା । କିନ୍ତୁ ମୁଁ ଭାଗ୍ୟବାନ । ମହାରାଣୀଙ୍କ ପ୍ରଚଣ୍ଡ ବୁଦ୍ଧିମତ୍ତା ଏବଂ ପରିଶ୍ରମ ମୋତେ ପୁଣି ପ୍ରାଣଦାନ କରିଛି । କିନ୍ତୁ ମୁଁ ଦୁଃଖିତ ସେଇ ବୃଦ୍ଧ ପାଇଁ, ଯିଏ ହୁଏତ ମୋ ପାଇଁ ପ୍ରାଣତ୍ୟାଗ କରିଛି । ତାଙ୍କର ଆତ୍ମା ଯେଉଁଠାରେ ରହୁନା କାହିଁକି, ଶାନ୍ତି ଲାଭ କରିବ ।"

ସମ୍ରାଟ ନିଃଶ୍ୱାସ ନେଲେ, "ହେ ମୋର ପ୍ରିୟ ନାଗରିକବୃନ୍ଦ ! ମୁଁ ଏଇ ପ୍ରାଣ ପାଇଁ ବର୍ତ୍ତମାନ ଦୁଇଜଣଙ୍କ ନିକଟରେ ଋଣୀ । ଜଣେ ମୋର ଆତ୍ମାର ଶାନ୍ତି ତଥାଗତ, ଅନ୍ୟଜଣକ ମହାରାଣୀ ତିଷ୍ୟା । କିନ୍ତୁ ଏଇ ଘଟଣାରୁ ମୁଁ ଉପଲବ୍ଧି କଲି, ଜୀବନ କେତେ ନଶ୍ୱର । ଆମେ ଏଇ ଶରୀର ଉପରେ ନିର୍ଭର କରି ଯେତେ ଅହଂକାର ପ୍ରକାଶ କରୁ ନା କାହିଁକି, ଏହା ଉପରେ କୌଣସି କର୍ତ୍ତୃତ୍ୱ ଆମର ନାହିଁ । ଯେ

କୌଣସି ମୁହୂର୍ତ୍ତରେ ମଣିଷ ପୃଥିବୀର ମାୟା ତ୍ୟାଗ କରିପାରେ। ଏଇ ଭାବନା ମୋତେ ବ୍ୟଗ୍ର କରିଛି ଅବଶିଷ୍ଟ କାର୍ଯ୍ୟଗୁଡ଼ିକ ଶେଷ କରିବାକୁ। ମୋ ଜୀବନର ଏକମାତ୍ର ସାଧନା ତଥାଗତଙ୍କ ଧର୍ମମତ ସାରା ବିଶ୍ୱରେ ପ୍ରଚାର କରି ମଣିଷକୁ ଶାନ୍ତି ଏବଂ ସ୍ୱସ୍ତିର ପଥ ନିର୍ଦ୍ଦେଶ ଦେବା।''

ସମ୍ରାଟ ପୁଣି କିଛି ସମୟ ପାଇଁ ଶାନ୍ତ ହେଲେ। ତା'ପରେ କହିଲେ, ''ସେ କାର୍ଯ୍ୟ ବହୁ ପୂର୍ବରୁ ହିଁ ଆରମ୍ଭ କରିଛି। ହେ ମୋର ପ୍ରିୟ ନାଗରିକବୃନ୍ଦ! ଏଥର ମୁଁ ସ୍ଥିର କରିଛି ଧର୍ମଯାତ୍ରାରେ ଯିବି। ଏଇ ରାଜଧାନୀ ତ୍ୟାଗ କରି ମୁଁ ଆଗାମୀକାଲି ଧର୍ମଯାତ୍ରାରେ ବାହାରିବି। ଯେଉଁସବୁ ସ୍ଥାନରେ ବର୍ତ୍ତମାନ ସୁଦ୍ଧା ତଥାଗତଙ୍କ ବାଣୀ ପ୍ରଚାରିତ ହୋଇନାହିଁ, ମୁଁ ସେସବୁ ସ୍ଥାନକୁ ଯିବି। ମୋର ଏ ଯାତ୍ରାକାଳ ତିରିଶ ଦିନ ବ୍ୟାପୀ। ଏବଂ ଏ ସମୟ ମଧ୍ୟରେ ମୁଁ ରାଜ୍ୟ ବା ରାଜଧାନୀର କୌଣସି ସମସ୍ୟା କଥା ଚିନ୍ତା କରିବି ନାହିଁ। ମୋତେ ଯେମିତି ଏଇ ସମୟ ମଧ୍ୟରେ ପ୍ରଶାସନ ନେଇ କୌଣସି ପ୍ରକାରେ ବିରକ୍ତ କରା ନ ହୁଏ। ଏହି ତିରିଶ ଦିନ, ସାମ୍ରାଜ୍ୟର ସମସ୍ତ ଦାୟିତ୍ୱ ମୁଁ ମହାରାଣୀ ତିଷ୍ୟାଙ୍କ ଉପରେ ଅର୍ପଣ କଲି। ଯିଏ ମୋର ଜୀବନ ରକ୍ଷା କରିଛନ୍ତି, ସେ ନିଶ୍ଚୟ ଏଇ ସାମ୍ରାଜ୍ୟର ଅଧିବାସୀ ତଥା ସେମାନଙ୍କର ସୁଖ ଶାନ୍ତି ଓ ସମ୍ପଦ ରକ୍ଷା କରିପାରିବେ। ଏଇ ତିରିଶ ଦିନ ତାଙ୍କ ଆଦେଶ ହିଁ ଆଇନ। ଆପଣମାନେ ତାଙ୍କ ପ୍ରତି ଅନୁଗତ ରହିଲେ ମୁଁ କୃତାର୍ଥ ହେବି।'' ସମ୍ରାଟ ଏଥର ମହାରାଣୀଙ୍କ ଆଡ଼କୁ ଚାହିଁଲେ, ''ସାମ୍ରାଜ୍ଞୀ, ତଥାଗତ ଆପଣଙ୍କୁ ଶକ୍ତି ଦେବେ।''

ତିଷ୍ୟା ଚମତ୍କୃତ। ସମ୍ରାଟ ଯେ ଏଭଳିଭାବେ ତାଙ୍କ ଅଙ୍ଗୀକାର ରକ୍ଷା କରିବେ ତା' ସେ କଳ୍ପନା ବି କରି ନ ଥିଲେ।

ସେତେବେଳେ ପାହାନ୍ତିତାରା ଆକାଶରେ ଝିକ୍‌ମିକ୍ କରୁଛି। ତେବେ ଏ ସମୟଟିକୁ ଊଷା କହି ହେବ ସ୍ୱଚ୍ଛନ୍ଦରେ। କିନ୍ତୁ ପାଟଳିପୁତ୍ରର ଲୋକେ ଆଉ ଚିନ୍ତାମଗ୍ନ ନୁହଁନ୍ତି। ସେମାନେ ପଦାକୁ ବାହାରି ପଡ଼ିଛନ୍ତି। ଧର୍ମଯାତ୍ରାରେ ଯାଉଛନ୍ତି ସମ୍ରାଟ। ଏଇ ଯାତ୍ରାରେ ସଙ୍ଗୀ ହୋଇଛନ୍ତି ତଥାଗତଙ୍କ ଆଦର୍ଶରେ ଅନୁପ୍ରାଣିତ ସମସ୍ତ ବିଦଗ୍ଧଜନ। ଏମିତିକି ସନ୍ନ୍ୟାସୀ ଉପଗୁପ୍ତ ମଧ୍ୟ ଯୋଗ ଦେବେ ସମ୍ରାଟଙ୍କ ସହିତ। ଏମିତି ଏକ ଯାତ୍ରା କଥା ନାଗରିକମାନେ ପୂର୍ବରୁ ଜାଣି ନଥିଲେ। ସମ୍ରାଟ ତିରିଶ ଦିନ ରହିବେ ନାହିଁ

ଏବଂ ଏ ସମୟର ସମସ୍ତ ଦାୟିତ୍ୱ ସେ ରାଜକୁମାର ବା ବୀତଶୋକଙ୍କୁ ନ ଦେଇ, ଦେଇଛନ୍ତି—ଯାହାଙ୍କ ନିକଟରେ ସେ କୃତଜ୍ଞ, ସେଇ ସାମ୍ରାଜ୍ଞୀଙ୍କୁ। କିନ୍ତୁ ଏତେ ବଡ଼ ପୀଡ଼ାରୁ ଏବେ ସୁସ୍ଥ ହେବା ପରେ ପରେ ପୁଣି ସେ କାହିଁକି ପରିଶ୍ରମସାଧ୍ୟ ଯାତ୍ରାପଥରେ ପାଦ ବଢ଼ାଉଛନ୍ତି, ତାହା ହିଁ ବୋଧଗମ୍ୟ ହେଉ ନ ଥିଲା। ସେମାନଙ୍କ ମଧ୍ୟରୁ ଯେଉଁମାନେ ଅଧିକ ଧର୍ମପ୍ରାଣ ସେମାନେ ସମ୍ରାଟଙ୍କ ସଙ୍ଗୀ ହେବାପାଇଁ ପଥକୁ ବାହାରିଛନ୍ତି। ଶୁଣାଯାଏ, ରାଜକୁମାର ମଧ୍ୟ ଏ ଯାତ୍ରାରେ ଭାଗ ନେବାକୁ ଚାହିଁଥିଲେ, କିନ୍ତୁ ସମ୍ରାଟ ଅନୁମତି ଦେଇନାହାଁନ୍ତି। କାରଣ ରାଜଧାନୀରୁ ବିଭିନ୍ନ ବିହାରଗୁଡ଼ିକ ମଧ୍ୟରେ ଯୋଗାଯୋଗ ରଖିବାର ଦାୟିତ୍ୱ ତାଙ୍କ ଉପରେ ଅର୍ପିତ ହୋଇଛି।

ସେତେବେଳଯାଏଁ ଆକାଶରେ ଆଲୁଅ ଫୁଟି ନାହିଁ। ସମ୍ରାଟଙ୍କ ଯାତ୍ରା ସମୟ ହେଲାଣି। ରାଜପଥର ଉଭୟ ପାର୍ଶ୍ୱରେ ଜନସାଧାରଣ ବ୍ୟଗ୍ର ମନରେ ଉପସ୍ଥିତ। ତଥାଗତଙ୍କ ପବିତ୍ର ନାମ ଏବଂ ସ୍ତୋତ୍ରପାଠ ଆରମ୍ଭ ହୋଇଯାଇଛି। ବିହାରଯାତ୍ରାର ଐଶ୍ୱର୍ଯ୍ୟ ପ୍ରଦର୍ଶନ ନୁହେଁ, ତଥାଗତଙ୍କ ଆଦର୍ଶଭିତ୍ତିକ ସରଳ ଉଦାର ଜୀବନଯାତ୍ରା କଥା କହିବା ହିଁ ଧର୍ମଯାତ୍ରାର ଉଦ୍ଦେଶ୍ୟ।

ସୂର୍ଯ୍ୟଦେବ ଯେତେବେଳେ ପାହାନ୍ତିତାରାକୁ ମ୍ଳାନ କରି ଆକାଶରେ ରଙ୍ଗ ବିଞ୍ଚିବା ଆରମ୍ଭ କରିଛନ୍ତି, ଠିକ୍ ସେତିକିବେଳେ ଏକ ସୁଦୃଶ୍ୟ ରଥ ଆସି ଉପସ୍ଥିତ ହେଲା ସେଠାରେ। ଘୋଷକ ଘୋଷଣା କଲା, "ଏଇ ସାମ୍ରାଜ୍ୟର ସର୍ବମୟ କର୍ତ୍ତୃତ୍ୱ ଆଗାମୀ ତିରିଶ ଦିନ ପାଇଁ ଯାହାଙ୍କ ହାତରେ, ସେଇ ପ୍ରିୟଦର୍ଶିନୀ ସାମ୍ରାଜ୍ଞୀ ଧର୍ମଯାତ୍ରା ପ୍ରତି ଶ୍ରଦ୍ଧା ଜ୍ଞାପନ କରିବାକୁ ଉପସ୍ଥିତ ହୋଇଛନ୍ତି।"

ନାଗରିକଗଣ ଚମତ୍କୃତ। ସମ୍ରାଟ ମଧ୍ୟ। ସନ୍ନ୍ୟାସୀ ଉପଗୁପ୍ତଙ୍କ ସମ୍ମୁଖରେ ସାମ୍ରାଜ୍ଞୀ ଅବନତା ହେଲେ। ତା'ପରେ ମଧୁର ସ୍ୱରରେ ପ୍ରାର୍ଥନା କଲେ, "ଆପଣଙ୍କ ଆଶୀର୍ବାଦ ଭିକ୍ଷା କରୁଛି।"

ଉପଗୁପ୍ତଙ୍କ ମୁଖରେ ଜ୍ୟୋତି, ଆଖିରେ ଆନନ୍ଦ, ଓଠରେ ସ୍ମିତ ହସ। ସେ ଗୋଟିଏ ହାତ ଶୂନ୍ୟକୁ ଉଠାଇ କହିଲେ, "କଲ୍ୟାଣ ହେଉ ତବ, କଲ୍ୟାଣୀ!"

ସାମ୍ରାଜ୍ଞୀଙ୍କ ଛାତିରୁ ଯେମିତି ଗୋଟାଏ ବୋଝ ଓହ୍ଲାଇଗଲା। ସେ ସ୍ୱସ୍ତିର ନିଃଶ୍ୱାସ ନେଲେ ବୋଲି ମନେ ହେଲା ଉପସ୍ଥିତ ନାଗରିକମାନଙ୍କର। ସେମାନେ ତଥାଗତଙ୍କର ଜୟଧ୍ୱନି ଦେଲେ। ଉପଗୁପ୍ତ ଏଥର ତ୍ରିଶରଣ ମନ୍ତ୍ର ଉଚ୍ଚାରଣ କଲେ। ସାମ୍ରାଜ୍ଞୀ ସେତେବେଳକୁ ରଥକୁ ଫେରିଯାଇଛନ୍ତି। ଯାତ୍ରାରମ୍ଭ ପୂର୍ବରୁ ହିଁ ସେ ଚାଲିଯାଇଛନ୍ତି

ଅଟ୍ଟାଳିକା ଆଡୁଆଳକୁ। ପାଟଳିପୁତ୍ରର ଗଗନ ପବନରେ ସେତେବେଳେ ଧ୍ୱନିତ ହେଉଛି, ''ବୁଦ୍ଧମ୍ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘମ୍ ଶରଣଂ 'ଗଚ୍ଛାମି।'' ସମ୍ରାଟ ଧର୍ମଯାତ୍ରାରେ ବାହାରିଲେ।

ସେଇ ଉଜ୍ଜ୍ୱଳ ପ୍ରଭାତରେ ସିଂହାସନରେ ଆସୀନି ସାମ୍ରାଜ୍ଞୀ। ସେ ଜାଣନ୍ତି, ମାତ୍ର ତିରିଶଦିନ ତାଙ୍କର ସମ୍ବଳ। ବର୍ତ୍ତମାନ ରାଜସଭାରେ ଅନେକେ ଅନୁପସ୍ଥିତ। ସାମ୍ରାଜ୍ଞୀ ମନ୍ତ୍ରୀ ଖଲ୍ଲାତକଙ୍କୁ ଜିଜ୍ଞାସା କଲେ, ''ଏ ସଭାରେ ଯେଉଁମାନେ ଉପସ୍ଥିତ ନାହାଁନ୍ତି, ସେମାନେ କଣ ସମ୍ରାଟଙ୍କ ସଙ୍ଗୀ ହୋଇଛନ୍ତି ?''

ଖଲ୍ଲାତକ ଅତ୍ୟନ୍ତ ବିଭ୍ରାନ୍ତ। ଗତକାଲି ସମ୍ରାଟଙ୍କ ଘୋଷଣା ଶୁଣିବା ପରଠାରୁ ସେ ବାରମ୍ବାର ଚେଷ୍ଟା କରିଥିଲେ ସାମ୍ରାଜ୍ଞୀଙ୍କ ସହ ଯୋଗାଯୋଗ କରିବାକୁ। କିନ୍ତୁ ସାମ୍ରାଜ୍ଞୀଙ୍କର ସମୟ ହୋଇନାହିଁ। ନିଜେ ମନ୍ତ୍ରୀ ହୋଇ ସୁଦ୍ଧା ସେ ଜାଣି ନ ଥିଲେ ସମ୍ରାଟ ଏଭଳି ଏକ ସିଦ୍ଧାନ୍ତ ନେବାକୁ ଯାଉଛନ୍ତି! ତାଙ୍କର ମନେପଡ଼ିଲା, ସାମ୍ରାଜ୍ଞୀ ବାରମ୍ବାର ତାଙ୍କ ଉପରେ ଆସ୍ଥା ରଖିବାକୁ କହିଥିଲେ। ବର୍ତ୍ତମାନ ବୁଝି ହେଉଛି, ଏଇ ରମଣୀ ବହୁ ପୂର୍ବରୁ ହିଁ ନିଶ୍ଚିତ ଥିଲେ ଯେ ସମ୍ରାଟ ତାଙ୍କୁ ହିଁ କ୍ଷମତା ଦେବେ। ସେ ବୀତଶୋକଙ୍କୁ ବୁଝେଇଛନ୍ତି ଯେ ଏ ରମଣୀର ସ୍ୱଭାବ ସର୍ପିଣୀ ଭଳି ଖଳ, ଯାଙ୍କ ସହିତ ମୁହାଁମୁହିଁ ସଂଘାତକୁ ଯିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ।

ଖଲ୍ଲାତକ ଉତ୍ତର ଦେଲେ, ''ମହାରାଣୀଙ୍କ ଅନୁମାନ ଅଭ୍ରାନ୍ତ।''

ମହାରାଣୀ ପ୍ରଶ୍ନ କଲେ, ''ସଭାର ସଦସ୍ୟମାନେ ବୌଦ୍ଧଧର୍ମ ପ୍ରତି ଅନୁରକ୍ତ ହେବା ସ୍ୱାଭାବିକ। କାରଣ ସମ୍ରାଟ ସେଇ ଧର୍ମର ପୃଷ୍ଠପୋଷକ। ଯଦିଓ ସେ ସର୍ବଧର୍ମ ସମନ୍ୱୟ କଥା କହିଥାନ୍ତି, ତଥାପି ଏ ସଭାରେ ତାର ପ୍ରତିଫଳନ ଦେଖି ପାରୁନାହିଁ। ଅନୁପସ୍ଥିତ ସଦସ୍ୟମାନଙ୍କ ସ୍ଥାନରେ ଅନ୍ୟ ଧର୍ମର ବିଚକ୍ଷଣ କର୍ମୀମାନଙ୍କୁ ନିର୍ବାଚିତ କରାହେବ। ସେମାନେ ଦେଖିବେ ଯେମିତି ଏ ସାମ୍ରାଜ୍ୟରେ କୌଣସି ନାଗରିକ ନିଜକୁ ଦ୍ୱିତୀୟ ଶ୍ରେଣୀଭୁକ୍ତ ମନେ ନ କରନ୍ତି।''

ଖଲ୍ଲାତକ ଆଶ୍ଚର୍ଯ୍ୟ! ମହାରାଣୀ ଏମିତି ଏକ ସ୍ଥାନରେ ଆଘାତ କରିଛନ୍ତି, ଯା' କଳ୍ପନାତୀତ। ବର୍ତ୍ତମାନ ସାମ୍ରାଜ୍ୟର ପ୍ରାୟ ସମସ୍ତ ପ୍ରଧାନ ପଦରେ ବୌଦ୍ଧମାନେ ଆସୀନ। ଏ ପଟ୍ଟ ପରିବର୍ତ୍ତନ ନିଶ୍ଚୟ ଅସନ୍ତୋଷ ସୃଷ୍ଟି କରିବ। କିନ୍ତୁ ସେ ନୀରବ ରହିଲେ, ଇଙ୍ଗିତରେ ବୁଝାଇଲେ ଯେ ସାମ୍ରାଜ୍ଞୀଙ୍କ ଆଦେଶ ଶିରୋଧାର୍ଯ୍ୟ।

ସାମ୍ରାଜ୍ଞୀ ଏଥର ରାଜସ୍ୱ ବିଷୟକ ମନ୍ତ୍ରୀ ହଥିଥାରହପୁତ୍ରଙ୍କୁ ପ୍ରଶ୍ନ କଲେ, ''ରାଜକୋଷର ଅବସ୍ଥା କିପରି ଅଛି ?''

ହଥିଆରହପ୍ତ କହିଲେ, ''ମହାମାନ୍ୟ! ସାମ୍ରାଜ୍ଞୀ! ସମ୍ରାଟଙ୍କ ଉଦାର ଅର୍ଥନୀତି ଯୋଗୁ ବର୍ତ୍ତମାନ ଯତ୍ର ଆୟ ତତ୍ର ବ୍ୟୟ ହେଉଛି। ସମ୍ରାଟ ଇଚ୍ଛା ପ୍ରକାଶ କରିଛନ୍ତି ଯେ, ପ୍ରଜାମାନଙ୍କ ଉପରେ ଅତିରିକ୍ତ କରଭାର ବସା ଯିବନାହିଁ କିମ୍ବା ବାକିଆ ରାଜସ୍ୱ ଆଦାୟ କରିବା ପାଇଁ କୌଣସି ଚାପ ସୃଷ୍ଟି କରାଯିବ ନାହିଁ। ତଥାଗତଙ୍କ ପ୍ରତି ପ୍ରଜାମାନେ ଅନୁରକ୍ତ ହେବା ସତ୍ତ୍ୱେ, କହିବାକୁ ଦ୍ୱିଧା ନାହିଁ, ସୁଯୋଗ ପାଇଲେ ଅନେକେ ତାର ଅସଦ୍‌ବ୍ୟବହାର କରି ଚାଲିଛନ୍ତି। ପୁଣି ମହାମତି ସମ୍ରାଟଙ୍କ ଜନହିତକର କାର୍ଯ୍ୟ ପାଇଁ ବ୍ୟୟ ବର୍ତ୍ତମାନ ଅନେକ ବୃଦ୍ଧି ପାଇଛି। ଫଳରେ ରାଜକୋଷ କ୍ରମଶଃ କ୍ଷୀଣ ହୋଇଆସୁଛି।''

ମହାରାଣୀ ହସିଲେ, ''ବାକିଆ କର କଥା ଆମର ବିଚାର୍ଯ୍ୟ ବିଷୟ ନୁହେଁ। ସମ୍ରାଟ ଯାହା ଭଲ ବୁଝିବେ, କରିବେ। କିନ୍ତୁ ଆପଣ ଅବିଳମ୍ବେ ବର୍ତ୍ତମାନର ଦେୟ କର ଆଦାୟ କରନ୍ତୁ। ରାଜା ରାଜ୍ୟ ଚଳେଇବେ ରାଜକର ଉପରେ ନିର୍ଭର କରି। ତାଙ୍କ ରାଜତ୍ୱରେ ଶାନ୍ତିରେ ଏବଂ ନିରାପଦରେ ରହିବାକୁ ଗଲେ ପ୍ରଜାମାନଙ୍କୁ ସେ କର ନିଶ୍ଚୟ ଦେବାକୁ ପଡ଼ିବ। ଏ ବିଷୟରେ କୌଣସି କ୍ଷମା ନାହିଁ। ଧର୍ମୀୟ ଦାନଧ୍ୟାନ ବର୍ତ୍ତମାନ ବନ୍ଦ ରହିବ। ମୁଁ ଦ୍ୱିତୀୟଥର ଗୋଟିଏ ବାକ୍ୟ ଉଚ୍ଚାରଣ କରିବାକୁ ପସନ୍ଦ କରେ ନାହିଁ।''

ହଥିଆରହପ୍ତ ଆଶ୍ଚର୍ଯ୍ୟ ହେଲେ। ସେ ଶୁଣିଥିଲେ ସାମ୍ରାଜ୍ଞୀ ଜଣେ ଅତି ସାଧାରଣ ପରାମାଣିକ କନ୍ୟା। କିନ୍ତୁ ଯେଉଁ ଭଙ୍ଗୀ ଏବଂ ଭାଷାରେ ସେ କଥା କହୁଛନ୍ତି, ସେଥିରେ ତାଙ୍କୁ ଅତ୍ୟନ୍ତ ଶିକ୍ଷିତା ଏବଂ ବୁଦ୍ଧିମତୀ ନ ଭାବିବାର କୌଣସି କାରଣ ନାହିଁ। ଜନୈକା ମହିଳାଙ୍କୁ ସମ୍ରାଟ ସେମାନଙ୍କ ଉପରେ ଲଦି ଦେଇଛନ୍ତି ବୋଲି ଅନ୍ୟସମସ୍ତଙ୍କ ସହ ସେ ମଧ୍ୟ ବିରକ୍ତ। ବୌଦ୍ଧ ଭାବରେ ସାମ୍ରାଜ୍ଞୀଙ୍କ ଅଳ୍ପସମୟ ପୂର୍ବର ଘୋଷଣା ତାଙ୍କୁ ଅସନ୍ତୁଷ୍ଟ କରିଛି। କିନ୍ତୁ ଏ ମହିଳା ଯେ ତେଜୋମୟୀ, ଏଥିରେ ସନ୍ଦେହ ନାହିଁ। ବୁଦ୍ଧଙ୍କ ଅନୁରାଗୀ ଭାବେ ସମ୍ରାଟଙ୍କ ରାଜସ୍ୱଚିନ୍ତା ସମର୍ଥନ କରିବା ଗୋଟିଏ କଥା ଏବଂ ରାଜସ୍ୱମନ୍ତ୍ରୀ ଭାବେ ତାକୁ ବାସ୍ତବାୟିତ କରିବା ଅନ୍ୟ କଥା। ଅବଶ୍ୟ ଦ୍ୱିତୀୟଟି ପାଳନ କରିବା ଏବେ ତାଙ୍କ ପକ୍ଷରେ ଅନେକ ସହଜ ହେବ। କିନ୍ତୁ ସାଧାରଣ ମଣିଷ ଯେଉଁ ଅଭ୍ୟାସରେ ଅଭ୍ୟସ୍ତ, ତାର ବ୍ୟତିକ୍ରମ ହେଲେ ରାଜ୍ୟରେ ବିକ୍ଷୋଭ ଦେଖାଦେବ। ହଥିଆରହପ୍ତ ସବିନୟରେ ସେଇ ଆଶଙ୍କା କଥା ନିବେଦନ କଲେ।

ସାମ୍ରାଜ୍ଞୀଙ୍କ ମୁଖ କଠୋର ହୋଇ ଉଠିଲା। ସେ ଦୃଢ଼କଣ୍ଠରେ କହିଲେ, ''ମୁଁ କୌଣସି ଅନ୍ୟାୟ ସହ ସନ୍ଧି କରିବି ନାହିଁ। ବିକ୍ଷୋଭକାରୀଙ୍କ ପାଇଁ ମୁଁ ପୁଷ୍ପଶଯ୍ୟା ନିବେଦନ କରିବି ନାହିଁ। ଆପଣଙ୍କୁ ଯାହା ନିର୍ଦ୍ଦେଶ ଦେଲି, ସେଇ ଅନୁସାରେ କାର୍ଯ୍ୟ କରିବେ। ଆଉ ହଁ, ଦୁଶ୍ଚିନ୍ତା ଯଦି ଆପଣମାନଙ୍କ ମନକୁ ବିବ୍ରତ କରୁଥାଏ,

ତେବେ ପଦତ୍ୟାଗ କରନ୍ତୁ।''

ଏତେଟା ଆଶା କରି ନ ଥିଲେ ହଥିଆରହପୁତ୍ର। ମ୍ଲାନମୁଖରେ ସେ ଆସନ ଗ୍ରହଣ କଲେ।

ସାମ୍ରାଜ୍ଞୀଙ୍କ ଦୃଷ୍ଟି ଏଥର ବୀତଶୋକଙ୍କ ଉପରେ ପଡ଼ିଲା। ତାଙ୍କ ମୁଖର ଭାବରୁ ଜଣାପଡୁଥିଲା ସେ ହତଭମ୍ବ ହୋଇପଡ଼ିଛନ୍ତି।

ସୁନ୍ଦରୀ ରମଣୀ ଯେ ପ୍ରୟୋଜନରେ ଏତେ କଠୋର ହୋଇପାରନ୍ତି; ତା' ତାଙ୍କ କଳ୍ପନା ବାହାରେ ଥିଲା। ବୀତଶୋକଙ୍କ ମୁଖରେ ହସ ନଥିଲା। ସାମ୍ରାଜ୍ଞୀ ତାଙ୍କୁ ଉପେକ୍ଷା କଲେ। ସେ ଖଲ୍ଲାତକଙ୍କୁ ପ୍ରଶ୍ନ କଲେ, ''ଆମ ସୈନ୍ୟବାହିନୀର ବର୍ତ୍ତମାନ ଅବସ୍ଥା କି ପ୍ରକାର ? ମୁଁ ବିଶଦଭାବେ ଜାଣିବାକୁ ଚାହେଁ।''

ଖଲ୍ଲାତକ ଖୁସି ହେଲେ। ସେ ଏଇଭଳି ପ୍ରଶ୍ନ ପାଇଁ ଅପେକ୍ଷା କରିଥିଲେ, ଯାହାର ଉତ୍ତର ଦେଲାବେଳେ ମନର ଜ୍ୱାଳା ବୁଝେଇ ଦେଇ ହେବ। ସେ କହିଲେ, ''ଦୀର୍ଘଦିନ ଖରାବର୍ଷାରେ ପଡ଼ି ରହିଲେ, ଇସ୍ପାତରେ ମଧ୍ୟ କଳଙ୍କି ଲାଗେ। ସୈନ୍ୟମାନଙ୍କ କାର୍ଯ୍ୟ ହେଲା ଯୁଦ୍ଧ କରିବା, ଅସ୍ତ୍ର ବ୍ୟବହାର କରିବା। କିନ୍ତୁ ମହାରାଣୀ ନିଶ୍ଚୟ ଅବଗତ ଅଛନ୍ତି ଯେ ସମ୍ରାଟ ତାଙ୍କ ଧର୍ମବିଶ୍ୱାସ ପାଇଁ ଯୁଦ୍ଧବିଗ୍ରହ ପସନ୍ଦ କରନ୍ତି ନାହିଁ। ଏ ସମୟ ମଧ୍ୟରେ କୌଣସି ବିପ୍ଳବ ମଧ୍ୟ ହୋଇନାହିଁ ଯେ ସୈନ୍ୟମାନେ ତା' ଦମନ କରିବାକୁ ସକ୍ରିୟ ହେବେ। ଫଳରେ ଅତ୍ୟନ୍ତ ଅଳସ ଜୀବନଯାପନରେ ଅଭ୍ୟସ୍ତ ହୋଇପଡ଼ିଛନ୍ତି ସେମାନେ। ଶୁଣିଛି, ଗୋଦାବରୀ ଅପରପାର୍ଶ୍ୱର ରାଜ୍ୟଗୁଡ଼ିକରେ ଆମ ସୈନ୍ୟବାହିନୀ ସମ୍ପର୍କରେ ଥଟ୍ଟା କରନ୍ତି।''

ସାମ୍ରାଜ୍ଞୀଙ୍କ କପାଳ କୁଞ୍ଚିତ ହେଲା, ''ଥଟ୍ଟା ?''

ଖଲ୍ଲାତକ କହିଲେ, ''ହଁ। ସେମାନେ କହନ୍ତି ଆମ ସୈନ୍ୟମାନେ ଚେରହୀନ ବଟବୃକ୍ଷ। ପବନ ଦେଲାମାତ୍ରେ ସର୍ବନାଶ।''

ସାମ୍ରାଜ୍ଞୀ ଜିଜ୍ଞାସା କଲେ, ''ଆପଣ କଣ ତାହା ହିଁ ମନେ କରନ୍ତି ଖଲ୍ଲାତକ ?''

ଖଲ୍ଲାତକ କହିଲେ, ''କଥାଟା ଅନେକାଂଶରେ ସତ୍ୟ, କିନ୍ତୁ ଏବେ ବି ଚେଷ୍ଟା କଲେ ସେମାନଙ୍କୁ ଉପଯୁକ୍ତ କରାଯାଇପାରେ।''

ସାମ୍ରାଜ୍ଞୀ କହିଲେ, ''ଠିକ୍ ଅଛି। ମୁଁ ଏ ବିଷୟରେ ମୋର ସିଦ୍ଧାନ୍ତ ଆପଣଙ୍କୁ ଆଜି ହିଁ ଜଣାଇଦେବି। ଆପଣ ସୈନ୍ୟବାହିନୀଙ୍କୁ ପ୍ରସ୍ତୁତ କରନ୍ତୁ। ଆମ ସେନାଧକ୍ଷ କିଭଳି ଯୋଗ୍ୟ ?''

ଖଲ୍ଲାତକ ହସିଲେ, ''ଯୋଗ୍ୟ ଥିଲେ। ତେବେ ତଥାଗତଙ୍କ ଶରଣ ନେବା ପରେ—ମାନେ ତାଙ୍କର ମଧ୍ୟ ଯୁଦ୍ଧବିଗ୍ରହରେ ଆଉ ସେମିତି ମତି ନାହିଁ। ଯଦିଓ ସେ ପାରିଶ୍ରମିକ ଠିକ୍ ନେଇ ଚାଲିଛନ୍ତି।''

ସାମ୍ରାଜ୍ଞୀ କଠୋର ହେଲେ। ତାଙ୍କ ଚିବୁକ ଶକ୍ତ, ଚକ୍ଷୁ ସ୍ଥିର। ଏଇ ସମୟରେ ବୀତଶୋକ ଉଠି ଠିଆହେଲେ। ବହୁକ୍ଷଣ ଧରି ସେ କିଛି କହିବାକୁ ଚାହୁଁଥିଲେ। ମହାରାଣୀ ତାଙ୍କ ଆଡ଼କୁ ଆଦୌ ଲକ୍ଷ୍ୟ କଲେ ନାହିଁ। ହଠାତ୍ ସେ ଉଠିପଡ଼ିଲେ ସିଂହାସନରୁ। ତା'ପରେ ମର୍ଯ୍ୟାଦାପୂର୍ଣ୍ଣ ପଦକ୍ଷେପରେ ସଭା ତ୍ୟାଗ କରି ପ୍ରସ୍ଥାନ କଲେ।

ଖୁବ୍ ଦ୍ରୁତ ଗୁଞ୍ଜନ ବିସ୍ତାରିଗଲା। ମହାରାଣୀ ସିଂହାସନରେ ଆସୀନ ହେବା ମାତ୍ରେ ବୌଦ୍ଧମାନଙ୍କ ଧର୍ମବିଶ୍ୱାସରେ ହସ୍ତକ୍ଷେପ କରିଛନ୍ତି। ମହାରାଣୀ ରାଜ୍ୟର ଉଚ୍ଚ ପଦପଦବୀରୁ ବୌଦ୍ଧମାନଙ୍କୁ ବିତାଡ଼ିତ କରିବାକୁ ଚାହାଁନ୍ତି। ସେମାନଙ୍କର ମନେ ପଡ଼ିଲା, ମହାରାଣୀ କେବେହେଲେ ସମ୍ରାଟଙ୍କ ସହ ସଦ୍‌ଭାବ ରଖିନାହାଁନ୍ତି ଏବଂ ଧର୍ମୀୟ ଅନୁଷ୍ଠାନରେ ଅଂଶଗ୍ରହଣ କରିନାହାଁନ୍ତି। ଅତଏବ ନିଜର ନିରାପତ୍ତା ବିଘ୍ନିତ ହେଉଛି ବୋଧକରି ରାତାରାତି ସାରା ଦେଶରେ ମହାରାଣୀଙ୍କ ବିରୁଦ୍ଧରେ ଏକପ୍ରକାର ଆବହାୱା ସୃଷ୍ଟି ହୋଇଗଲା।

ତଦୁପରି ରାଜସ୍ୱବାବଦ ମହାରାଣୀଙ୍କ ନୂତନ ନିର୍ଦ୍ଦେଶ ସାଧାରଣ ଲୋକଙ୍କୁ ଉତ୍ତପ୍ତ କରିବାରେ ଯଥେଷ୍ଟ ସାହାଯ୍ୟ କଲା। ବୌଦ୍ଧମାନେ ସେ ସୁଯୋଗକୁ କାର୍ଯ୍ୟରେ ଲଗାଇବାକୁ ଚାହିଁଲେ। ଏହାପରେ ଉତ୍ତେଜନା ବଢ଼ିଲା ସୈନ୍ୟବାହିନୀରେ। ସେମାନେ ଏତେଦିନ ନିଷ୍କ୍ରିୟ ହୋଇ ବସି ରହିଥିବାରୁ ଆରାମପ୍ରିୟ ଏବଂ ଅଳସ ହୋଇପଡ଼ିଥିଲେ। ବୁଦ୍ଧଙ୍କ ନାମଗାନ କଲେ ହିଁ ସମସ୍ତ ପ୍ରକାର ଶାରୀରିକ ପରିଶ୍ରମରୁ ଅବ୍ୟାହତି ମିଳିପାରେ—ଏଇଭଳି ଏକ ଧାରଣା ସେମାନଙ୍କ ମନରେ ବଦ୍ଧମୂଳ ହୋଇ ପଡ଼ିଥିଲା। ସେମାନେ ଖଲ୍ଲାଟକଙ୍କୁ ଆଦୌ ଭଲ ଆଖିରେ ଦେଖୁ ନ ଥିଲେ। ବରଂ ସେମାନଙ୍କ ସେନାଧକ୍ଷଙ୍କ ଭଳି ଏକ ନିଶ୍ଚିତ ଜୀବନରେ ଆବଦ୍ଧ ରହି ଜୀବନ ବିତେଇବାକୁ ଚାହୁଁଥିଲେ। ବର୍ତ୍ତମାନ ପୁଣି ଅସ୍ତ୍ରରେ ଶାଣ ଦେବାର ଆଦେଶ ସେମାନଙ୍କୁ ବିରକ୍ତ କରି ତୋଳିଲା। କିନ୍ତୁ କେହିହେଲେ ହଠାତ୍ କରି ମୁହଁ ଖୋଲିବାର ସାହସ ପାଉନଥିଲେ।

ଏ ସମ୍ବାଦ ପ୍ରାସାଦରେ ମଧ୍ୟ ପହଞ୍ଚିଲା। ସୁପ୍ପବାସା ସେ କଥା କହିଲା ତିଷ୍ୟାଙ୍କୁ। ସବୁ ଶୁଣି ତିଷ୍ୟା ମୃଦୁ ହସିଲେ। ତା'ପରେ କହିଲେ, "କହ ତ ସୁପ୍ପା, ସିଂହାସନରେ ବସିଲେ ମୋତେ କେମିତି ଦେଖାଯାଏ ?"

"ରାଜେନ୍ଦ୍ରାଣୀ ଭଳି।"— ସୁପ୍ପବାସା ଆଉ କୌଣସି ଉପମା ଖୋଜି ପାଉନଥିଲା।

ତିଷ୍ୟା ସୁପ୍ପବାସା ମୁହଁଆଡ଼କୁ ଚାହିଁଲେ। ତା'ପରେ ଶକ୍ତ ଗଳାରେ କହିଲେ, "ଶୁଣ, ଏ ଶବ୍ଦଟି ତୁ କଦାପି ମୋ ସାମ୍ନାରେ ଉଚ୍ଚାରଣ କରିବୁ ନାହିଁ। ମୁଁ କୌଣସି ରାଜାଙ୍କ ପରିଚୟରେ ପରିଚିତା ନୁହେଁ। ନାରୀମାନେ କଣ କେବଳ ପୁରୁଷର ବିଳାସ ସାମଗ୍ରୀ ?"

ସୁପ୍ପବାସାକୁ ଇଦାନିଂ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି। ସିଂହାସନରେ ଦାୟିତ୍ୱ ନେବା ପରଠାରୁ ସେ ଯେମିତି ମହାରାଣୀଙ୍କୁ ଆଉ ଚିହ୍ନିପାରୁ ନ ଥିଲା। ରାତାରାତି ଗୋଟିଏ ମଣିଷ ଏମିତି ବଦଳି ଯାଇପାରେ—ତା' ସେ କଳ୍ପନା କରି ପାରୁ ନ ଥିଲା। ସେ ନିମ୍ନ ଗଳାରେ କହିଲା, "ମୁଁ କିଛି ନ ବୁଝି କହିଛି, ମହାରାଣୀ।"

ତିଷ୍ୟା ହସିଲେ। "ଖଲ୍ଲାତକଙ୍କୁ ଅନୁମତି ପତ୍ର ଦେଇ ଆସିଛୁ ?"

ସୁପ୍ପବାସା ମୁଣ୍ଡ ହଲେଇଲା। "ହଁ। ସେ ଆପଣଙ୍କ ସହ ସାକ୍ଷାତ କରିବେ।"

ତିଷ୍ୟା ବିରକ୍ତ କଣ୍ଠରେ କହିଲେ, "ପୁଣି ସାକ୍ଷାତ! ଲୋକଟା ଯେତେ ଶୀଘ୍ର ଏ ନଗରରୁ ବିଦାୟ ନେବ ସେତେ ମଙ୍ଗଳ। ଗୋଦାବରୀ ସେପଟରେ ମରୁ ଯାଇ ଯୁଦ୍ଧ କରି।" ତା'ପରେ, ସ୍ୱର ପରିବର୍ତ୍ତନ କରି କହିଲେ, "ସମ୍ରାଟ ବର୍ତ୍ତମାନ କେଉଁଠି ?"

—"ଲୁମ୍ବିନୀରେ। ସମ୍ରାଟ ସେ ସ୍ଥାନ ଦର୍ଶନ କରିଛନ୍ତି। ସେଠାରେ ସ୍ତମ୍ଭ ନିର୍ମାଣ କରି ଖୋଦେଇ କରାହେଉଛି ଅନୁଶାସନଲିପି।"

—"ତୋ' ଲୋକ ସଠିକ୍ ଖବର ପଠଉଛି ତ ?"

—"ହଁ ମହାରାଣୀ, ଆପଣ ଏ ବିଷୟରେ ନିଶ୍ଚିନ୍ତ ରହିପାରନ୍ତି।"

—"ବେଶ୍। ତୁ ଏଥର ରାଜକୁମାରଙ୍କୁ ଖବର ଦେ। କହିବୁ ମହାରାଣୀଙ୍କ ଆଦେଶ।"

ସୁପ୍ପବାସା, ହଠାତ୍ ଏଭଳି କଥା ଆଶା କରିନଥିଲା। ସେ ଚକିତରେ ମୁହଁ ଉଠେଇଲା। ତା'ଅଧରରେ ହସ ଫୁଟିଉଠିଲା। ସେଇ ସମୟରେ ତିଷ୍ୟା କହିଲେ, "ଆଉ ହଁ, ମହାନାମ ସହିତ ତୋର କଣ ପ୍ରାୟ ସାକ୍ଷାତ ହେଉଛି ?"

—"ହଁ।" ତ୍ରସ୍ତ ହୋଇ ଉଠିଲା ସୁପ୍ପବାସା। ତା'ପରେ କହିଲା, "ମୁଁ ସଙ୍ଗେ ସଙ୍ଗେ ରାଜକୁମାରଙ୍କ ନିକଟକୁ ଯାଉଛି ମହାରାଣୀ।"

ସୁପ୍ପବାସା ପ୍ରସ୍ଥାନ କଲାପରେ ତିଷ୍ୟାଙ୍କର ଇଚ୍ଛା ହେଲା, ଉଚ୍ଚ କଣ୍ଠରେ ହସନ୍ତେ। କିନ୍ତୁ ବର୍ତ୍ତମାନ ତାହା ସମ୍ଭବ ନୁହେଁ। ମହାରାଣୀ ଯେତେବେଳେ ରାଜ୍ୟର ଅଧିଶ୍ୱରୀ, ସେତେବେଳେ ତାଙ୍କୁ ଅନେକଗୁଡ଼ିଏ ନିୟମ ମାନିବାକୁ ପଡ଼ିବ। ତା' ମଧ୍ୟରୁ ଗୋଟିଏ ହେଲା ନିଜକୁ ପ୍ରକାଶିତ ନ କରିବା। ସୁପ୍ପବାସା ମହାନାମ ସହିତ ପ୍ରଣୟ କରୁଛି। ଆହା, କେତେ ସହଜରେ ସମସ୍ତେ ସମସ୍ତଙ୍କୁ ପାଇଯା'ନ୍ତି! କେବଳ ସେ ଏକା ଅଭାଗିନୀ! ଯୁଗ ଯୁଗ ଧରି ଅପେକ୍ଷା କରି ରହିବାକୁ ପଡୁଛି। କେତେକାଳ ? ନା, ଆଉ ନଷ୍ଟ ଭଳାଭଳି ସମୟ ତାଙ୍କ ହାତରେ ନାହିଁ। ସମ୍ରାଟ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ହିଁ ଯାହା କରିବାକୁ ପଡ଼ିବ। ତିଷ୍ୟା ଉଠିଲେ। ଇଦାନିଂ ଦେହ ବେଶ୍ ଭାରୀ ଲାଗେ। ସେ ଧୀରପାଦରେ ମୁକୁର ସମ୍ମୁଖରେ ଠିଆହେଲେ। ଆହା, କି ସୁନ୍ଦର! ବର୍ତ୍ତମାନ ତାଙ୍କ ବକ୍ଷଦେଶ ଏବଂ ନିତମ୍ବ ଯେମିତି ଆହୁରି ପୂର୍ଣ୍ଣ, ତ୍ୱକ୍‌ରେ ରେଶମର ମସୃଣତା। ଆଷାଢ଼ର ପୂର୍ଣ୍ଣଗର୍ଭା ନଦୀ ମଧ୍ୟ ତାଙ୍କୁ ଦେଖିଲେ

ଈର୍ଷା କରିବ। ତିଷ୍ୟା କେଶବନ୍ଧନ ମୁକ୍ତ କଲେ। ଅଜସ୍ର କଳାନାଗ ଯେମିତି ଖେଳି ବୁଲୁଛନ୍ତି ପୃଷ୍ଠଦେଶରେ ନିତମ୍ବ ଦେଇ ଜାନୁପର୍ଯ୍ୟନ୍ତ! ଆଷାଢ଼ର ସମଗ୍ର ଆକାଶଟା ଯେମିତି ଚୋରି ହୋଇଯାଇଛି!

ସୁନା ପ୍ରଦୀପରେ ଆଲୋକ ଜଳୁଛି। ବିଶେଷ କିମ୍ବା ସାଧାରଣ ଅତିଥିମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କକ୍ଷ ନୁହେଁ। ତିଷ୍ୟା ବିଶେଷଭାବେ ସଜ୍ଜିତ କରିଥିଲେ ଏଇ ନିର୍ଜନ କକ୍ଷଟିକୁ। ଦକ୍ଷିଣ ଆକାଶରୁ ବହି ଆସୁଥିବା ମୃଦୁମନ୍ଦପବନ ପ୍ରକମ୍ପିତ କରି ଦେଉଥିଲା ଆଲୁଅର ଶିଖାଟିକୁ। ସମସ୍ତ କକ୍ଷରେ ମୃଗନାଭିର ମଦିର ସୁରଭି ଆଉ ଅଜସ୍ର ଫୁଲର ସମାରୋହ। କକ୍ଷଟିରେ କାନ୍ଥ ପରିବର୍ତ୍ତେ ରହିଛି ମୁକୁର। ଯେଉଁଆଡ଼କୁ ଚାହିଁଲେ ସେଇ ମୁକୁରରେ ଫୁଟିଉଠିବ ଫୁଲ ଆଉ ନିଜର ପ୍ରତିବିମ୍ବ। ଏକ ଶରୀରର ଅନେକ ପ୍ରତିବିମ୍ବ।

ସୁପ୍ରବାସା ରାଜକୁମାରଙ୍କୁ ପାଛୋଟି ଆଣିଲା ସେଇ କକ୍ଷର ଦ୍ୱାର ପର୍ଯ୍ୟନ୍ତ। ତା'ପରେ ସମ୍ଭ୍ରମ ସହକାରେ କହିଲା, "ମହାରାଣୀ ଆପଣଙ୍କ ପାଇଁ ଅପେକ୍ଷା କରିଛନ୍ତି।"

ମହାରାଣୀ ଡାକିଛନ୍ତି ଶୁଣିବା ମାତ୍ରେ ବିଷଣ୍ଣ ବୋଧ କରିଥିଲେ ରାଜକୁମାର। ଅତୀତର ଦୁଇଟି ଘଟଣାର ସ୍ମୃତି ତାଙ୍କୁ ଅତ୍ୟନ୍ତ ପୀଡ଼ା ଦିଏ। ବସ୍ତୁତଃ ସେ କେବଳ ତଥାଗତଙ୍କ ନିକଟରେ ପ୍ରାର୍ଥନା କରୁଥିଲେ ଯେମିତି ମହାରାଣୀଙ୍କ ମନରେ ମନରେ ଶାନ୍ତି ଆସେ, ହୃଦୟ ପବିତ୍ର ହୁଏ। ଅନେକଥର ମନେ ହୋଇଛି, ଅନ୍ତତଃ ଉପଗୁପ୍ତଙ୍କ ନିକଟରେ ବିଷୟଟି ପ୍ରକାଶ କରିବା ଉଚିତ। କିନ୍ତୁ କାହାରି ବିରୁଦ୍ଧରେ ଅଭିଯୋଗ ଜଣେଇବା ତାଙ୍କ ରୁଚିବିରୁଦ୍ଧ। ଆଜି ଆଦେଶ ପାଇବା ପରେ ମନେ ହୋଇଥିଲା ଏଠିକି ଆସିବାଟା ସଙ୍ଗତ ହେବ କି ନାହିଁ! କିନ୍ତୁ ପର ମୁହୂର୍ତ୍ତରେ ସେ ଚିନ୍ତାକୁ ମନରୁ ବାହାର କରି ଦେଇଥିଲେ ସେ। ମହାରାଣୀ ବର୍ତ୍ତମାନ ସାମ୍ରାଜ୍ୟର ସର୍ବମୟୀ କର୍ତ୍ତ୍ରୀ। ତାଙ୍କ ଆଦେଶ ଅମାନ୍ୟ କରିବା ଅର୍ଥ ବିଦ୍ରୋହ କରିବା। ତେଣୁ ତାଙ୍କୁ ଏଠି ଆସିବାକୁ ପଡ଼ିଲା।

କକ୍ଷ ମଧ୍ୟକୁ ପ୍ରବେଶ କରିବା ମାତ୍ରେ ରାଜକୁମାରଙ୍କର ମନେହେଲା, ଯେମିତି ଅଚିହ୍ନା କୌଣସି ସୁରଲୋକରେ ସେ ପ୍ରବେଶ କରିଛନ୍ତି। ଏଇ ସ୍ୱପ୍ନାଲୋକ, ଏଇ ମିଳିତ ସୁରଭି ଏବଂ ମୁକୁରରେ ନିଜ ପ୍ରତିଫଳନ..ଏଭଳି ପରିବେଶ ମଧ୍ୟରେ ମନେ ହେଲା ସ୍ୱୟଂ ଦେବୀ ଯେମିତି ତାଙ୍କ ସମ୍ମୁଖରେ ଆସୀନା!

ତିଷ୍ୟା ତାଙ୍କ ଡାହାଣ ହାତଟି ଆଳସ୍ୟଭରେ ଶୂନ୍ୟକୁ ଉତ୍ତୋଳିତ କରିବା ମାତ୍ରେ ମୁକୁରର ତିଷ୍ୟାମାନେ ହାତ ଟେକିଲେ। "ଆସ ରାଜକୁମାର। ମୁଁ ତୁମ ଅପେକ୍ଷାରେ ବସି ରହିଛି।"

କଥାଟା କହିସାରି ଖୁବ୍ ଆରାମ ବୋଧ କଲେ ତିଷ୍ୟା। ଏଇଭଳି ଯଦି ସବୁବେଳେ ମନକଥା କହି ହେଉଥାନ୍ତା! ସେ ଦେଖିଲେ ରାଜକୁମାର ଉଦ୍‌ଭ୍ରାନ୍ତ ଭଳି ତାଙ୍କୁ ଦେଖୁଛନ୍ତି। ଚକିତରେ ତାଙ୍କ ସ୍ମୃତି ଟାଣି ଆଣିଲା ତିରିଶବର୍ଷ ତଳର ସେଇ ତରୁଣଙ୍କୁ। ଅବିକଳ, ଅବିକଳ। ତିଷ୍ୟାଙ୍କ ହୃଦୟାଭ୍ୟନ୍ତରରେ ଭୂମିକମ୍ପ ଆରମ୍ଭ ହେଲା।

—"ଆଦେଶ କରନ୍ତୁ।"

—"ଆଃ, ମୋ ସହିତ ତୁମେ ସର୍ବଦା ଏଇ ଭାଷାରେ କାହିଁକି କଥା କୁହ? ବସ, ମୋ ପାଖର ଆସି ବସ। କେମିତି ଲାଗୁଛି ଏଇ କକ୍ଷଟି?" ତିଷ୍ୟା ହସିଲେ।

—"ଚମତ୍କାର। ତେବେ ଏଭଳି ବିଳାସରେ ମୁଁ ଠିକ୍ ଅଭ୍ୟସ୍ତ ନୁହେଁ।"

—"ବିଳାସ! ହୃଦୟକୁ ଆନନ୍ଦ ଦାନ କଣ ଅପରାଧ?"

—"ଆନନ୍ଦ ମଣିଷ ନିଜ ରୁଚି ଅନୁସାରେ ପାଇଥାଏ, ମହାରାଣୀ! ଯିଏ ବ୍ୟସନରେ ଆସକ୍ତ ସେ କେମିତି ବୁଝିବ ତଥାଗତଙ୍କ ନାମ ଉଚ୍ଚାରଣରେ କି ଆନନ୍ଦ!"

—"ତୁମେ ମୋ ସହିତ କେବଳ ତର୍କ କର କୁମାର! ମୋତେ ମିଠା କଥା କହିବାକୁ କଣ ତୁମର ଆଦୌ ଇଚ୍ଛା ହୁଏନାହିଁ? ମୋ ମୁହଁଆଡ଼କୁ ଥରେ ଚାହଁ।"

—"ମହାରାଣୀ ବର୍ତ୍ତମାନ ସୁଦ୍ଧା ତାଙ୍କ ଆଦେଶ ଜଣାଇ ନାହାଁନ୍ତି।"

ତିଷ୍ୟାଙ୍କ ଛାତି ଭିତରୁ ଝଲକାଏ ଗରମ ପବନ ବାହାରି ଆସିଲା। ସେ ଅଧର ଦଂଶନ କଲେ। ତା'ପରେ ଶକ୍ତ ସ୍ୱରରେ କହିଲେ, "ବର୍ତ୍ତମାନ ଏଇ ରାଜ୍ୟରେ ମୋ କଥା ହିଁ ଆଇନ। କାହାରି କ୍ଷମତା ନାହିଁ, ମୋତେ ଅମାନ୍ୟ କରିବା। ମୁଁ ତୁମକୁ କାମନା କରିଛି ଏତେକାଳ। ମୁଁ ଚାହେଁ, ତୁମେ ମୋତେ ଗ୍ରହଣ କର।"

—"ଛି।" ଦୁଇକର୍ଣ୍ଣ ଆବୃତ କଲେ ରାଜକୁମାର। "କଦାପି ଏଇ କଥା ଉଚ୍ଚାରଣ କରିବେ ନାହିଁ ମହାରାଣୀ! ଜନନୀ ମୁଖରୁ ଏମିତି ବାକ୍ୟ ଶୁଣିବା ବି ମହାପାପ।"

ଆସନରୁ ଉଠି ପଡ଼ି ଚିତ୍କାର କରି ଉଠିଲେ ତିଷ୍ୟା, "ନା। ମୁଁ ପାପପୁଣ୍ୟ ମାନେନା। ମୁଁ ଜାଣେ ତୁମେ ମୋ ଛାତିରେ ମୁଣ୍ଡ ନ ରଖିଲେ ସମସ୍ତ ଈଶ୍ୱର ମିଥ୍ୟା ହୋଇଯିବେ। କାରଣ ତୁମେ ମୋର ଏକମାତ୍ର ଆରାଧ୍ୟ।"

ରାଜକୁମାର ଦେଖିଲେ ମହାରାଣୀ ତାଙ୍କ ଆଡ଼କୁ ଆଗେଇ ଆସୁଛନ୍ତି। ସେ ତ୍ରସ୍ତ ପଦକ୍ଷେପରେ ଘୁଞ୍ଚିଗଲେ। ତା'ପରେ କାତର ଗଳାରେ କହିଲେ, "ଜନନୀ, ମୋତେ କାହିଁକି ଅଯଥା କ୍ଳେଶ ଦେଉଛନ୍ତି? ମୁଁ ତଥାଗତଙ୍କ ଆଶ୍ରିତ, ଜଣେ ସାଧାରଣ ସେବକ। ପ୍ରାର୍ଥନା କରୁଛି, ଆପଣ ମୋତେ ମୁକ୍ତି ଦିଅନ୍ତୁ।"

"ପ୍ରାର୍ଥନା କରୁଛ?" ତିଷ୍ୟା ବକ୍ରସ୍ୱରରେ କହିଲେ, "ତୁମେ ମୋ ନିକଟରେ ପ୍ରାର୍ଥନା କରୁଛ? କିନ୍ତୁ ତୁମେ ତ କେବଳ ତଥାଗତଙ୍କ ନିକଟରେ ପ୍ରାର୍ଥନା କର ବୋଲି ଜାଣିଥିଲି।"

ରାଜକୁମାର ଆଖି ବନ୍ଦ କଲେ। ଏ କଥାର କୌଣସି ଉତ୍ତର ଦେଲେ ନାହିଁ।

ତିଷ୍ୟା ହସିଲେ, ''କୁମାର! ଚାହିଁ ଦେଖ ମୋତେ। ମୋ ଭଳି ସୁନ୍ଦରୀ ଏ ସାମ୍ରାଜ୍ୟରେ ନାହିଁ। କୌଣସି ନାରୀ ଦେହରେ ଏମିତି ଚୁମ୍ବକ ପାଇବ ନାହିଁ। ପୃଥିବୀରେ ମୋ ଭଳି ହୃଦୟ ଗୋଟିଏ ହେଲେ ଖୋଜି ପାଇବ ନାହିଁ, ଯାହା ତୁମ ପ୍ରତି ପ୍ରେମରେ ପୂର୍ଣ୍ଣ ହୋଇଅଛି। କୁମାର, ଲଜ୍ଜା କର ନାହିଁ। ଆଜି ଏଇ ରାତିରେ ତୁମେ ମୋତେ ଗ୍ରହଣ କରି ତୃପ୍ତ ହୁଅ। ତୃପ୍ତି ଦିଅ। ତା'ପରେ ,ତିନିଦିନ ମଧ୍ୟରେ ସମ୍ରାଟଙ୍କ ମୃତ୍ୟୁ ସମ୍ବାଦ ଏଠି ପହଞ୍ଚିବ। ସେ କ୍ଷେତ୍ରରେ ଆଉ କୌଣସି ବାଧା ରହିବ ନାହିଁ। ତୁମେ ହେବ ସମ୍ରାଟ, ମୁଁ ସାମ୍ରାଜ୍ଞୀ।''

—''ସମ୍ରାଟଙ୍କ ମୃତ୍ୟୁ ସମ୍ବାଦ?'' ଚମକି ଉଠିଲେ ରାଜକୁମାର।

—''ହଁ। ତୁମେ ସମ୍ମତ ହେଲାମାତ୍ରେ ମୁଁ ନିଯୁକ୍ତ କରିଥିବା ଧର୍ମଯାତ୍ରାର ସଙ୍ଗୀ ଗୋପନ ଘାତକ ତା' କାର୍ଯ୍ୟ ଶେଷ କରିବ। କେହି କିଛି ଜାଣି ପାରିବେ ନାହିଁ।''

—''ଆପଣ ପିତାଙ୍କୁ ହତ୍ୟା କରିବେ?'' ବିସ୍ମୟ ବଢୁଥିଲା ରାଜକୁମାରଙ୍କର!

—''କେବଳ ତୁମକୁ ପାଇବି ବୋଲି। ଆମେ ବିବାହିତ ଏବଂ ସୁଖୀ ହେବୁ ବୋଲି।''

ରାଜକୁମାରଙ୍କ ମସ୍ତକ ଅବନତ ହେଲା, ''ମୁଁ କିଛି ବୁଝିପାରୁନାହିଁ। ଯେଉଁ ଅସୁସ୍ଥ ମଣିଷଟିକୁ ଆପଣ ନିଶ୍ଚିତ ମୃତ୍ୟୁ ମୁଖରୁ କେବଳ ବଞ୍ଚେଇ ନାହାଁନ୍ତି, ପ୍ରାଣପାତ କରି ଧୀରେ ଧୀରେ ସୁସ୍ଥ କରି ତୋଳିଛନ୍ତି, ତାଙ୍କୁ ଇ ହତ୍ୟା କରିବା କଥା ଚିନ୍ତା କରୁଛନ୍ତି? ସେତେବେଳେ କିନ୍ତୁ ପିତାଙ୍କର କିଛି ଘଟି ଯାଇଥିଲେ କେହି ତ ଆପଣଙ୍କୁ ଦାୟୀ କରି ପାରି ନ ଥାନ୍ତେ।''

ତିଷ୍ୟା କହିଲେ, ''ଏଇ ସାମାନ୍ୟ ବିଷୟଟି ତୁମେ ବୁଝି ପାରିଲ ନାହିଁ କୁମାର! ସମ୍ରାଟ ଯେତେବେଳେ ମୃତ୍ୟୁମୁଖରେ, ସେତେବେଳେ ମୁଁ ଥିଲି ତାଙ୍କ ସେବିକା। ସେତେବେଳେ ସେ ଚାଲି ଯାଇଥିଲେ ଏଇ ସିଂହାସନ ନେଇ ଗଣ୍ଡଗୋଳ ଆରମ୍ଭ ହୋଇଯାଇଥା'ନ୍ତା। ସେଥିରେ ମୋର ତ କିଛି ଲାଭ ହୋଇ ନ ଥାନ୍ତା।''

ରାଜକୁମାର କହିଲେ, ''ବର୍ତ୍ତମାନ ଆପଣଙ୍କର—''

—''ଲାଭ ହୋଇଛି। ଏଇ ବିଶାଳ ସାମ୍ରାଜ୍ୟ ବର୍ତ୍ତମାନ ମୋ ଅଧୀନସ୍ଥ।''

—''ନିଶ୍ଚୟ! କିନ୍ତୁ ତିରିଶ ଦିନରୁ ଦୁଇଦିନ ଇତିମଧ୍ୟରେ ଗତ ହୋଇଛି। ଆପଣ ନିର୍ଦ୍ଦିଷ୍ଟ ସମୟ ପରେ ଏ କ୍ଷମତାରେ ରହିବେ ନାହିଁ।''

—''ଜାଣେ। ନିର୍ଦ୍ଦିଷ୍ଟ ସମୟ ପରେ ଆମେ କେହି କ୍ଷମତାରେ ରହୁନା। ତୁମେ ପିତା ମଧ୍ୟ ରହିବେ ନାହିଁ। ସେ ସମୟଟି ନିର୍ଦ୍ଦିଷ୍ଟ କରନ୍ତି ବିଧାତା। ଆମେ ତା' ମଧ୍ୟରେ ହିଁ ଯାହା କରିବା କଥା କରିନେଉ। ତେଣୁ ମୋତେ ଏଇ କେଇଦିନ ମଧ୍ୟରେ ହିଁ ମୋର କାମ୍ୟ ହାସଲ କରି ନେବାକୁ ପଡ଼ିବ। ମହାରାଣୀ ଭାବରେ ଯଦି ମୁଁ ତୁମକୁ ନିର୍ଦ୍ଦେଶ ଦିଏ, ଏଇ ମୁହୂର୍ତ୍ତରେ ମୋତେ ଗ୍ରହଣ କରି ପତ୍ନୀର ମର୍ଯ୍ୟାଦା ଦିଅ—ତେବେ ତୁମେ କଣ ତା' ଦେବାକୁ ବାଧ୍ୟ ନୁହଁ?''

—"ମାତା, ଆପଣ କେବଳ ମୋତେ ଆଘାତ କରୁନାହାଁନ୍ତି, ନିଜକୁ ମଧ୍ୟ ଅପବିତ୍ର କରୁଛନ୍ତି।"

—"ଅପବିତ୍ର? ମୁଁ? ହଁ, କେହି ଯଦି ମୋତେ ଅପବିତ୍ର କରିଥାଏ, ତେବେ ତା ହୋଇଥିଲା ତିରିଶବର୍ଷ ପୂର୍ବେ। ନା, ହୁଏତ ଆହୁରି କିଛି ସମୟ ବଢ଼ିଛି। ସେଇ ଅପବିତ୍ର ଦେହଟିକୁ, ହୃଦୟଟିକୁ ପବିତ୍ର କରିପାର ତୁମେ।"

—"ଜନନୀ, ଆପଣ ଉନ୍ମାଦିନୀ ଭଳି ଆଚରଣ କରୁଛନ୍ତି।"

—"ଉନ୍ମାଦିନୀ! କୁମାର! ତିରିଶ ବର୍ଷ ପୂର୍ବେ ଯେଉଁ ତରୁଣଟିକୁ ମୁଁ ଶେଷଥର ଦେଖିଥିଲି ସେ ତ ମୋ ପାଖରେ ବୟସ୍କ ହୋଇନାହିଁ। ମୋ ଶରୀର, ମନ ପୂର୍ଣ୍ଣତା ପାଇଛି; କିନ୍ତୁ ସେ ମୋ ନିକଟରେ ଏକ ଚେହେରାରେ ରହି ଯାଇଛି। ସେଇ ତରୁଣ ଯେ ଅବିକଳ ତୁମେ! ଏ ଯଦି ଉନ୍ମଦିନୀ ଆଚରଣ ହୁଏ, ତେବେ ପୃଥିବୀର ଯେଉଁ ମଣିଷ ପ୍ରକୃତ ପ୍ରେମର ସନ୍ଧାନ ପାଇବ, ସେ ହିଁ ଉନ୍ମାଦ ହେବ। ସମାଜସଂସ୍କାର, ସମୟର ବନ୍ଧନ ଯା'ର ରହେ ନାହିଁ, ସେଇ ତ ଉନ୍ମାଦିନୀ। ମୋର ବିନ୍ଦୁମାତ୍ର ଲଜ୍ଜା ନାହିଁ ତୁମ ପ୍ରେମରେ ଉନ୍ମାଦିନୀ ହେବା ପାଇଁ। ଆସ କୁମାର, ମୋ ପାଖକୁ ଆସ। ଏଇ ସଯତ୍ନ-ରକ୍ଷିତ ବକ୍ଷରେ ତୁମ ମୁଣ୍ଡ ରଖି ଥରେ ନିଃଶ୍ୱାସ ନିଅ। ମୋର ଦୀର୍ଘକାଳର ନିର୍ଜଳା ମରୁଭୂମିରେ ବର୍ଷଣ ଆରମ୍ଭ ହେଉ।"

ରାଜକୁମାରଙ୍କ ଦୁଇ ହାତ ପ୍ରସାରିତ। ଯୁକ୍ତକର। କହିଲେ, "ମାତା, ଏସବୁ ବାକ୍ୟ ଆଉ ଶ୍ରବଣ କରିବା ମୋ ପକ୍ଷରେ ସମ୍ଭବ ନୁହେଁ। ମୁଁ ତଥାଗତଙ୍କ ଆଶ୍ରିତ। ଏଇ ରାଜ୍ୟ, ସିଂହାସନ ବା କୌଣସି ନାରୀ ମୋ ପଯରେ ବିନ୍ଦୁମାତ୍ର ଲୋଭନୀୟ ନୁହେଁ। ତା'ଛଡ଼ା ମାତା କେବଳ ପିତାଙ୍କର ଲୀଳାସଙ୍ଗିନୀ ନୁହେଁ, ପୁତ୍ରର ଈଶ୍ୱରୀ। ଆପଣଙ୍କ ହୃଦୟତାପ ଦୂର କରିପାରନ୍ତି ପିତା। ସନ୍ତାନ ଭାବରେ ମୁଁ ତଥାଗତଙ୍କ ନିକଟରେ ପ୍ରାର୍ଥନା କରିପାରେ, ଆପଣଙ୍କ ହୃଦୟକୁ ଯେମିତି ସେ ଶାନ୍ତ କରନ୍ତି।"

କଥାଗୁଡ଼ିକ କହି ରାଜକୁମାର ପ୍ରସ୍ଥାନ ପାଇଁ ପାଦ ବଢ଼େଇଲେ। ସେ ଯେତେବେଳେ ଦ୍ୱାର ନିକଟରେ ପହଞ୍ଚିଛନ୍ତି, ସେତେବେଳେ ତିଷ୍ୟା ସର୍ପିଣୀ ଭଳି ନିଃଶ୍ୱାସ ପକେଇ ଡାକିଲେ, "ଠିଆ ହୁଅ।"

ରାଜକୁମାର ସ୍ଥିର ହେଲେ, କିନ୍ତୁ ପଛକୁ ଫେରିଲେ ନାହିଁ। ତିଷ୍ୟା ଯେମିତି ଫଣା ଉତ୍ତୋଳନ କଲେ, "ତୁମେ ଚାଲି ଯାଉଛ?"

"ହଁ।" ରାଜକୁମାର ବାତାୟନ ପଥକୁ ଚାହିଁଲେ, "ଏବଂ ଆପଣଙ୍କ ନିକଟରେ ମୋର ବିନୀତ ଅନୁରୋଧ ଆଉ ମୋତେ ଏମିତି ଅପ୍ରୟୋଜନରେ ଡାକିବେ ନାହିଁ। ତଥାଗତ ଆପଣଙ୍କ ମଙ୍ଗଳ କରନ୍ତୁ।"

—"ଚମତ୍କାର! ଜଣେ କହିଗଲେ, କଲ୍ୟାଣ ହେଉ। ତୁମେ କହୁଛ ମଙ୍ଗଳ କଥା।

ମୋର ଏସବୁର କୌଣସି ପ୍ରୟୋଜନ ନାହିଁ। କୁମାର, ତୁମେ ଚାଲିଯାଅ ନାହିଁ। ତୁମେ କଣ ଜାଣନା, ଉପେକ୍ଷିତା ନାରୀ ଆହତ ବାଘୁଣୀଠାରୁ ମଧ୍ୟ ହିଂସ୍ର ହୁଏ ! ତୁମେ କଣ ଜାଣନା ପ୍ରତିହିଂସା ଯେତେବେଳେ କୌଣସି ରମଣୀକୁ ଅଧିକାର କରେ, ସେତେବେଳେ ସେ ଉତ୍ତେଜିତ ସର୍ପିଣୀଠୁଁ ମଧ୍ୟ ନିଷ୍ଠୁରା ହୁଏ ? ମୋର ଭୟ ହେଉଛି କୁମାର, ମୁଁ ହୁଏତ ନିଜକୁ ସ୍ଥିର ରଖିପାରିବି ନାହିଁ। ତୁମ ପାଦ ଧରୁଛି, ତୁମେ ଯାଅନାହିଁ।'' କାନ୍ଦି ପକେଇଲେ ତିଷ୍ୟା। ତାଙ୍କ ସମସ୍ତ ଶରୀରରେ କମ୍ପନ। ଦୃଷ୍ଟି ଝାପ୍‌ସା ହୋଇ ଆସିଲା।

ରାଜକୁମାର ମନେମନେ ତ୍ରିଶରଣ ସ୍ମରଣ କଲେ। ତାଙ୍କ ଅଧରରୁ ବାହାରିଆସିଲା ସେଇ ଅମୃତବାକ୍ୟ, ''ବୁଦ୍ଧଂ ଶରଣଂ ଗଚ୍ଛାମି। ଧମ୍ମଂ ଶରଣଂ ଗଚ୍ଛାମି। ସଂଘ ଶରଣଂ ଗଚ୍ଛାମି।'' ଧୀର ପଦରେ ସାମ୍ରାଜ୍ଞୀଙ୍କ ପ୍ରାସାଦରୁ ବାହାରି ଆସିଲେ ସେ। ତାଙ୍କର ମନେ ହେଉଥିଲା ଏଥର ଅବଗାହନ ଆବଶ୍ୟକ।

ଆଜି ପାଟଳିପୁତ୍ରର ନାଗରିକମାନେ ସାମ୍ରାଜ୍ଞୀ କର୍ତ୍ତୃକ ଆମନ୍ତ୍ରିତ। ସାମ୍ରାଜ୍ଞୀ ସେମାନଙ୍କ ସହ ପରିଚିତା ହେବାକୁ ଚାହାଁନ୍ତି। ବିଶେଷତଃ ବାଳିକା, କିଶୋରୀ, ତରୁଣୀ ଏବଂ ବୃଦ୍ଧାମାନଙ୍କ ସହିତ। ସମ୍ବାଦ ଶ୍ରବଣ ମାତ୍ରେ ଦଳ ଦଳ ଲୋକ ଯେଉଁମାନଙ୍କ ମଧ୍ୟରେ ମହିଳାମାନଙ୍କ ସଂଖ୍ୟା ହିଁ ଅଧିକ, ଉପସ୍ଥିତ ହୋଇଛନ୍ତି ଉଦ୍ୟାନରେ। ସେମାନଙ୍କ ଆଗ୍ରହର କାରଣ ରହିଛି। ଏଇ ପ୍ରଥମଥର କୌଣସି ରମଣୀ ଏତେବଡ଼ ସାମ୍ରାଜ୍ୟର ଅଧୀଶ୍ୱରୀ ହୋଇଛନ୍ତି। ମହାରାଣୀଙ୍କ ବିରୁଦ୍ଧରେ ଯେତେ ଚାପା ଅସନ୍ତୋଷ ସୃଷ୍ଟି ହୋଇଥାଉ ନା କାହିଁକି, ନାରୀ ଭାବରେ ସେମାନେ ମନେମନେ ବିଶେଷ ଗର୍ବ ଅନୁଭବ କରିଛନ୍ତି। ପୁରୁଷମାନେ ମଧ୍ୟ ଆସିଛନ୍ତି। ସେମାନଙ୍କର ଆସିବାର କାରଣ କୌତୂହଳ। ମହାରାଣୀ ସୁନ୍ଦରୀ, ଅପାର ଯୌବନବତୀ। କିନ୍ତୁ ସେ ଶାସିକା ଭାବରେ କେତେଦୂର ଉପଯୁକ୍ତ, ତାହାହିଁ ଦେଖିବାର ଆଗ୍ରହ ଥିଲା ସେମାନଙ୍କର।

ସେତେବେଳେ ଅପରାହ୍ନ। ସୂର୍ଯ୍ୟର ପ୍ରଖରତା ହ୍ରାସ ପାଇଛି, କିନ୍ତୁ ଅତୀବ ମାୟାବୀ ଆଲୋକ ବିଞ୍ଚେଇ ହୋଇ ରହିଛି ଉଦ୍ୟାନରେ। ସୁନ୍ଦର ମଞ୍ଚ ଉପରେ ସାମ୍ରାଜ୍ଞୀ ଯେଉଁଠାରେ ଆସୀନା, ସେଠାରେ ସେ ଆଲୁଅ ଯେମିତି ଆହୁରି ମୋହିନୀ ମାୟା ସୃଷ୍ଟି କରୁଥିଲା। ଶାନ୍ତ ଜନତା ସମ୍ମୁଖରେ ତିଷ୍ୟା ଉଠି ଠିଆହେଲେ, ''ହେ ମୋ ପ୍ରିୟ ନାଗରିକବୃନ୍ଦ, ମୋର ଭଗିନୀଗଣ, ସମ୍ରାଟଙ୍କର ମୁଁ ଯେଉଁ ସାମାନ୍ୟ ସେବା

କରିଥିଲି ତା' ବିନିମୟରେ ସେ ମୋତେ ତିରିଶ ଦିନ ପାଇଁ ଏ ବିରାଟ ଗୁରୁଭାର ଅର୍ପଣ କରିଛନ୍ତି। ସେ ମହତ୍; କିନ୍ତୁ ମୁଁ ତ ସାମାନ୍ୟ ନାରୀ।''

ସଙ୍ଗେ ସଙ୍ଗେ ଉପସ୍ଥିତ ଜନତା ନିମ୍ନ ସ୍ୱରରେ ସପ୍ରଶଂସ ବାକ୍ୟ ଉଚ୍ଚାରଣ କଲେ। ସାମ୍ରାଜ୍ଞୀ ସେମାନେ ଶାନ୍ତ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେ, ''ମୁଁ ଚାହେଁ ଜନସାଧାରଣଙ୍କର ମଙ୍ଗଳ ହେଉ। କିନ୍ତୁ ମୋ ବିରୁଦ୍ଧରେ ଅପପ୍ରଚାର କରାହେଉଛି, ମୁଁ ବୌଦ୍ଧମାନଙ୍କ ଧର୍ମବିଶ୍ୱାସରେ ଆଘାତ କରୁଛି। ମୁଁ ରାଜକର ଆଦାୟ ନାମରେ ଶୋଷଣ କରୁଛି। ଲକ୍ଷ୍ୟ କରିବେ, ଏସବୁ ପ୍ରଚାର ଯେଉଁମାନେ କରୁଛନ୍ତି ସେମାନେ ପୁରୁଷ, ଯେଉଁ ପୁରୁଷମାନେ ଆମକୁ ଚିରକାଳ ଦାସୀ କରି ରଖିଛନ୍ତି; ଯେଉଁ ପୁରୁଷମାନେ ଆମକୁ ମନେ କରନ୍ତି ରମଣୀ ହେଲା ସେମାନଙ୍କ ଦେହର କ୍ଷୁଧା ମେଣ୍ଟାଇବାର ଖେଳଣା ମାତ୍ର। ହେ ମୋର ଭଗିନୀଗଣ, ଆପଣମାନେ ସ୍ମରଣକରନ୍ତୁ, ଆପଣଙ୍କ ପରିବାରର ପୁରୁଷମାନେ ଯେଉଁ ସ୍ୱାଧୀନତା ଭୋଗ କରନ୍ତି ତାର ସାମାନ୍ୟ ଅଂଶ ଆପଣଙ୍କୁ ସେମାନେ ଦିଅନ୍ତି କି ନାହିଁ।''

''ଦୁଃଖର କଥା, ପରିତାପର କଥା, ସ୍ୱୟଂ ତଥାଗତ ଆମକୁ ବିଶ୍ୱାସ କରିନାହାଁନ୍ତି। ଆମକୁ ମର୍ଯ୍ୟାଦା ଦେଇନାହାଁନ୍ତି। ଗୃହପତିମାନଙ୍କ ପ୍ରତି ତାଙ୍କ ଉପଦେଶମାଳାରେ ସେ କହିଛନ୍ତି, 'ଦାନ କର, ଏପରିକି ପ୍ରୟୋଜନରେ ନିଜ ପତ୍ନୀକୁ ମଧ୍ୟ।' ତା' ଅର୍ଥ, ପତ୍ନୀ ଏକ ସାମଗ୍ରୀ। ଆପଣମାନେ ନିଶ୍ଚୟ ସେ କାହାଣୀ ଜାଣନ୍ତି। ତଥାଗତ ଯେତେବେଳେ କପିଳାବସ୍ତୁ ନଗରର ନିଗ୍ରୋଧ ଆଶ୍ରମରେ ବିଶ୍ରାମ କରୁଥିଲେ, ସେତେବେଳେ ତାଙ୍କ ବିମାତା ମହାପ୍ରଜାବତୀ ଗୌତମୀ ମହିଳାମାନଙ୍କୁ ତାଙ୍କ ସଂଘରେ ପ୍ରବେଶାଧିକାର ଦେବାକୁ ଆବେଦନ କରିଥିଲେ। ତଥାଗତ ସେ ଆବେଦନ ପ୍ରତି କର୍ଣ୍ଣପାତ କରିନଥିଲେ। ସେ କହିଥିଲେ, 'ନାରୀମାନଙ୍କୁ ସଂଘରେ ସ୍ଥାନ ଦେବା ସମୀଚୀନ ହେବ ନାହିଁ। ସେଥିରେ ସଦ୍‌ଧର୍ମର ଅନ୍ତରାୟ ହେବ, କଳୁଷିତ ହେବ ସଂଘ।' ସେ ଏକଥା ମଧ୍ୟ କହିଥିଲେ, 'ନାରୀବିହୀନ ସଂଘ ଏକ ହଜାର ବର୍ଷ ସୁସଂଗଠିତ ରହିବ କିନ୍ତୁ ସେମାନଙ୍କ ଅନୁପ୍ରବେଶରେ ସଂଘର ଆୟୁଷ୍କାଳ ହେବ ପାଞ୍ଚଶହ ବର୍ଷ।' ଏହି ବାକ୍ୟ କଣ ନାରୀଜାତି ପ୍ରତି ଚୂଡ଼ାନ୍ତ ଅପମାନ ନୁହେଁ? ଭଗବାନ ଯଦି ଏଭଳି ଆଚରଣ କରନ୍ତି, ତେବେ ସାଧାରଣ ମଣିଷ ବା ଆମକୁ ସମ୍ମାନ ଦେବେ କାହିଁକି? ଅବଶେଷରେ ଆନନ୍ଦଙ୍କ ଅନୁରୋଧରେ ଏବଂ ମୁଣ୍ଡିତ ମସ୍ତକ ପ୍ରଜାବତୀ ଗୌତମୀଙ୍କୁ ଦେଖି ବୈଶାଳୀ ନଗରର ମହାବନ-କୂନାଗାର ଶାଳାରେ ତଥାଗତ ଆମକୁ ସଂଘରେ ପ୍ରବେଶର ଅନୁମତି ଦେଲେ। କିନ୍ତୁ କେଉଁ କେଉଁ ସର୍ତ୍ତରେ ସେ ଅନୁମତି ଦିଆହୋଇଥିଲା? ଶହେ ବର୍ଷ ଉପସମ୍ପଦାପ୍ରାପ୍ତ ଭିକ୍ଷୁଣୀଙ୍କୁ ମଧ୍ୟ ମାତ୍ର ଦିନକର ଭିକ୍ଷୁଙ୍କୁ ସମ୍ମାନ ଦେଖାଇବାକୁ ପଡ଼ିବ। ଯେଉଁଠାରେ କୌଣସି ଭିକ୍ଷୁ ନାହାଁନ୍ତି, ସେଠାରେ ଭିକ୍ଷୁଣୀ ବର୍ଷାବାସ କରି ପାରିବେ ନାହିଁ। ବର୍ଷା ପରେ ପ୍ରବାରଣା ପାଳନ ବିଷୟରେ ଭିକ୍ଷୁସଂଘ ନିକଟରେ

ଭିକ୍ଷୁଣୀଙ୍କୁ ପ୍ରକାଶ କରିବାକୁ ପଡ଼ିବ। ଭିକ୍ଷୁଣୀ କଦାପି କୌଣସି ଭିକ୍ଷୁର ନିନ୍ଦା କରି ପାରିବେ ନାହିଁ। ସବୁଠାରୁ ଆଶ୍ଚର୍ଯ୍ୟର କଥା, ଭିକ୍ଷୁମାନେ ଭିକ୍ଷୁଣୀମାନଙ୍କୁ ଉପଦେଶ ଦେଇ ପାରିବେ; କିନ୍ତୁ କେବେହେଲେ ଭିକ୍ଷୁଣୀମାନଙ୍କର ସେ ଅଧିକାର ରହିବ ନାହିଁ। ପୁରୁଷ ଶାସିତ ସମାଜର ପ୍ରକୃତ ଚିତ୍ର ଏଇ ଉପଦେଶଗୁଡ଼ିକରୁ ସ୍ପଷ୍ଟ।''

''ମୁଁ ତଥାଗତଙ୍କ ଧର୍ମ ଏବଂ ମତକୁ ଶ୍ରଦ୍ଧା କରେ। ବ୍ରାହ୍ମଣମାନେ ମଣିଷକୁ ମଣିଷ ବୋଲି ମନେ କରୁନଥିଲେ। ତଥାଗତ ଶୂଦ୍ରକୁ ମଧ୍ୟ ମଣିଷର ସମ୍ମାନ ଦେଇଛନ୍ତି। କିନ୍ତୁ ନାରୀକୁ ଯଥାଯୋଗ୍ୟ ସମ୍ମାନ ଦେଇ ନାହାଁନ୍ତି। ସେମାନଙ୍କୁ ଶିକ୍ଷିତା କରିବାର ଚେଷ୍ଟା କରିନାହାଁନ୍ତି। ମୁଁ ପୁରୁଷମାନଙ୍କ ପ୍ରତି ବିରୂପ ନୁହେଁ, କିନ୍ତୁ ସେମାନଙ୍କୁ ସ୍ମରଣ କରେଇ ଦେବାକୁ ଚାହେଁ, ନାରୀ କେବଳ ଭୋଗ୍ୟବସ୍ତୁ ନୁହେଁ, ସମ୍ମାନର ମଧ୍ୟ ପାତ୍ରୀ।''

ଏଇ ସମୟରେ ଅଜସ୍ର କରତାଳିରେ ମୁଖର ହେଲା ଉଦ୍ୟାନ। ଜୟଧ୍ୱନି ଉଠିଲା ତିଷ୍ୟାଙ୍କ। ତିଷ୍ୟା ଲକ୍ଷ୍ୟ କଲେ ପୁରୁଷମାନେ ଜଣଜଣ କରି ଉଦ୍ୟାନ ତ୍ୟାଗ କରି ଚାଲିଗଲେ ମଧ୍ୟ ନାରୀମାନେ ଖୁବ୍ ଅନୁପ୍ରାଣିତ। ସେ ପୁଣି କହିବା ଆରମ୍ଭ କଲେ, ''ମୁଁ ଧର୍ମାଧର୍ମ ଜାଣେନା। ମୁଁ ଯୋଗ୍ୟ ଲୋକଙ୍କୁ ଯୋଗ୍ୟ ସ୍ଥାନରେ ଆସୀନ କରିବାକୁ ଚାହେଁ। ପ୍ରୟୋଜନ ହେଲେ ମହିଳାମାନଙ୍କୁ ମଧ୍ୟ ମୁଁ ପ୍ରଶାସନକୁ ଆଣିବାକୁ ଚାହେଁ। ସଂସାର କରିବାକୁ ଗଲେ ଅର୍ଥ ପ୍ରୟୋଜନ। ରାଜ୍ୟ ଶାସନ କରିବାକୁ ଗଲେ ରାଜସ୍ୱ ଆବଶ୍ୟକ। ମୁଁ କାହାରି ରକ୍ତ ଚକ୍ଷୁରେ ଭୀତ ନୁହେଁ। ସାଧାରଣ ଲୋକଙ୍କ ମଙ୍ଗଳ ପାଇଁ ଯାହା କରିବା ପ୍ରୟୋଜନ, ତାହା କରିବାକୁ ମୁଁ କେବେହେଲେ କୁଣ୍ଠିତ ହେବିନାହିଁ।''

ସେଦିନ ରାଜଧାନୀର ଲୋକେ ଯେମିତି ଦୁଇ ଭାଗରେ ବିଭକ୍ତ ହୋଇଗଲେ। ପୁରୁଷମାନେ ଦନ୍ତରେ ଦନ୍ତ ଘର୍ଷଣ କଲେ ଏବଂ ମହିଳାମାନେ ଉଲ୍ଲସିତ ହେଲେ। ଏଇ ପ୍ରଥମ ଥର ସେମାନଙ୍କ କଥା କେହି ମନକୁ ଛୁଇଁଲାଭଳି କରି କହିଲେ। ଗୃହେ ଗୃହେ ବିବାଦ ଆରମ୍ଭ ହେଲା। ତିଷ୍ୟାଙ୍କ ନିକଟରେ ଏ ସମ୍ବାଦ ପହଞ୍ଚିଲା ମାତ୍ରେ ସେ ତୃପ୍ତିର ହସ ହସିଲେ। ସେ ଜାଣିଛନ୍ତି, ଏ ସମ୍ବାଦ ସମ୍ରାଟଙ୍କ ନିକଟରେ ମଧ୍ୟ ପହଞ୍ଚିବ। କିନ୍ତୁ ତିରିଶଦିନ ଅତିକ୍ରାନ୍ତ ନ ହେବା ପର୍ଯ୍ୟନ୍ତ ସେ ବୃଦ୍ଧର କରଣୀୟ କିଛି ନାହିଁ।

ଖଲ୍ଲାତକ ଯୁଦ୍ଧ ପାଇଁ ସବୁପ୍ରକାର ଆୟୋଜନ ପ୍ରାୟ ପ୍ରସ୍ତୁତ କରି ସାରିଛନ୍ତି। ଦୀର୍ଘଦିନର ଆକାଙ୍କ୍ଷା ତାଙ୍କର ପୂର୍ଣ୍ଣ ହେବାକୁ ଯାଉଛି। ସୈନ୍ୟମାନଙ୍କୁ ନେଇ ସେ ଆଦୌ ଚିନ୍ତିତ ନୁହଁନ୍ତି। କାରଣ ସେ ଜାଣନ୍ତି ଯୁଦ୍ଧ ହେଲା ନିଶା ଭଳି। ଥରେ ରକ୍ତପାତ ଆରମ୍ଭ ହେଲେ ସୈନ୍ୟମାନେ ଆଉ ପଛକୁ ଫେରି ଚାହିଁବେ ନାହିଁ। ଗୋଦାବରୀର ଅପର ପ୍ରାନ୍ତ ଅଧିକୃତ ହେଲେ ତାଙ୍କ ପରିକଳ୍ପନା ବାସ୍ତବାୟିତ କରିବେ ସେ। ସମ୍ରାଟଙ୍କ ବିରୁଦ୍ଧରେ ସୈନ୍ୟଚାଳନା କରିବାକୁ ସେତେବେଳେ ପାଦତଳେ ଭୂମି ରହିବ।

ସାମ୍ରାଜ୍ଞୀ ନିର୍ଦ୍ଦେଶ ଦେଇଛନ୍ତି ଖଲ୍ଲାତକ ଯେମିତି ତାଙ୍କ ସହିତ ବୀତଶୋକଙ୍କୁ ନେଇ ଯା'ନ୍ତି। କାରଣ ବୀତଶୋକ ଯେହେତୁ ଶିକାରରେ ପଟୁ ଏବଂ ଏ ଅଞ୍ଚଳଠାରୁ ଗୋଦାବରୀର ଅପର ପାର୍ଶ୍ୱରେ ଶିକାର ମିଳିବାର ସମ୍ଭାବନା ଅଧିକ, ସେତେବେଳେ ସେଠାରେ ହିଁ ଖଲ୍ଲାତକଙ୍କୁ ଅଧିକ ଭଲ ଲାଗିବ। ଆଦେଶଟି ଖଲ୍ଲାତଙ୍କର ଯେମିତି ମନଃପୂତ ହୋଇନାହିଁ,ସେମିତି ବୀତଶୋକଙ୍କୁ ମଧ୍ୟ ଭଲ ଲାଗିନି। ଖଲ୍ଲାତକ ବୀତଶୋକ ଭଳି ଉଚ୍ଚାକାଙ୍କ୍ଷୀଙ୍କୁ ତାଙ୍କ ସାଙ୍ଗରେ ରଖିବାକୁ ଚାହିଁନଥିଲେ। ଯେତେହେଲେ ମଧ୍ୟ ଲୋକଟି ସମ୍ରାଟଙ୍କ ଭ୍ରାତା। କେତେବେଳେ ଯେ ବିଶ୍ୱାସଘାତକତା କରିବ! ତା'ଛଡ଼ା ବୀତଶୋକଙ୍କ ସହିତ ରହିବା ଅର୍ଥ ଗୋଦାବରୀର ଅପରପାର୍ଶ୍ୱର ଭୂଖଣ୍ଡରେ ସମ୍ରାଟଙ୍କ ପ୍ରତିନିଧିର ପଦକ୍ଷେପ ହେବା। କିନ୍ତୁ ମହାରାଣୀଙ୍କ ଆଦେଶ ସେ କେଉଁଭଳି ଭାବେ ପ୍ରତ୍ୟାଖ୍ୟାନ କରିବେ ତାହା ଭାବି ପାରୁ ନ ଥିଲେ। ସେ ସ୍ଥିର କଲେ, ପଥରେ କୌଣସି କୌଶଳ କରି ବୀତଶୋକଙ୍କୁ ହଟେଇ ଦେବାକୁ ପଡ଼ିବ।

ବୀତଶୋକ ଆଶା କରିଥିଲେ, ସାମ୍ରାଜ୍ଞୀଙ୍କ ପ୍ରାସାଦରୁ ଯେ କୌଣସି ଦିନ ନିମନ୍ତ୍ରଣ ଆସିବ। ସେ ସୁଦର୍ଶନ ବୋଲି ଗର୍ବ ଅଛି। ସାମ୍ରାଜ୍ଞୀ ଭଳି ସୁନ୍ଦରୀ ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନାହାଁନ୍ତି। ଏଭଳି ରମଣୀ ଏକାକିନୀ ହେଲେ ସୁଯୋଗ ମିଳିବାର ସମ୍ଭାବନା ଥାଏ। ଅଥଚ ସାମ୍ରାଜ୍ଞୀ ତାଙ୍କୁ ବର୍ତ୍ତମାନ ଆଦୌ ଗୁରୁତ୍ୱ ଦେଉନାହାଁନ୍ତି। ପରବର୍ତ୍ତୀ ସମ୍ରାଟ ହେବାର ପ୍ରସ୍ତାବ ଦେବା ଦୂରେ ଥାଉ, ସେ ତାଙ୍କୁ ଖଲ୍ଲାତକ ସହିତ ଯୁଦ୍ଧଯାତ୍ରାରେ ଯିବାର ଆଦେଶ ଦେଇଛନ୍ତି। ଅଳସ ଜୀବନରେ ଅଭ୍ୟସ୍ତ ସେ। ଯୁଦ୍ଧଯାତ୍ରାର କଠୋର ପରିଶ୍ରମ କଥା ଭାବି ଆତଙ୍କିତ ହୋଇ ପଡ଼ିଲେ। ସେ ଉପାୟ ଖୋଜି ପାଉ ନ ଥିଲେ।

ଏଇ ସମୟରେ ସମ୍ବାଦ ଆସିଲା ଅଚିରାବତୀ ନଦୀ ତୀରରେ ଶ୍ରାବସ୍ତୀ ନଗରର ବୌଦ୍ଧମାନେ ବିଦ୍ରୋହ କରିଛନ୍ତି। ସେମାନେ ନବୀନା ସାମ୍ରାଜ୍ଞୀଙ୍କ ଘୋଷଣା ମାନି ନେଇ ପାରିନାହାଁନ୍ତି। ସମ୍ରାଟଙ୍କ ନିକଟରେ ଆବେଦନ କରିଥିଲେ ଦୂତ୍ ମାର୍ଫତ୍। ସମ୍ରାଟ ଜଣାଇଛନ୍ତି, ତିରିଶ ଦିନ ଅତିକ୍ରାନ୍ତ ନ ହେବାଯାଏଁ ସେ କୌଣସି ଆଦେଶ ଦେଇ ପାରିବେ ନାହିଁ। ତା'ଛଡ଼ା, ଏ ଧର୍ମଯାତ୍ରା ସମୟରେ ସେ ଏସବୁ ସମସ୍ୟା ନେଇ କୌଣସିମତେ ବିବ୍ରତ ହେବାକୁ ପସନ୍ଦ କରୁନାହାଁନ୍ତି।

ଶ୍ରାବସ୍ତୀର ବୌଦ୍ଧମାନେ ଥିଲେ ଅତ୍ୟନ୍ତ ଧର୍ମପ୍ରାଣ ଏବଂ ସେମାନଙ୍କ ଗର୍ବ ଥିଲା ଏଇ କାରଣରୁ ଯେ, ତଥାଗତ ସେଠାରେ ପଚିଶଟି ବର୍ଷାବାସ ଯାପନ କରିଛନ୍ତି। ତାଙ୍କ ଅଗ୍ରଶ୍ରାବକ ଦ୍ୱୟଙ୍କ ମଧ୍ୟରୁ ଅନ୍ୟତମ ସାରୀପୁତ୍ର ଶ୍ରାବସ୍ତୀରେ ଜେତବନ ନାମକ ଏକ ବିହାର ନିର୍ମାଣ କରିଥିଲେ।

ଏଇ ବିହାରରେ ଭିକ୍ଷୁମାନଙ୍କ ପାଇଁ ଷାଠିଏଟି ବୃହତ୍ ଏବଂ କ୍ଷୁଦ୍ର କକ୍ଷ ଥିଲା। ଉଦ୍ୟାନ ଏବଂ ଜଳାଶୟବେଷ୍ଟିତ ଏଇ ବୌଦ୍ଧବିହାରଟିକୁ ଦୂରରୁ ଅରଣ୍ୟ ବୋଲି ମନେ ହେଉଥିଲା। ଜେତବନ ବ୍ୟତୀତ ତଥାଗତଙ୍କ ଅନ୍ୟତମା ଭକ୍ତ, ଶ୍ରେଷ୍ଠୀ ଧନଞ୍ଜୟଙ୍କ ପରମା ସୁନ୍ଦରୀ କନ୍ୟା, ବିଶାଖା ଦ୍ୱାରା ନିର୍ମିତ ପୂର୍ବାରାମ ବିହାର ଏବଂ ପ୍ରସେନଜିତଙ୍କ ନିର୍ମିତ ରାଜାକରାମ ବିହାର ଥିଲା ଶ୍ରାବସ୍ତୀର ସମ୍ପଦ। ଶ୍ରାବସ୍ତୀ ଅତ୍ୟନ୍ତ ସୁରକ୍ଷିତ ସ୍ଥାନ। ସମ୍ରାଟ ଜେତବନ ବିହାର ତୋରଣର ଦକ୍ଷିଣ ଦିଗରେ ପ୍ରାୟ ତିରିଶ ହାତ ଉଚ୍ଚ ଦୁଇଟି ସ୍ତମ୍ଭ ନିର୍ମାଣ କରେଇଥିଲେ, ଯାହା ଉପରେ ଥିଲା ଚକ୍ର ଏବଂ ବୃଷଭ।

ନବୀନା ମହାରାଣୀଙ୍କ ଆଦେଶ ଅସହ୍ୟ ମନେହେଲା ଏଠାକାର ବୌଦ୍ଧମାନଙ୍କୁ। ସେମାନେ ସ୍ଥିରକଲେ ଏଇ ତିରିଶ ଦିନ ପାଟଳିପୁତ୍ର ସହିତ କୌଣସି ପ୍ରକାର ଯୋଗାଯୋଗ ରଖିବେ ନାହିଁ। ରାଜସ୍ୱ ଦେବେ ନାହିଁ ଏବଂ ନିଜସ୍ୱ ଶାସନ ବ୍ୟବସ୍ଥା ପ୍ରଚଳନ କରିବେ। ସ୍ପଷ୍ଟତଃ ଏଇ ଘୋଷଣା ବିଦ୍ରୋହ ବ୍ୟତୀତ କିଛି ନୁହେଁ। ଏଇ ବୌଦ୍ଧଭିକ୍ଷୁମାନେ ଜଣେ ନାରୀଙ୍କୁ ସେମାନଙ୍କ ଦଣ୍ଡମୁଣ୍ଡର ଅଧିକାରିଣୀ ଭାବେ କେବେ ହେଲେ କଳ୍ପନା କରିପାରୁ ନ ଥିଲେ। ତା'ଛଡ଼ା ସାମ୍ରାଜ୍ଞୀ ସ୍ୱୟଂ ତଥାଗତଙ୍କୁ ଆକ୍ରମଣ କରି ଯେଉଁ ଭାଷଣ ଦେଇଛନ୍ତି, ତାହା ସେମାନେ ଅବଗତ ହୋଇଛନ୍ତି। ତଥାଗତ କଦାପି ମନ୍ଦ କିଛି କହି ନ ପାରନ୍ତି। ସେ ଯାହା କରିଥିଲେ, ଯାହା କହିଥିଲେ—ଜୀବର ମଙ୍ଗଳ ପାଇଁ ଉଦ୍ଦିଷ୍ଟ। ସାମ୍ରାଜ୍ଞୀ ନିଜ ସୁବିଧା ଅନୁସାରେ ସେଇ ଉପଦେଶାବଳୀର ବ୍ୟାଖ୍ୟା କରି ଭଗବାନଙ୍କୁ ସାଧାରଣ ମଣିଷ ସ୍ତରକୁ ଟାଣିଆଣିବାର ସ୍ପର୍ଦ୍ଧା ଦେଖାଇଛନ୍ତି।

ପାଟଳିପୁତ୍ରର ଜନସାଧାରଣ ଏତେଟା କଳ୍ପନା କରି ନ ଥିଲେ । ଖଲ୍ଲାତକ ସେତେବେଳେ ସୈନ୍ୟମାନଙ୍କୁ ପ୍ରସ୍ତୁତ କରୁଛନ୍ତି । ଗୋଦାବରୀର ଅନ୍ୟ ତୀର ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କରିବା ପାଇଁ ସେ ଅପେକ୍ଷା କରିଛନ୍ତି ମହାରାଣୀଙ୍କ ନିର୍ଦ୍ଦେଶକୁ । ଶ୍ରାବସ୍ତୀର ସମ୍ବାଦ ପାଇ ସେ ଛୁଟିଗଲେ ମହାରାଣୀଙ୍କ ନିକଟକୁ । ମହାରାଣୀ ପୂର୍ବାହ୍ନରେ ହିଁ ସମ୍ବାଦଟି ଶୁଣିଥିଲେ । ସେ ବୁଝିପାରିଥିଲେ, ଏହା ସୂଚନା ମାତ୍ର । କ୍ଷମତା ଏବଂ ସୁଖଭୋଗରେ ଯେଉଁମାନେ ଅଭ୍ୟସ୍ତ, ସେମାନେ ସେଥିରେ ସାମାନ୍ୟ ବ୍ୟତିକ୍ରମ ସହ୍ୟ କରି ପାରନ୍ତି ନାହିଁ ଏବଂ ଏମାନଙ୍କୁ ପ୍ରଶୟ ଦେଲେ କ୍ରମଶଃ ବୈଶାଳୀ, ସାଞ୍ଚୀ, ତକ୍ଷଶିଳା ଏବଂ ସଂକାଶ୍ୟ ପ୍ରଭୃତି ଅଞ୍ଚଳରେ ବିଦ୍ରୋହ ବ୍ୟାପିଯିବ । ଖୁବ୍ ଦ୍ରୁତ ଉତ୍ତେଜନା ସଞ୍ଚରିତ ହୁଏ । ଅଗ୍ନିଠାରୁ ମଧ୍ୟ ଗତି ତାର ଅଧିକ । ଅତଏବ ଶ୍ରାବସ୍ତୀର ବିଦ୍ରୋହୀମାନଙ୍କୁ ବର୍ତ୍ତମାନ ହିଁ ସ୍ତବ୍ଧ କରିଦେବା ଉଚିତ ।

ଗୋଦାବରୀ ନୁହେଁ, ରାଜଧାନୀ ନିକଟସ୍ଥ ଶ୍ରାବସ୍ତୀ ଗଲାମାତ୍ରେ ଯୁଦ୍ଧର ପ୍ରଥମ ଆମେଜ ମିଳିବ । ତେଣୁ ଖଲ୍ଲାତକ ଉତ୍ତେଜିତ ହୋଇ ଉଠିଲେ । ସେଠାରେ ସୈନ୍ୟମାନଙ୍କୁ ରକ୍ତର ସ୍ୱାଦ ଚଖେଇ ଦକ୍ଷିଣକୁ ଯାତ୍ରା କରାହେବ । କିନ୍ତୁ ସାମ୍ରାଜ୍ଞୀ ତାଙ୍କ ପ୍ରସ୍ତାବ ସିଧାସଳଖ ବାତିଲ କରିଦେଲେ, "ଏ କଣ ! ଆପଣଙ୍କ ଭଳି ବିଚକ୍ଷଣ ମନ୍ତ୍ରୀ ଏ କି କଥା କହୁଛନ୍ତି ! ସମ୍ରାଟ କଣ ଖୁସି ହେବେ ବୌଦ୍ଧମାନଙ୍କୁ ଦମନ କଲେ ?"

ଖଲ୍ଲାତକ ବିସ୍ମିତ । ସେ କହିଲେ, "ଏଠି ବୌଦ୍ଧ ବା ବ୍ରାହ୍ମଣ ବଡ଼ କଥା ନୁହେଁ । ସେମାନେ ସିଂହାସନ ବିରୁଦ୍ଧରେ ବିଦ୍ରୋହ କରିଛନ୍ତି । ଏ ସ୍ପର୍ଦ୍ଧାର ଉତ୍ତର ଦେବା ଉଚିତ୍ ।"

ସାମ୍ରାଜ୍ଞୀ ହସିଲେ, "ଠିକ୍ କଥା । କିନ୍ତୁ ଏଇ ସାମାନ୍ୟ ବିଦ୍ରୋହ ଦମନ କରିବା ପାଇଁ ଜଣେ ପରାକ୍ରାନ୍ତ ମନ୍ତ୍ରୀ ଯିବାଟା ଦୃଷ୍ଟିକଟୁ ହେବ ନାହିଁ କି ?"

ଖଲ୍ଲାତକ କହିଲେ, "ଆପଣ ଯାହା ଭାବୁଛନ୍ତି, ତାହା ହୁଏତ ସତ୍ୟ ନୁହେଁ । ଯେଉଁମାନେ ବିଦ୍ରୋହ ଘୋଷଣା କରନ୍ତି ସେମାନଙ୍କର ନିଶ୍ଚୟ ଉତ୍ତମ ପ୍ରସ୍ତୁତି ଥାଏ । ତା'ଛଡ଼ା ଏଇ ସବୁ ବିହାରଗୁଡ଼ିକ ଗୋଟିଏ ଗୋଟିଏ ଦୁର୍ଗ ବିଶେଷ । କୁଶଳୀ ନ ହେଲେ ତା' ଅଧିକାର କରିବା ସମ୍ଭବ ନୁହେଁ ।"

ସାମ୍ରାଜ୍ଞୀ ପୁଣି ହସିଲେ, "ସତରେ !"

ଖଲ୍ଲାତକ କହିଲେ, "ଆଜ୍ଞା ହଁ, ସାମ୍ରାଜ୍ଞୀ । ଆପଣ ଅନୁମତି ଦେଲେ ମୁଁ ସୈନ୍ୟବାହିନୀ ନେଇ ଶ୍ରାବସ୍ତୀର ବିଦ୍ରୋହ ଦମନ କରି ଗୋଦାବରୀ ଅପର ପାର୍ଶ୍ୱକୁ ଯିବି ।"

ସାମ୍ରାଜ୍ଞୀ ଏଥର ସିଧା ହୋଇ ବସିଲେ, "ଆପଣଙ୍କ ଯାତ୍ରା ଆଗାମୀ ପୂର୍ଣ୍ଣିମାରେ । କିନ୍ତୁ ଏକଥା ସତ୍ୟ ଶ୍ରାବସ୍ତୀର ବିଦ୍ରୋହ ଦମନ କରିବା ପ୍ରୟୋଜନ । ଆପଣ ରାଜକୁମାରଙ୍କୁ କହନ୍ତୁ ପ୍ରସ୍ତୁତ ହେବା ପାଇଁ । ସେ ସୈନ୍ୟ ନେଇ ଶ୍ରାବସ୍ତୀ ଯିବେ ।

ବିଦ୍ରୋହ ଦମନ କରି ପୂର୍ଣ୍ଣିମା ପୂର୍ବରୁ ହିଁ ତାଙ୍କୁ ଫେରି ଆସିବାକୁ ପଡ଼ିବ ରାଜଧାନୀକୁ। ମୁଁ ଆଦେଶ-ନାମା ପଠାଉଛି।''

ଚମକି ଉଠିଲେ ଖଲ୍ଲାତକ, ''କଣ କହୁଛନ୍ତି ସାମ୍ରାଜ୍ଞୀ ! ରାଜକୁମାର କେବେହେଲେ ଅସ୍ତ୍ର ଧାରଣ କରିନାହାଁନ୍ତି। ଯୁଦ୍ଧବିଦ୍ୟା ଜାଣନ୍ତି ନାହିଁ। ସେ କେମିତି ସୈନ୍ୟ ଚାଳନା କରିବେ ? ନା, ନା, ଏ ଅସମ୍ଭବ।''

—''ଅସମ୍ଭବ ବୋଲି କୌଣସି ଶବ୍ଦରେ ମୁଁ ବିଶ୍ୱାସ କରେ ନାହିଁ। ତାଙ୍କ ଦେହରେ ରାଜରକ୍ତ ଅଛି, ଯେଉଁ ରକ୍ତ ଏକ ସମୟରେ ଆଗ୍ରାସୀ ଶକ୍ତିରେ ବିଶ୍ୱାସୀ ଥିଲା। ସେମିତି ପରିସ୍ଥିତି ଉପୁଜିଲେ ସେଇ ଗୋପନ ବା ସୁପ୍ତ ଶକ୍ତି ନିଶ୍ଚୟ ପ୍ରକାଶ ପାଇବ। ରାଜକୁମାରଙ୍କୁ ଏଇ ରାଜାଦେଶ ଜଣାନ୍ତୁ। ସେ ଯଦି ଅମାନ୍ୟ କରନ୍ତି ତେବେ ମୁଁ ବ୍ୟବସ୍ଥା ଗ୍ରହଣ କରିବି।''

—''କିନ୍ତୁ ରାଜକୁମାର ତ ଧର୍ମପ୍ରାଣ ବୌଦ୍ଧ।''

—''ତାହା ହିଁ ତ ସୁବିଧା'' ସାମ୍ରାଜ୍ଞୀ ହସିଲେ।

ସମସ୍ତ ରାଜଧାନୀରେ ହାହାକାର ପଡ଼ିଗଲା। ସାମ୍ରାଜ୍ଞୀ ସେମାନଙ୍କ ପ୍ରିୟ ସୁଦର୍ଶନ ଧର୍ମପ୍ରାଣ ଏବଂ ଯୁଦ୍ଧାନଭିଜ୍ଞ ରାଜକୁମାରଙ୍କୁ ଶ୍ରାବସ୍ତୀ ଯିବାକୁ ଆଦେଶ ଦେଇଛନ୍ତି। ଏ ଆଦେଶ କେବଳ ତାଙ୍କୁ ଅପମାନ କରିବା ନୁହେଁ, ହୁଏତ ତାଙ୍କୁ ମୃତ୍ୟୁ ଆଡ଼କୁ ଠେଲି ଦେବା।

ରାଜକୁମାର ଲିଖିତ ଆଦେଶ ପାଇ ମୂହ୍ୟମାନ ହେଲେ। ଏ କି ଖେଳ ! ସେ କେବେହେଲେ କଳ୍ପନା କରି ନାହାଁନ୍ତି ଯେ ଯୁଦ୍ଧକୁ ଯିବାକୁ ହେବ। ଯୁଦ୍ଧକୁ ସେ ଚିରକାଳ ଘୃଣା କରି ଆସିଛନ୍ତି। ଲୋଭ ମଣିଷକୁ ଜିଘାଂସୁ କରିଦିଏ। ତଥାଗତ ତାଙ୍କୁ ଶାନ୍ତିର ପଥରେ ଚାଲିବାକୁ ଶିଖେଇଛନ୍ତି। ସେ ଯଦି ଦାୟିତ୍ୱ ନେବାକୁ ଅସ୍ୱୀକାର କରନ୍ତି, ତେବେ ତାହା ହିଁ ବିଦ୍ରୋହ ବୋଲି ଗଣ୍ୟ ହେବ। ତା'ଛଡ଼ା ତଥାଗତ କହିଛନ୍ତି ଜ୍ୟେଷ୍ଠଙ୍କ ପ୍ରତି ସମ୍ମାନ ଏବଂ ଶ୍ରଦ୍ଧା ପ୍ରଦର୍ଶନ କରିବା ଅବଶ୍ୟ ଇ ପ୍ରୟୋଜନ। ସେ ସ୍ଥିର କଲେ ଶ୍ରାବସ୍ତୀ ଯିବେ।

ସମ୍ବାଦ ଶ୍ରବଣ ମାତ୍ରେ ରାଜବଧୂ କାଞ୍ଚନମାଳା ଚେତନ, ହରେଇଲେ। ଏଇ ରାଜଧାନୀରେ ତ ଅନେକ ଲୋକ ଥିଲେ। ଖଲ୍ଲାତକଙ୍କ ଛଡ଼ା ବୀତଶୋକ ଏ କାର୍ଯ୍ୟ ପାଇଁ ଅତ୍ୟନ୍ତ ଉପଯୁକ୍ତ ବ୍ୟକ୍ତି। ସେମାନଙ୍କୁ ନ ଡାକି ସାମ୍ରାଜ୍ଞୀ ରାଜକୁମାରଙ୍କୁ କାହିଁକି ଏ ଅବାଞ୍ଛିତ ଦାୟିତ୍ୱ ଦେଲେ ? ତା'ଛଡ଼ା ଶ୍ରାବସ୍ତୀର ବୌଦ୍ଧ ଭିକ୍ଷୁଗଣ,

ଯାହା ଶୁଣାଯାଏ, ରଣକୌଶଳ ଅବଗତ ଅଛନ୍ତି। ରାଜା ପ୍ରସେନଜିତ ଅଜାତଶତ୍ରୁଙ୍କ ଠାରୁ ଯୁଦ୍ଧରେ ପରାଜିତ ହୋଇ ରଣକୌଶଳ ଶିକ୍ଷା ପାଇଁ ବିହାରର ଭିକ୍ଷୁମାନଙ୍କ ଶରଣାପନ୍ନ ହୋଇଥିଲେ। ଏଇ ଅପରା ବା ନିକୃଷ୍ଟ ବିଦ୍ୟା କୌଣସି କୌଣସି ବିହାରରେ ପ୍ରଚଳିତ। ଶ୍ରାବସ୍ତୀ ଯଦି ସେଇ ବିଦ୍ୟାରେ ଶିକ୍ଷିତ ହୋଇଥାଏ, ତେବେ ରାଜକୁମାରଙ୍କ ପ୍ରାଣସଂଶୟ ନିଶ୍ଚୟ ହେବ।

କିନ୍ତୁ ରାଜକୁମାର ଏସବୁ କଥାରେ ମନ ଦେଲେ ନାହିଁ। ତାଙ୍କର କେବଳ ମନେ ହେଉଥିଲା, ମହାରାଣୀଙ୍କ ପ୍ରାସାଦକୁ ନିମନ୍ତ୍ରିତ ହୋଇ ସେଇ ସବୁ ବାକ୍ୟ ଶ୍ରବଣ କରିବାଠାରୁ ଶ୍ରାବସ୍ତୀ ଯିବା ଅନେକ ବେଶୀ ସୁଖଦାୟକ। ତଥାଗତଙ୍କ ଇଚ୍ଛାରେ ଯଦି ମୃତ୍ୟୁ ଆସେ, ତେବେ ତା' ମାନି ନେବାକୁ କୌଣସି ଆପତ୍ତି ନାହିଁ।

ଅତଏବ ପାଟଳୀପୁତ୍ରର ଲୋକେ ଭଗ୍ନ ହୃଦୟରେ ରାଜକୁମାରଙ୍କୁ ସସୈନ୍ୟ ଶ୍ରାବସ୍ତୀକୁ ଯିବାର ଦେଖିଲେ। ରାଜକୁମାର ସୈନ୍ୟମାନଙ୍କୁ ସଂଯତ ଆଚରଣ କରିବାକୁ ଆଦେଶ ଦେଇଛନ୍ତି। ସେ ଯେଉଁ ସୈନ୍ୟମାନଙ୍କୁ ପାଇଥିଲେ ସେମାନଙ୍କ ସଂଖ୍ୟା ଖୁବ୍ ବେଶୀ ନୁହେଁ; କିନ୍ତୁ ବିହାର ଅଧିକାର କରିବା ପାଇଁ ଯଥେଷ୍ଟ। ସଶସ୍ତ୍ର ସୈନ୍ୟମାନଙ୍କ ସମ୍ମୁଖରେ ନିରସ୍ତ୍ର ରାଜକୁମାର ସେନାପତି ହୋଇ ଚାଲିଛନ୍ତି—ଏଇ ଦୃଶ୍ୟଟି ଅନେକଙ୍କ ପକ୍ଷରେ ବେଦନାର କାରଣ ହେଲା। କେହି କେହି ଆଶଙ୍କା କଲେ ଏଇ ଯାତ୍ରା ହିଁ ଶେଷଯାତ୍ରା। ରାଜକୁମାର ଆଉ ଫେରି ଆସିବେ ନାହିଁ, ସାମ୍ରାଜ୍ଞୀ ତାଙ୍କୁ ମୃତ୍ୟୁ ମୁଖକୁ ଠେଲି ଦେଲେ। ପ୍ରଜାମାନଙ୍କ କ୍ଷୋଭ ବର୍ଦ୍ଧିତ ହେଲା।

ଶ୍ରାବସ୍ତୀର ବୌଦ୍ଧମାନେ ହତଭମ୍ବ ହୋଇଗଲେ। ବିଦ୍ରୋହ ଘୋଷଣା କଲାପରେ ସେମାନଙ୍କର ଆଶଙ୍କା ଥିଲା, ସାମ୍ରାଜ୍ଞୀ ନିଶ୍ଚୟ ଖଲ୍ଲାତକଙ୍କୁ ଆଦେଶ ଦେବେ ଦମନ କରିବା ପାଇଁ। ତୀରନ୍ଦାଜ ବିଦ୍ୟାରେ ସେମାନେ ସେତେ ଦକ୍ଷ ନ ହେଲେ ମଧ୍ୟ ଦ୍ରୁତ ଶିକ୍ଷା ଗ୍ରହଣ କରୁଥିଲେ। କେବଳ ବିହାର ନୁହେଁ, ଶ୍ରାବସ୍ତୀ ନଗରକୁ ସୁରକ୍ଷିତ କରିବା ପାଇଁ ସେମାନେ ସବୁପ୍ରକାର କୌଶଳ ଅବଲମ୍ବନ କରିଥିଲେ। ନଗରୀର ପ୍ରାକାରଗୁଡ଼ିକ ସୁନିର୍ମିତ କରି ସେମାନେ ଗୋଟିଏ ଅଭେଦ୍ୟ ପ୍ରତିରୋଧ ସୃଷ୍ଟି କରିବାରେ ବ୍ୟସ୍ତ ଥିଲେ। ଏଇ ସମୟରେ ସମ୍ବାଦ ଆସିଲା, ଖଲ୍ଲାତକ ନୁହଁନ୍ତି, ମହାରାଣୀଙ୍କ ପ୍ରତିନିଧି ହୋଇ ସେମାନଙ୍କୁ ଦମନ କରିବାକୁ ଆସୁଛନ୍ତି ରାଜକୁମାର।

ସେମାନେ ଧିକ୍କାର ଦେଲେ। ଯେଉଁ ମଣିଷଟି ସ୍ୱୟଂ ଉପଗୁପ୍ତଙ୍କ ଆଶୀର୍ବାଦ ଧନ୍ୟ, ଯିଏ ତାଙ୍କ ଧର୍ମାଚରଣ ପାଇଁ ସମଗ୍ର ବୌଦ୍ଧ ସମାଜର ଶ୍ରଦ୍ଧାର ପାତ୍ର, ସେ କେମିତି ଧର୍ମପାଇଁ ନିବେଦିତ ବୌଦ୍ଧମାନଙ୍କୁ ଦମନ କରିବାକୁ ସୈନ୍ୟଚାଳନା କରିବେ? ଏତେକାଳର ଶିକ୍ଷା ମ୍ଳାନ ହୋଇଗଲା? ବୁଦ୍ଧଙ୍କ ବାଣୀ କଣ ସ୍ମରଣ ରହିଲା ନାହିଁ? ଈଶ୍ୱରଙ୍କ ଆଶୀର୍ବାଦରେ ଯିଏ ଧନ୍ୟ, ସେ ପୁଣି କାହିଁକି ଜଣେ ସାଧାରଣ ସେନାପତି ଭୂମିକାରେ ଅବତୀର୍ଣ୍ଣ ହେଲେ? ସେମାନେ ଠିକ୍ କଲେ କୌଣସି

କାରଣରେ ଆତ୍ମସମର୍ପଣ କରିବେ ନାହିଁ। ତଥାଗତଙ୍କ ମତ ହେଲା, ମଣିଷ ସତ୍ ବା ଅସତ୍ ଯେଉଁ କର୍ମ ହିଁ କରୁ ତାକୁ ସେଇ କର୍ମର ଫଳଭୋଗ କରିବାକୁ ପଡ଼ିବ। ଏ ନିୟମ ନିଶ୍ଚୟ ରାଜକୁମାରଙ୍କ ଉପରେ ମଧ୍ୟ ପ୍ରଯୋଜ୍ୟ।

କ୍ରମଶଃ ସୈନ୍ୟବାହିନୀକୁ ଦେଖାଗଲା। ଧୂଳିଝଡ଼ ପରି ସେମାନେ ଆସୁଛନ୍ତି। ପ୍ରାକାର ଉପରେ ଠିଆ ହୋଇଥିବା ସନ୍ଧାନୀ ଜଣକ ସମ୍ବାଦଟି ପରିବେଷଣ କଲା। ଭିକ୍ଷୁମାନେ ଦେଖିଲେ ସୈନ୍ୟବାହିନୀଟି ବିଶାଳ ନ ହେଲେ ମଧ୍ୟ ଅବହେଳା କଲାଭଳି ନୁହେଁ। ସେମାନେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ। ନଗରୀ ପ୍ରାକାର ବାହାରେ ଯେଉଁ ବିଶାଳ ଶୂନ୍ୟ ଭୂଖଣ୍ଡ, ତା'ର ଅପରପ୍ରାନ୍ତରେ ସୈନ୍ୟମାନେ ଶିବିର ସ୍ଥାପନ କରିଛନ୍ତି। ସେମାନଙ୍କର ଗତିବିଧି ଦେଖାଯାଉଛି ନଗରୀର ପ୍ରାକାର ଉପରୁ। ଭୂଖଣ୍ଡର ମଧ୍ୟ ସୀମା ଅତିକ୍ରମ କଲେ ହିଁ ସେମାନଙ୍କୁ ଆକ୍ରମଣ କରାହେବ ବୋଲି ସ୍ଥିର ହେଲା।

ସେତେବେଳେ ସମୟ ଦିନ ଦ୍ୱିପ୍ରହର। ପ୍ରଖର ଖରା। ଶ୍ରାବସ୍ତୀ ନଗରୀର ନାଗରିକମାନେ ସ୍ତବ୍ଧ। ସର୍ବତ୍ର କଣ ହେବ କଣ ହେବ ଭାବ। ଏଭଳି ଉତ୍କଣ୍ଠାପୂର୍ଣ୍ଣ ସମୟରେ ଭିକ୍ଷୁମାନେ ଯେତେବେଳେ ପ୍ରସ୍ତୁତ, ଠିକ୍ ସେତିକିବେଳେ ଦେଖାଗଲା ଭୂଖଣ୍ଡର ଅପରପ୍ରାନ୍ତର ସୈନ୍ୟଶିବିରରୁ ଏକାକୀ ଜଣେ ବ୍ୟକ୍ତି ପାଦରେ ଚାଲିଚାଲି ଆଗେଇ ଆସୁଛି। ଭିକ୍ଷୁମାନେ ଆଶ୍ଚର୍ଯ୍ୟ ହେଲେ। କାହାର ଏମିତି ମତିଭ୍ରମ ହେଲା? କିମ୍ବା ରାଜକୁମାର ଦୂତ ପ୍ରେରଣ କରୁଛନ୍ତି କୌଣସି ସନ୍ଦେଶ ଦେଇ? ଜଣେ ମଣିଷ କେବେ ଭୟର କାରଣ ହୁଏନାହିଁ। ଭିକ୍ଷୁମାନେ ଅପେକ୍ଷା କରିବେ ବୋଲି ସ୍ଥିର କଲେ। କିନ୍ତୁ କୌଣସିକ୍ରମେ ସିଦ୍ଧି ନୁହେଁ।

ବ୍ୟକ୍ତିଟି ଯେତେବେଳେ ଭୂଖଣ୍ଡର ମଧ୍ୟଭାଗ ଅତିକ୍ରମ କଲା, ସେତେବେଳେ ଭିକ୍ଷୁମାନଙ୍କ କଣ୍ଠରୁ ଗୋଟିଏ ଶବ୍ଦ ନିର୍ଗତ ହେଲା। ଶବ୍ଦଟି ହତାଶାର, ଆଶାଭଙ୍ଗର। ଏ ଆଶା 'ଯେକୌଣସି ଯୁଦ୍ଧାର୍ଥୀ କରିଥାଏ। ସେମାନେ ଦେଖିଲେ ସ୍ୱୟଂ ରାଜକୁମାର ତାଙ୍କ ସୈନ୍ୟବାହିନୀକୁ ଶିବିରରେ ରଖି ଆଗେଇ ଆସିଛନ୍ତି। ଅତ୍ୟନ୍ତ ପ୍ରଶାନ୍ତ ପଦକ୍ଷେପ। ମୁଖ ମଧ୍ୟ ପ୍ରଶାନ୍ତ, କେବଳ ଏ ପ୍ରଖର ଖରାରେ ସାମାନ୍ୟ ରକ୍ତବର୍ଣ୍ଣ। ଅଧର ସ୍ଫୁରିତ!

ରାଜକୁମାର ଆହୁରି ନିକଟବର୍ତ୍ତୀ ହେଲେ। ସେମାନେ ଆଶ୍ଚର୍ଯ୍ୟ ହୋଇ ଶୁଣିଲେ ପବିତ୍ର ମନ୍ତ୍ର। ରାଜକୁମାର ପଦକ୍ଷେପ କରୁଛନ୍ତି ମନ୍ତ୍ର ଉଚ୍ଚାରଣ କରୁ କରୁ—''ତତିୟମ୍ପି ବୁଦ୍ଧଂ ଶରଣଂ ଗଚ୍ଛାମି। ତତିୟମ୍ପି ଧମ୍ମଂ ଶରଣଂ ଗଚ୍ଛାମି। ତତିୟମ୍ପି ସଂଘଂ ଶରଣଂ ଗଚ୍ଛାମି।''

ସେ ଆସି ଠିଆ ହେଲେ ନଗରର ଦ୍ୱାର ଦେଶରେ। ତା'ପରେ ନମ୍ର କଣ୍ଠରେ କହିଲେ, ''ମୁଁ ଅତିଥି। ତଥାଗତଙ୍କ ଶରଣାଗତ। ଦ୍ୱାର ଖୋଲ।''

ଭିକ୍ଷୁମାନେ ଜଣେ ଅନ୍ୟ ଜଣଙ୍କ ମୁହଁକୁ ଚାହିଁଲେ। ସେମାନେ ଏଭଳି ଘଟଣା କଳ୍ପନା କରି ନ ଥିଲେ। ହର୍ଷଧ୍ୱନି କରି ଉଠିଲେ ସେମାନେ। ତଥାଗତଙ୍କ ନାମରେ ଜୟଧ୍ୱନି ଉଠିଲା। ଦ୍ୱାର ଖୋଲି ପରମ ଆଦର ସହକାରେ ରାଜକୁମାରଙ୍କୁ ନଗରୀ ଭିତରକୁ ବରଣ କରି ନିଆଗଲା। ନଗରୀର ଦ୍ୱାର ପୁଣି ରୁଦ୍ଧ ହେଲା। ସୈନ୍ୟମାନେ ରହିଗଲେ ଶିବିରରେ। ଭିକ୍ଷୁମାନେ ରାଜକୁମାରଙ୍କୁ ସେମାନଙ୍କ ବିଭ୍ରାନ୍ତି କଥା ଜଣେଇ ଅନୁଯୋଗ କଲେ। ରାଜକୁମାର ହସିଲେ, "ମୁଁ ଜ୍ଞାନତଃ ଅସ୍ତ୍ର ଧାରଣ କରି ପାରେନା। ତେବେ ମହାରାଣୀଙ୍କ ଆଦେଶରେ ମୋତେ ଆପଣଙ୍କ ନିକଟକୁ ଆସିବାକୁ ପଡ଼ିଛି। ଆପଣମାନେ ନିଶ୍ଚିନ୍ତ ରହନ୍ତୁ, ଏଇ ନଗରୀରେ ସୈନ୍ୟମାନେ ମୋ ନେତୃତ୍ୱରେ ପ୍ରବେଶ କରିବେ ନାହିଁ। କିନ୍ତୁ ଆଉ କିଛି ଦିନ ପରେ ହିଁ ଯେତେବେଳେ ସମ୍ରାଟ ପ୍ରତ୍ୟାବର୍ତ୍ତନ କରିବେ, ସେତେବେଳେ ଆପଣମାନେ ଅଧୀର ନ ହୋଇ ଅପେକ୍ଷା କରି ପାରିଥାନ୍ତେ। ସେ ଆସି ନିଶ୍ଚୟ ଆପଣମାନଙ୍କ କ୍ଷୋଭ ଦୂର କରିଥାନ୍ତେ।"

ଭିକ୍ଷୁମାନେ ଜଣାଇଲେ, ସେମାନେ ଅନ୍ୟାୟର ପ୍ରତିବାଦ କରିଛନ୍ତି ମାତ୍ର। ତେବେ ରାଜକୁମାରଙ୍କୁ ପାଇ ସେମାନଙ୍କ କ୍ଷୋଭ ମ୍ଳାନ ହୋଇଛି। ବର୍ତ୍ତମାନ ରାଜକୁମାର ଏଇ ପବିତ୍ର ନଗରରେ ସେମାନଙ୍କ ସହ ତଥାଗତଙ୍କ ନାମଗାନ କରି ତୃପ୍ତ ହୁଅନ୍ତୁ, ତୃପ୍ତି ଦିଅନ୍ତୁ।

ପାଟଳିପୁତ୍ରର ସୈନ୍ୟମାନଙ୍କୁ ନଗରରେ ପ୍ରବେଶ କରିବାର ଅନୁମତି ଦେଲେ ନାହିଁ ଭିକ୍ଷୁମାନେ। ସେମାନେ ଯେଉଁଠି ଥିଲେ, ସେଠାରେ ହିଁ ରହିଲେ। ତେବେ ସେମାନଙ୍କ ଆଦର ଆପ୍ୟାୟନର ତ୍ରୁଟି ହେଲା ନାହିଁ। ଶ୍ରାବସ୍ତୀର ପବିତ୍ର ପରିବେଶରେ ରାଜକୁମାର ମୁଗ୍ଧ। ଜେତବନ ବିହାରର ଚଙ୍କ୍ରମଣ କରିବା ସ୍ଥାନଟି ଭାରି ମନୋରମ। ଜେତବନ ବା ପୂର୍ବାରାମ କିମ୍ବା ରାଜକାରାମ ବିହାରର ନିର୍ମାଣ ପଛରେ ସୁନ୍ଦର ଗଳ୍ପ ଅଛି। ତିନୋଟି ବିହାରକୁ ହିଁ ଶ୍ରାବସ୍ତୀର ବୌଦ୍ଧମାନେ ପୂର୍ଣ୍ଣ ମର୍ଯ୍ୟାଦାରେ ରଖିଛନ୍ତି। ଜେତବନରେ ଯେମିତି ଭିକ୍ଷୁମାନେ ସ୍ୱଚ୍ଛନ୍ଦରେ ଥିଲେ, ପୂର୍ବାରାମରେ ସେମିତି ସେମାନେ ସଙ୍କୋଚବୋଧ କରୁଥିଲେ। ଶ୍ରେଷ୍ଠୀ ଧନଞ୍ଜୟଙ୍କ କନ୍ୟା ବିଶାଖାର ବିବାହ ହୋଇଥିଲା ଶ୍ରେଷ୍ଠୀ ମିଗାରଙ୍କ ପୁତ୍ର ସହିତ। ବିଶାଖା ପ୍ରଚୁର ସମ୍ପତ୍ତି ଓ ଅର୍ଥର ଅଧିକାରିଣୀ ଥିଲେ। ଦିନେ ଜେତବନକୁ ଯାଇଥିଲେ ବିଶାଖା ଧର୍ମକଥା ଶୁଣିବା ପାଇଁ। ସେଠାରେ ସେ ଗୋଟିଏ ସୁନାହାର ଭୁଲ୍‌ରେ ଛାଡ଼ି ଆସନ୍ତି। ପରଦିନ ଭିକ୍ଷୁ ଆନନ୍ଦ ସେଇଟିକି ପାଇ ବିଶାଖାଙ୍କୁ ଫେରସ୍ତ ଦେଇ ଆସନ୍ତି। ବୌଦ୍ଧ ସନ୍ନ୍ୟାସୀଙ୍କ ଏହି ନିର୍ଲିପ୍ତ ମନୋଭାବର ପରିଚୟ ପାଇ ବିଶାଖା ସ୍ଥିର କରନ୍ତି ସେଇ ହାର ମୂଲ୍ୟର ଅର୍ଥରେ ଗୋଟିଏ ବିହାର ନିର୍ମାଣ କରେଇ ଦେବେ। କିନ୍ତୁ ଏତେ ମୂଲ୍ୟବାନ ହାର କିଣିବାକୁ କେହି ରାଜି ହେଲେ ନାହିଁ। ବିଶାଖା ସେତେବେଳେ ନିଜେ ନିଜର ହାର କିଣି ସେଇ ଅର୍ଥରେ ନିର୍ମାଣ କରେଇଲେ ବିରାଟ ବିହାର। ତା'ର ପ୍ରଭାବରେ

ମିଗାର ଜୈନ୍ୟଧର୍ମ ତ୍ୟାଗ କରି ବୌଦ୍ଧ ଧର୍ମରେ ଦୀକ୍ଷିତ ହୁଅନ୍ତି। ବିହାରଟିକୁ ଅନେକେ ସେତେବେଳେ କହୁଥିଲେ, ମିଗାରମାତା ପ୍ରାସାଦ। ଅସଂଖ୍ୟ କକ୍ଷଯୁକ୍ତ ଦ୍ୱିତଳ ବିହାରଟିର କାନ୍ଥରେ ଏତେ କାରୁକାର୍ଯ୍ୟ ଥିଲା ଯେ ଭିକ୍ଷୁମାନେ ସେଠାରେ ରହିବାକୁ ସଙ୍କୋଚବୋଧ କରୁଥିଲେ। ଯଦିଓ ବିଶାଖା ନିର୍ମିତ ଏଇ ବିହାରଟି ତଥାଗତଙ୍କ ଅଗ୍ରଶାବକ ଦ୍ୱୟଙ୍କ ମଧ୍ୟରୁ ଅନ୍ୟତମ ମୌଦ୍‌ଗଲ୍ୟାୟନ କର୍ତ୍ତୃକ ପରିକଳ୍ପିତ, ତଥାପି ଜେତବନର ସାରଲ୍ୟରେ ହିଁ ଅଧିକ ନିଃସଂଶୟ ରହୁଥିଲେ ଭିକ୍ଷୁମାନେ। ରାଜକୁମାର ବିହାରଗୁଡ଼ିକ ବୁଲି ବୁଲି ଦେଖିଲେ। ସାରିପୁତ୍ର ଏବଂ ମୌଦ୍‌ଗଲ୍ୟାୟନଙ୍କ ପବିତ୍ର ଅସ୍ଥି ଯେଉଁଠାରେ ରକ୍ଷିତ, ସେଠାରେ ବସି ତଥାଗତଙ୍କୁ ଧ୍ୟାନ କଲେ ଅପ୍ରାକୃତିକ ଏକ ଆନନ୍ଦରେ ଚିତ୍ତଶୁଦ୍ଧିର ଅବବୋଧ ଆସେ।

ଚତୁର୍ଥ ଦିନ ପାଟଳିପୁତ୍ରରୁ ଏକ ବିଶେଷଦୂତ ଆସିଲା ପତ୍ର ନେଇ। ବନ୍ଧ ନଗର ଦ୍ୱାରରେ ଆସି ସେ ଏଇ କଥା ଘୋଷଣା କଲାମାତ୍ରେ ଭିକ୍ଷୁମାନଙ୍କ ମନରେ ସନ୍ତ୍ରସ୍ତ ଭାବର ଉଦ୍ରେକ ହେଲା। ରାଜକୁମାରଙ୍କ ନିକଟକୁ ପତ୍ରଟି ପହଞ୍ଚାଇ ଦିଆଗଲା। ଉପାସନା ଶେଷ କରି ତୃପ୍ତ ହୃଦୟରେ ରାଜକୁମାର ସେଇ ପତ୍ର ପାଠ କଲେ। ମହାରାଣୀ କୌଣସି ଭୂମିକା କରି ନାହାଁନ୍ତି। ସେ ଜଣାଇଛନ୍ତି, ରାଜଧାନୀରେ ସମ୍ବାଦ ପହଞ୍ଚିଛି—ରାଜକୁମାର ସୈନ୍ୟବାହିନୀ ତ୍ୟାଗ କରି ବିଦ୍ରୋହୀମାନଙ୍କ ସହ ଯୋଗ ଦେଇଛନ୍ତି। ସମ୍ବାଦଟି ସତ୍ୟ ହୋଇଥିଲେ ତା' ସାମ୍ରାଜ୍ଞୀଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା ବୋଲି ଗଣ୍ୟ କରାହେବ। ସାମ୍ରାଜ୍ଞୀ ତେଣୁ ଆଦେଶ ଦେଇଛନ୍ତି ରାଜକୁମାର ଯେମିତି ଅବିଳମ୍ବେ ରାଜଧାନୀ ପ୍ରତ୍ୟାବର୍ତ୍ତନ କରନ୍ତି।

ରାଜକୁମାରଙ୍କୁ ଅନ୍ୟମନସ୍କ ଦେଖି ଭିକ୍ଷୁମାନେ ଉଦ୍‌ବିଗ୍ନ ହୋଇ ପ୍ରଶ୍ନ କଲେ, ଆପଣ କ'ଣ ଚିନ୍ତିତ? ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଆମେ ଅପେକ୍ଷା କରିବୁ। ଆପଣ ମଧ୍ୟ ସେତେଦିନ ଆମ ଗହଣରେ ରହନ୍ତୁ। ଏ ପତ୍ରର ଉତ୍ତର ଦେବାର କୌଣସି ପ୍ରୟୋଜନ ନାହିଁ।

ରାଜକୁମାର ଧୀରେ ଧୀରେ ମସ୍ତକ ଆନ୍ଦୋଳିତ କଲେ, "ନା, ତା ହେବନାହିଁ। ମୁଁ ସାମ୍ରାଜ୍ଞୀଙ୍କୁ ଜଣେଇବାକୁ ଚାହେଁ ଆପଣମାନଙ୍କ ସହ ବନ୍ଧୁତ୍ୱ କରିବା ଅର୍ଥ କେବେ, ବିଦ୍ରୋହ କରିବା ନୁହେଁ।"

—"ଆପଣ କ'ଣ ପତ୍ର ଦେବାକୁ ଚାହାଁନ୍ତି?"

—"ନା। ସାମ୍ରାଜ୍ଞୀ ମୋତେ ଆଦେଶ ଦେଇଛନ୍ତି, ମୁଁ ଫେରିଯିବି।"

—"ଫେରିଯିବେ?" ସମସ୍ୱରରେ ଆର୍ତ୍ତନାଦ, "ଫେରିଗଲେ ମହାରାଣୀ ଆପଣଙ୍କୁ ଦଣ୍ଡ ଦେଇ ପାରନ୍ତି। ଆପଣଙ୍କ ନିରାପତ୍ତା ବିଘ୍ନିତ ହୋଇପାରେ।"

—"ଜାଣେନା କ'ଣ ହେବ। ତଥାଗତ ନିଶ୍ଚୟ ଯାହା ଭଲ, ସେଇ ଦିଗକୁ ହିଁ ମୋର ଭାଗ୍ୟ ଚାଳିତ କରିବେ। କିନ୍ତୁ ସାମ୍ରାଜ୍ଞୀଙ୍କ ଆଦେଶ ଅବମାନନା କରିବା ମୋ ପକ୍ଷରେ ସମ୍ଭବ ନୁହେଁ।"

—"କାହିଁକି ? ବିପଦ ଯେଉଁଠି ଅବଶ୍ୟମ୍ଭାବୀ"

—"ହୁଏତ। କିନ୍ତୁ ପିତା ଧର୍ମଯାତ୍ରାକୁ ଯିବା ପୂର୍ବରୁ ଆମକୁ ଜଣାଇଥିଲେ ସାମ୍ରାଜ୍ଞୀଙ୍କ ଆଦେଶ ହିଁ ତାଙ୍କ ଇଚ୍ଛା। ସାମ୍ରାଜ୍ଞୀ ତାଙ୍କରି ପ୍ରତିନିଧି। ଏ କ୍ଷେତ୍ରରେ ରାଜଧାନୀକୁ ଫେରି ନ ଗଲେ ପିତାଙ୍କୁ ହିଁ ଅମାନ୍ୟ। ଆପଣମାନେ ମୋତେ ଅନୁମତି ଦିଅନ୍ତୁ।"

ଭିକ୍ଷୁମାନେ ରାଜକୁମାରଙ୍କୁ ବହୁତ ବୁଝେଇଲେ। ରାଜକୁମାର ସ୍ମିତ ହସିଲେ। ତା'ପରେ ତଥାଗତଙ୍କ ପବିତ୍ର ଉପଦେଶ ଉଚ୍ଚାରଣ କଲେ—"ଅବେରେଣ ଚ ସମ୍ମନ୍ତି, ଏସ ଧମ୍ମୋ ସନନ୍ତନୋ।" ମୈତ୍ରୀ ଦ୍ୱାରା ହିଁ ଶତ୍ରୁତା ଜୟ କରିହୁଏ। ତାହା ହିଁ ସନାତନ ଧର୍ମ।

ପାଟଳିପୁତ୍ରରେ ସମ୍ବାଦ ପ୍ରଚାରିତ ହୋଇଥିଲା। ନାଗରିକମାନେ କଳ୍ପନା କରିପାରୁ ନ ଥିଲେ ଯେ ରାଜକୁମାର କେବେ ବିଦ୍ରୋହ ଘୋଷଣା କରିପାରନ୍ତି। ତଥାଗତ ଯାହାଙ୍କ ଆଦର୍ଶ, ନମ୍ରତା ଯାହାଙ୍କ ସ୍ୱଭାବଗତ, ପ୍ରେମ ଯାହାଙ୍କ ହୃଦୟରେ ପୂର୍ଣ୍ଣ, ସେ କଦାପି ଉଦ୍ଧତ ହୋଇ ନ ପାରନ୍ତି। ସେଇ ରାଜକୁମାର ସାମ୍ରାଜ୍ଞୀଙ୍କ ଆଦେଶ ପାଇବାମାତ୍ରେ ରାଜଧାନୀକୁ ପ୍ରତ୍ୟାଗମନ କରିଛନ୍ତି ଜାଣିପାରି ସେମାନଙ୍କ ବିଶ୍ୱାସ ଆହୁରି ଦୃଢ଼ ହେଲା। ସେମାନେ ଦଳଦଳ ହୋଇ ରାଜପଥକୁ ବାହାରି ଆସିଲେ। ରାଜକୁମାରଙ୍କ ଜୟଧ୍ୱନି ଦେଲେ। ତଥାଗତଙ୍କ ନାମ ନେଲେ ଏବଂ ଆନନ୍ଦିତ ହେଲେ। ସେଇ ସମୟରେ ପ୍ରହରୀମାନେ ରାଜକୁମାରଙ୍କୁ ସମ୍ଭ୍ରମ ସହକାରେ ଜଣାଇଲେ, ସାମ୍ରାଜ୍ଞୀ ତାଙ୍କୁ ସଙ୍ଗେ ସଙ୍ଗେ ରାଜପ୍ରାସାଦକୁ ଯିବା ପାଇଁ ଆଦେଶ କରିଛନ୍ତି।

ପଥଶ୍ରମରେ କ୍ଲାନ୍ତ ହେବା ସତ୍ତ୍ୱେ ରାଜକୁମାର ଆଦେଶ ପାଳନ କଲେ। ରାଜସଭା ନୁହେଁ, ସାମ୍ରାଜ୍ଞୀ ବସିଥିଲେ ତାଙ୍କ ପ୍ରାସାଦର ଅତିଥି-କକ୍ଷରେ। ରାଜକୁମାର ତାଙ୍କୁ ଅଭିବାଦନ ଜଣାଇବା ମାତ୍ରେ ସେ ମୁହୂର୍ତ୍ତକ ପାଇଁ ଚକ୍ଷୁ ବନ୍ଦ କଲେ। ନା, ସେ ଦୁର୍ବଳ ହେବେ ନାହିଁ। ମହାରାଣୀ କହିଲେ, "ରାଜକୁମାର, ମୁଁ ତୁମକୁ ବିଦ୍ରୋହ ଦମନ କରିବାର ଆଦେଶ ଦେଇଥିଲି। ତୁମେ ସୈନ୍ୟ ବାହିନୀକୁ ନିଷ୍କ୍ରିୟ ରଖି ଏକାକୀ ବିଦ୍ରୋହୀମାନଙ୍କ ସହ ଯୋଗ ଦେଇ ସେଠାରେ ସୁଖଭୋଗ କରିଛ। ଏଇ ଗୁରୁତର ଅପରାଧର ଶାସ୍ତି କଣ ତା' ଜାଣିଛ ?"

ରାଜକୁମାର ଶାନ୍ତ କଣ୍ଠରେ ଉତ୍ତର ଦେଲେ, "ମୁଁ ଜ୍ଞାନତଃ କୌଣସି ଅପରାଧ କରିନାହିଁ।"

—"ଅପରାଧ କରିନାହଁ ? ତୁମେ ବିଦ୍ରୋହୀମାନଙ୍କ ସହିତ ଯୋଗ ଦେଇଛ, ତାହା ଅପରାଧ ନୁହେଁ ?"

—"ମୁଁ ସେମାନଙ୍କୁ ଶାନ୍ତ କରିବାକୁ ଚାହିଁଥିଲି। ରକ୍ତକ୍ଷୟ କରି ହୁଏତ ଆପଣ ସେମାନଙ୍କୁ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ କରିଥାନ୍ତେ, କିନ୍ତୁ ମନ ଜୟ କରିପାରି ନ ଥାନ୍ତେ। ମୁଁ ସେଇ କାର୍ଯ୍ୟରେ ବ୍ରତୀ ହୋଇଥିଲି।"

—"ସେଇଥିପାଇଁ ସୈନ୍ୟବାହିନୀକୁ ଦୂରରେ ରଖି ସେମାନଙ୍କ ସହ ସୁଖଭୋଗ କରୁଥିଲ ?"

—"ସୁଖଭୋଗ ? ହୁଏତ।"

—"ତୁମେ ସେମାନଙ୍କୁ କଣ କହିଛ ?"

—"କହିଛି, ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ଶାନ୍ତ ରହିବାକୁ।"

—"ଚମତ୍କାର। ଏ କଥାର ଅର୍ଥ ମୋ ଅସ୍ତିତ୍ୱକୁ ଅବହେଳା କରିବା। ନୁହେଁ କି ?"

—"ଆପଣ ଅଯଥା ଉତ୍ତେଜିତ ହେଉଛନ୍ତି।"

ତିଷ୍ୟା କିଛିକ୍ଷଣ ନିର୍ବାକ ହୋଇ ଚାହିଁଲେ। ତା'ପରେ ନିମ୍ନ ସ୍ୱରରେ କହିଲେ, "ନା, ମୁଁ ଉତ୍ତେଜିତ ହେବିନାହିଁ। ଏଇ ଅପରାଧ ଅନ୍ୟ କେହି କରିଥିଲେ ମୁଁ ତାକୁ ପ୍ରାଣଦଣ୍ଡ ଦେଇଥାନ୍ତି। କିନ୍ତୁ ତୁମେ, ତୁମେ ତ ମୋର କଳ୍ପନା, ମୋର ସ୍ୱପ୍ନ, ମୋର ଆରାଧ୍ୟ। କୁମାର, ତୁମେ ଥରେମାତ୍ର କୁହ, ଥରେ ସମ୍ମତ ହୁଅ, ଆମେ ପୃଥିବୀର ଶ୍ରେଷ୍ଠ ଦମ୍ପତି ହୋଇପାରିବା। ତୁମେ ସମ୍ମତ ହେଲାମାତ୍ରେ ମୋ ଇସାରାରେ ଘାତକ ସମ୍ରାଟଙ୍କୁ ପୃଥିବୀରୁ ହଟେଇ ଦେବ। ସେତେବେଳେ ତୁମେ ହେବ ସମ୍ରାଟ, ମୋର ପ୍ରିୟ ଦେବତା। କୁମାର, ତୁମେ ସମ୍ମତ ହୁଅ।

—"ଜନନୀ, ମୋତେ ଅନୁମତି ଦିଅନ୍ତୁ, ଏ ସ୍ଥାନ ପରିତ୍ୟାଗ ପାଇଁ।"

—"କିଏ ଜନନୀ ? କାହାର ଜନନୀ ? ନିର୍ବୋଧ ଭଳି କଥା କୁହ ନାହିଁ। ପୃଥିବୀର ଶ୍ରେଷ୍ଠ ନାରୀ ତୃଷିତ ହୃଦୟରେ ତୁମ ପାଖରୁ ଅମୃତ ଭିକ୍ଷା କରୁଛି। ସେଠାରେ କୌଣସି କଳ୍ପିତ ସମ୍ପର୍କ ପ୍ରତିବନ୍ଧକ ହୋଇ ନ ପାରେ। ଆସ, ମୋତେ ଗ୍ରହଣ କର।"

ରାଜକୁମାର ନିମ୍ନ ସ୍ୱରରେ କହିଲେ, "ଅଧମ୍ମୋ ନିରୟଂ ନେତି ଧମ୍ମୋ ପାପେତି ସୁଗତିଂ। ଜନନୀ, ଅଧର୍ମ ଚିରକାଳ ନରକ ଭୋଗ କରାଏ। ଧର୍ମ ହିଁ ସୁଖ, ଧର୍ମ ହିଁ ସ୍ୱର୍ଗ।"

ଦୁଇକର୍ଣ୍ଣ ଆବୃତ କଲେ ସାମ୍ରାଜ୍ଞୀ। ତା'ପରେ ଚିତ୍କାର କରି ଉଠିଲେ, "ଯାଅ, ଚାଲିଯାଅ ମୋ ସମ୍ମୁଖରୁ। କିନ୍ତୁ ମନେରଖ, ମୁଁ ତୁମକୁ ଶାସ୍ତି ଦେବି। ଯେଉଁ ଦୁଇ ହାତରେ ତୁମେ କାଞ୍ଚନମାଳାକୁ ଆଲିଙ୍ଗନ କରିଛ, ସେଇ ଦୁଇହାତ କର୍ତ୍ତନ କରିବ ଘାତକ। ରାଜାଜ୍ଞା ଅମାନ୍ୟ କରିବାର ଶାସ୍ତି।"

ରାଜକୁମାର ମସ୍ତକ ଉତ୍ତୋଳିତ କଲେ। ତଥାଗତଙ୍କୁ ସ୍ମରଣ କରି ନିଜକୁ ଶାନ୍ତ କଲେ। ତା'ପରେ ସ୍ମିତ ମୁଖରେ ଉଚ୍ଚାରଣ କଲେ, "ତଥାଗତ ଆପଣଙ୍କର କଲ୍ୟାଣ କରନ୍ତୁ ଜନନୀ।"

ପାଟଳିପୁତ୍ରର ନାଗରିକମାନେ ସ୍ତବ୍ଧ ! ବିସ୍ମୟ ବିମୂଢ଼ !! ରାଜକୁମାରଙ୍କ ଦୁଇହାତ କର୍ତ୍ତନ କରିଛି ଘାତକ !!! ସେ କୌଣସି ପ୍ରତିବାଦ କରିନାହାଁନ୍ତି। ତେବେ ଘାତକ ଯେତେବେଳେ କହିଥିଲା, "ମୁଁ ସାମ୍ରାଜ୍ଞୀଙ୍କ ଆଦେଶ ପାଳନ କରିବାକୁ ବାଧ୍ୟ ହେଉଛି। ମୋତେ ମାର୍ଜନା କରିବେ।" ରାଜକୁମାର ତାକୁ କହିଥିଲେ, "ମୁଁ ତୁମ ପାଇଁ ତଥାଗତଙ୍କ ନିକଟରେ ପ୍ରାର୍ଥନା କରିବି।"

ଯନ୍ତ୍ରଣାକାତର ରାଜକୁମାରଙ୍କୁ କାଞ୍ଚନମାଳା ସେବା କରୁଛନ୍ତି। ରାଜବୈଦ୍ୟ ତାଙ୍କ କ୍ଷତ ସୁସ୍ଥ କରିବା ପାଇଁ ଔଷଧ ଦେଉଛନ୍ତି। ସମଗ୍ର ସାମ୍ରାଜ୍ୟରେ ମହାରାଣୀଙ୍କ ବିରୁଦ୍ଧରେ ଅସନ୍ତୋଷ ବ୍ୟାପି ଯାଇଛି। ଏପରିକି ଯେଉଁସବୁ ନାରୀ ସାମ୍ରାଜ୍ଞୀଙ୍କ ବକ୍ତୃତା ଶୁଣି ଉଦ୍‌ବୁଦ୍ଧ ହୋଇଥିଲେ, ତାଙ୍କୁ ସେମାନଙ୍କ ପ୍ରତିନିଧି ଭାବିଥିଲେ, ସେମାନେ ମଧ୍ୟ କ୍ଷୁବ୍ଧ। କେହି କେହି ଅବଶ୍ୟ କହିବାକୁ ଚେଷ୍ଟା କଲେ, ବିଦ୍ରୋହୀମାନଙ୍କ ସହ ଯୋଗ ଦେଇ ରାଜକୁମାର ଉଚିତ କାର୍ଯ୍ୟ କରି ନାହାଁନ୍ତି ଏବଂ ସାମ୍ରାଜ୍ଞୀ ସେଇ କାରଣରେ ଏ ଶାସ୍ତି ଦେଇ କୌଣସି ଅନ୍ୟାୟ କରିନାହାଁନ୍ତି। କାରଣ ରାଜ୍ୟବାସୀଙ୍କ ମନରେ ଭୟ ସୃଷ୍ଟି ନ କଲେ ରାଜ୍ୟ ଶାସନ କରିହୁଏ ନାହିଁ। ସାମ୍ରାଜ୍ଞୀ ଦେଖେଇ ଦେଲେ, ସେ ପ୍ରୟୋଜନ ବୋଧହେଲେ ଆତ୍ମୀୟମାନଙ୍କୁ ମଧ୍ୟ କ୍ଷମା କରନ୍ତି ନାହିଁ।

କିନ୍ତୁ ଏଭଳି ଲୋକଙ୍କ ସଂଖ୍ୟା ଥିଲା ଅଳ୍ପ। ବୌଦ୍ଧଭିକ୍ଷୁଗଣ ଆତ୍ମଗୋପନ କରିବାକୁ ଆରମ୍ଭ କଲେ। ରାଜ୍ୟରେ ପ୍ରଚାରିତ ହେଲା, ସାମ୍ରାଜ୍ଞୀ ବୌଦ୍ଧମାନଙ୍କୁ କ୍ଷମା କରିବେ ନାହିଁ। ଏ ଜନରବ ଲୋକମାନଙ୍କୁ ଭୀତ କଲା। ଏଇ ଭୀତିରୁ ଜନ୍ମନେଲା ପ୍ରତିହିଂସାର ପ୍ରବଣତା। ରାଜଧାନୀର ବିଭିନ୍ନ ସ୍ଥାନରେ ସୈନ୍ୟମାନଙ୍କ ସହ ଜନସାଧାରଣଙ୍କ ସଂଘାତ ଆରମ୍ଭ ହେଲା। ଆଉ ସେଇ କାରଣରୁ ସାମ୍ରାଜ୍ଞୀ ନିର୍ଦ୍ଦେଶ ଜାରି କଲେ, ସବୁପ୍ରକାର ସଭାସମିତି ନିଷିଦ୍ଧ। ସନ୍ଧ୍ୟାପରେ ରାଜପଥରେ ସାଧାରଣ ନାଗରିକମାନଙ୍କ ଚଳପ୍ରଚଳ ବନ୍ଦ। ସ୍ୱାଭାବିକ କାରଣରୁ ରାଜଧାନୀରେ ସେତେବେଳେ ବୌଦ୍ଧ ଏବଂ ବ୍ରାହ୍ମଣ୍ୟଧର୍ମର ପ୍ରତିନିଧିମାନେ ଦ୍ୱିଧାବିଭକ୍ତ। ଅତଏବ ସାମ୍ରାଜ୍ଞୀଙ୍କ ନିକଟକୁ ସମ୍ବାଦ ଆସିଲା, ରାଜକୁମାର ସାରା ରାଜ୍ୟରେ ବିଦ୍ରୋହର ପ୍ରସ୍ତୁତି କରୁଛନ୍ତି।

ସିଂହାସନରେ ଅଧିଷ୍ଠିତ ହେବା ପରେ ପ୍ରାୟ ଅଠର ଦିନ ଗତ ହେଲାଣି। ପ୍ରତିଟି ମୁହୂର୍ତ୍ତ ଏବେ ତିଷ୍ୟାଙ୍କର କଟୁଛି ଅସ୍ୱସ୍ତିରେ। ଯେଉଁ କାରଣରୁ ଏତେ ପରିକଳ୍ପନା ତା' କୌଣସିମତେ ରୂପ ପାଉ ନାହିଁ। କୁମାରଙ୍କୁ ନ ପାଇଲେ ତାଙ୍କ ବଞ୍ଚି ରହିବା ବୃଥା। ସେ ଜାଣନ୍ତି, ତାଙ୍କ ହାତରେ ଆଉ ଅଧିକ ସମୟ ଅବଶିଷ୍ଟ ନାହିଁ। ଇଆଡ଼େ ଖଲ୍ଲାତକ ବ୍ୟସ୍ତ ହୋଇ ପଡ଼ିଲେଣି ତାଙ୍କ ଅଭିଯାନ ପାଇଁ। ସାମ୍ରାଜ୍ଞୀ ତାଙ୍କୁ ଅପେକ୍ଷା କରିବାକୁ ବାଧ କରିଛନ୍ତି। କାରଣ ରାଜ୍ୟରେ ବର୍ତ୍ତମାନ ସ୍ଥିତି ଅସ୍ଥିର। ସାମ୍ରାଜ୍ଞୀଙ୍କ ଆଶଙ୍କା, ଯେ କୌଣସି ଦିନ ଖଲ୍ଲାତକ ବିଦ୍ରୋହୀମାନଙ୍କ ସହ ଯୋଗ ଦେଇ ପାରେ। ବୀତଶୋକ କିନ୍ତୁ ଅତ୍ୟନ୍ତ ଶାନ୍ତ। ସେ ଅପେକ୍ଷା କରିଛନ୍ତି ଚୂଡ଼ାନ୍ତ ସମୟକୁ। ବର୍ତ୍ତମାନ ମହାରାଣୀଙ୍କ ପ୍ରାସାଦ ଅତ୍ୟନ୍ତ ସୁରକ୍ଷିତ। ବିନା ଅନୁମତିରେ କେହି ସେଠାରେ ପ୍ରବେଶ କରି ପାରିବେ ନାହିଁ।

ଏକବିଂଶ ଦିବସର ଅପରାହ୍ନରେ ମହାରାଣୀ ପୁଣି ରାଜକୁମାରଙ୍କୁ ଡାକି ପଠାଇଲେ। ସେତେବେଳେ ସୁଦ୍ଧା ରାଜକୁମାରଙ୍କ ଅସୁସ୍ଥତା ଦୂର ହୋଇନାହିଁ। କିନ୍ତୁ ପ୍ରହରୀ ତାଙ୍କୁ ପ୍ରାସାଦକୁ ନେଇଆସିଲା। ତିଷ୍ୟା ଆଜି ବିନ୍ଦୁମାତ୍ର ପ୍ରସାଧନ କରିନାହାଁନ୍ତି। କିମ୍ବା କୁହାଯାଇପାରେ ଆଜି ତାଙ୍କୁ ଯୋଗିନୀ ଭଳି ଦେଖାଯାଉଛି। ଯେଉଁ ଯୋଗିନୀର ରୂପ ସ୍ତମୀତ ଅଗ୍ନିଭଳି ବିଭ୍ରାନ୍ତ କରେ, ଦହନ କରେ; କିନ୍ତୁ ଦୃଶ୍ୟତଃ ଅଦୃଶ୍ୟ ରହେ। ରାଜକୁମାରଙ୍କୁ ଆଜି ଅପେକ୍ଷାକୃତ କୃଶ ଦେଖାଯାଉଥିଲା। ତାଙ୍କ ଆଖିତଳେ ଅନ୍ଧକାରର ଛାୟା। ତାଙ୍କୁ ଦେଖିବାମାତ୍ରେ ତିଷ୍ୟା ପାଗଳିନୀ ପରି ଛୁଟିଗଲେ। ତାଙ୍କ କଣ୍ଠ ରୁଦ୍ଧ ହେଲା। ଥରଥର ହୋଇଉଠିଲା ଅଧର। ଦୁଇଆଖି ହେଲା ଶ୍ରାବଣର ଆକାଶ। ସେ ନିଜ ମନେମନେ କହିଉଠିଲେ, "ଏହା ମୁଁ ଚାହିଁନଥିଲି, ଆଦୌ ଚାହିଁନଥିଲି।" ତା'ପରେ ଆତ୍ମସମ୍ବରଣ କରି କହିଲେ, "କେମିତି ଅଛ କୁମାର ?"

"ତଥାଗତଙ୍କ କରୁଣାରେ ମୁଁ ତାଙ୍କ ଉପାସନା କରି ପାରୁଛି।"

ତିଷ୍ୟା ଚମକି ଉଠିଲେ। କି ପ୍ରଶାନ୍ତି ଭରି ରହିଛି ଏ କଣ୍ଠସ୍ୱରରେ! ସେ ଦୁଇହାତରେ ଚକ୍ଷୁ ଆବୃତ କଲେ, "ମୋତେ କ୍ଷମା କର, କୁମାର! ପ୍ରତ୍ୟାଖ୍ୟାନର ଜ୍ୱାଳା ମୁଁ ସହି ପାରିନି। ମୋର ସମସ୍ତ ଶରୀରରେ ବର୍ତ୍ତମାନ ଜ୍ୱାଳା, ଏ ଜ୍ୱାଳା ତୁମେ ହିଁ କେବଳ ଦୂର କରିପାର। ନା, ନା, ତଥାଗତଙ୍କ ନାମ ମୋର ଏ ଜ୍ୱାଳା ଦୂର କରିପାରିବ ନାହିଁ। କେବଳ ତୁମେ ହିଁ ପାରିବ, ତୁମେ—।"

ରାଜକୁମାର କୌଣସି ଉତ୍ତର ଦେଲେ ନାହିଁ। ତିଷ୍ୟା ସଚକିତ। ହାତ ଘୁଞ୍ଚେଇନେଲେ ଆଖି ଉପରୁ। ତା'ପରେ ପରମ ଆର୍ତ୍ତିରେ ଆଗେଇ ଆସିଲେ ରାଜକୁମାରଙ୍କ ନିକଟକୁ, "କୁମାର, ଆଉ ତୁମେ ମୋତେ ନା କୁହନାହିଁ। ତୁମର ଦୁଇଟିଯାକ ହାତ ନାହିଁ। ସେଥିରେ କିଛି ଯାଏ ଆସେନା। କୌଣସି କ୍ଷତି ହେବନାହିଁ ସେଥିରେ, କାରଣ ତୁମେ ମୋର ଦୁଇ ହାତରେ ପୃଥିବୀକୁ ସ୍ପର୍ଶ କରିବ। ମୋ ଛାତିରେ ମୁଣ୍ଡ ରଖିଲେ ମୁଁ ଶାନ୍ତି ପାଇବି, ତୁମେ ମଧ୍ୟ ଶାନ୍ତ ହେବ। କୁମାର, ମୁଁ ତୁମକୁ ଯେଉଁ ସୁଖ ଦେବି, ତା' ଦେବତାମାନେ ମଧ୍ୟ ପାଇନାହାଁନ୍ତି।"

—"ଜନନୀ, ମୁଁ ଜାଣେନା କାହିଁକି ଆପଣ ମତିଭ୍ରଷ୍ଟା। ମୋତେ ବିଦାୟ ଦିଅନ୍ତୁ।"

—"ଓଃ, ତୁମେ ପୁଣି ମୋତେ ପ୍ରତ୍ୟାଖ୍ୟାନ କରୁଛ? ହଁ, ମୁଁ ଜାଣେ ଏସବୁ ତୁମର ସେଇ କାଞ୍ଚନମାଳାର ପ୍ରରୋଚନା। କଣ ଅଛି ତାର? ମୋଠୁଁ ସେ କଣ ଅଧିକ ସୁନ୍ଦରୀ?"

—"ତାର କିଛି ନାହିଁ। କିନ୍ତୁ କାଞ୍ଚନ ଜାୟା ଆଉ ଆପଣ ଜନନୀ।"

—"ଆଃ! ମୁଁ ମାନେ ନାହିଁ, ଏଇସବୁ କଳ୍ପିତ ସମ୍ପର୍କର କୌଣସି ମୂଲ୍ୟ ନାହିଁ ମୋ ନିକଟରେ।"

—"କିନ୍ତୁ ଆପଣ କାହିଁକି ଅନ୍ଧ ହେଉଛନ୍ତି? ଆପଣ କଣ ଜାଣନ୍ତି ନାହିଁ ପ୍ରଜାମାନେ ଆପଣଙ୍କ ବ୍ୟବହାରରେ କ୍ରମଶଃ ଉତ୍ତେଜିତ ହୋଇ ପଡ଼ିଛନ୍ତି। ଆଉ ସେମାନେ ଯଦି ଏଇ ପ୍ରସ୍ତାବ କଥା ଜାଣିପାରନ୍ତି—ନା, ନା, ଜନନୀ, ଆପଣ ଶାନ୍ତ ହୁଅନ୍ତୁ। ତଥାଗତ ନିଶ୍ଚୟ ମୋତେ ଶକ୍ତି ଦେବେ ବଞ୍ଚି ରହିବା ପାଇଁ। କିନ୍ତୁ ଆପଣଙ୍କୁ ଅନୁରୋଧ, ଆଉ ଏଭଳି ଶବ୍ଦାବଳୀ ଉଚ୍ଚାରଣ କରିବେ ନାହିଁ।"

—"ସତରେ! ତୁମେ ମୋତେ ଭୟ ଦେଖଉଛ କୁମାର? ମୁଁ ଭୀତ ନୁହେଁ। ମୋର ଯାହା ପ୍ରୟୋଜନ ତା ମାଗିବାକୁ ମୁଁ ବିନ୍ଦୁମାତ୍ର ଲଜ୍ଜିତ ନୁହେଁ। କିନ୍ତୁ ମୋର ମନେ ହେଉଛି, ପ୍ରଜାମାନଙ୍କର ଏ ଉତ୍ତେଜନାରେ ତୁମେ ହିଁ ଇନ୍ଧନ ଯୋଗାଉଛ। ତୁମେ ଶ୍ରାବସ୍ତୀର ବିଦ୍ରୋହୀମାନଙ୍କ ସହ ଯୋଗ ଦେଇଥିଲ। ତୁମେ ହିଁ ପାଟଳିପୁତ୍ରର ନାଗରିକମାନଙ୍କୁ ଉତ୍ତେଜିତ କରୁଛ। କୁମାର, ଏ ସବୁ ତ ତୁମର। ଏଇ ସାମ୍ରାଜ୍ୟ, ସମ୍ମାନ, ଏଇ ଭୂମି, ମୋ ଶରୀର ଏବଂ ମୋ ହୃଦୟ। ତୁମ ସ୍ଥାନକୁ ତୁମେ ଚାଲିଆସ। କି ପ୍ରୟୋଜନ ବିଭେଦରେ?" ଚାତକୀ ଭଳି ଚାହିଁଲେ ତିଷ୍ୟା।

—"ଆପଣ, ଆପଣ ଉନ୍ମାଦିନୀ!"

—"କଣ! ମୁଁ ଉନ୍ମାଦିନୀ? ପୁଣି ସେଇ ଏକା ଶବ୍ଦ ଉଚ୍ଚାରଣ କଲ? ବେଶ୍, ଯେଉଁ ଆଖିରେ କାଞ୍ଚନମାଳାକୁ ଦେଖି ତୁମେ ତାର ପ୍ରେମରେ ଅନ୍ଧ ହୋଇଛ, ସେଇ ଆଖି ତୁମେ ହରାଇବ।" ମହାରାଣୀ ଚିତ୍କାର କରି ଉଠିଲେ, "ସୁପ୍ପବାସା, ଘାତକକୁ ଆଦେଶ ଦେ, ରାଜଦ୍ରୋହ ଅପରାଧରେ ରାଜକୁମାରଙ୍କ ଦୁଇ ଆଖିରେ ତପ୍ତ ଲୌହ ଶଳାକା ବିଦ୍ଧ କରି ତାଙ୍କୁ ଅନ୍ଧ କରି ଦେବାକୁ ପଡ଼ିବ।"

ରାଜକୁମାର ଆତଙ୍କ ଏବଂ ବିସ୍ମୟରେ ଚିତ୍କାର କରି ଉଠିଲେ, ''ଜନନୀ !''

''ନା, ଆଉ ସେ ଶବ୍ଦ ତୁମ ମୁହଁରୁ ମୁଁ ସହ୍ୟ କରି ପାରିବି ନାହିଁ। ତୁମେ ଥରେ ମାତ୍ର ମୋ ନାମ ଧରି ଡାକ, ମୁଁ ଆଦେଶ ପ୍ରତ୍ୟାହାର କରୁଛି।'' ରାଜକୁମାରଙ୍କ ଛାତି କହି ଉଠିଲା, ''ଅସମ୍ଭବ।''

ଖଲ୍ଲାତକ ଯୁଦ୍ଧଯାତ୍ରା ପାଇଁ ଅନୁମତି ପାଇଲେ। କିନ୍ତୁ ତା' ଏଭଳି ସମୟରେ ମିଳିଲା, ଯେତେବେଳେ ସୈନ୍ୟଦଳରେ ମଧ୍ୟ ଅସନ୍ତୋଷ ସଞ୍ଚରି ଯାଇଛି। ଯୁଦ୍ଧ କରିବାକୁ ପଡ଼ିବ ବୋଲି ସେମାନେ ମୂଳରୁ ହିଁ ଅସନ୍ତୁଷ୍ଟ ଥିଲେ। ବର୍ତ୍ତମାନ ସାମ୍ରାଜ୍ଞୀଙ୍କ ଅତ୍ୟାଚାର ବର୍ଣ୍ଣନା ସେମାନଙ୍କ ଅସନ୍ତୋଷ ବୃଦ୍ଧି କରିଛି। କିନ୍ତୁ ଖଲ୍ଲାତକ ଦୁର୍ଭାବନାଗ୍ରସ୍ତ। ମହାରାଣୀ ଯେଉଁ ଘୋଷଣା କରିଛନ୍ତି, ସେଥିରେ ସ୍ପଷ୍ଟ ଉଲ୍ଲେଖ କରା ହୋଇଛି, ଦୀର୍ଘକାଳ ଧରି ଖଲ୍ଲାତକ ରାଜ୍ୟର ସୀମା ବୃଦ୍ଧି କରିବାକୁ ଚାହୁଁଛନ୍ତି। ସମ୍ରାଟଙ୍କ ଆପତ୍ତିରେ ତାହା ସମ୍ଭବ ହୋଇନାହିଁ। ବୀତଶୋକ ଖଲ୍ଲାତକଙ୍କ ସମର୍ଥକ। ସାମ୍ରାଜ୍ଞୀ ଖଲ୍ଲାତକଙ୍କର ସେଇ ଇଚ୍ଛା ପ୍ରତି ସମ୍ମାନ ଦେଇଛନ୍ତି ଯୁଦ୍ଧଯାତ୍ରା ପାଇଁ ଅନୁମତି ମାଧ୍ୟମରେ। ଏଇ ଘୋଷଣା ଖଲ୍ଲାତକଙ୍କ ଇଚ୍ଛା ଏବଂ କାର୍ଯ୍ୟକୁ ଦିବାଲୋକ ଭଳି ସ୍ପଷ୍ଟ କରିଦେଇଛି। ବର୍ତ୍ତମାନ ଯୁଦ୍ଧଯାତ୍ରା ପାଇଁ ତାଙ୍କୁ ଯିବାକୁ ପଡୁଛି ଅସନ୍ତୁଷ୍ଟ ସୈନ୍ୟମାନଙ୍କୁ ବାଧ୍ୟ କରି। କାରଣ ସମ୍ରାଟଙ୍କ ପ୍ରତ୍ୟାଗମନ ସମୟ ପ୍ରାୟ ନିକଟ ହୋଇ ଆସିଲାଣି। ଇଆଡ଼େ ବୀତଶୋକ କୁଆଡ଼େ ଅସୁସ୍ଥ, ସେ ଗୃହରୁ ବାହାରୁ ନାହାଁନ୍ତି। ଏ ବ୍ୟାପାରଟା ମଧ୍ୟ ଭଲ ଲାଗୁନାହିଁ ଖଲ୍ଲାତକଙ୍କୁ। ବୀତଶୋକଙ୍କୁ ଅନ୍ତତଃ ସାଙ୍ଗରେ ଧରି ରାଜଧାନୀରୁ ବାହାରିବା ପ୍ରୟୋଜନ। ପ୍ରଜାମାନେ ଜାଣନ୍ତୁ, ସେ ଏକାକୀ ନୁହଁନ୍ତି, ରାଜଭ୍ରାତା ମଧ୍ୟ ତାଙ୍କ ସଙ୍ଗୀ। ଖଲ୍ଲାତକ ସିଧାସଳଖ ବୀତଶୋକଙ୍କ ଗୃହକୁ ଆସିଲେ।

ପରିଚାରକବୃନ୍ଦ ଖଲ୍ଲାତକଙ୍କୁ ଦେଖି ଭୀତ ହେଲେ। ଖଲ୍ଲାତକ କହିଲେ, ''ଶୀଘ୍ର ତୁମେ ପ୍ରଭୁଙ୍କୁ ସମ୍ବାଦ ଦିଅ। ମୁଁ ଅଧିକ ସମୟ ଏଠାରେ ରହିବି ନାହିଁ।''

ମୁଖ୍ୟ ପରିଚାରକ ବିନୀତ ସ୍ୱରରେ କହିଲା, ''ପ୍ରଭୁ ଯେ ଅତ୍ୟନ୍ତ ଅସୁସ୍ଥ।''

ଖଲ୍ଲାତକଙ୍କ ମନରେ ସନ୍ଦେହ ଜାତ ହେଲା, ''ତୁମେ ଦେଖିଛ ?''

ପରିଚାରକ ଦ୍ରୁତ ମୁଣ୍ଡ ହଲାଇଲା, ''ନା, ଶୁଣିଛି। ପ୍ରଭୁପତ୍ନୀ ସ୍ୱହସ୍ତରେ ପ୍ରଭୁଙ୍କ ସେବା କରୁଛନ୍ତି। ସେଠାରେ ଆମର ପ୍ରବେଶ ନିଷେଧ।''

—"ରାଜବୈଦ୍ୟ ଆସିଥିଲେ ?"

—"ନା।"

—"ତେବେ ମୁଁ ନିଜେ ତାଙ୍କୁ ଦେଖିବି। ମନ୍ତ୍ରୀ ଭାବରେ ତାହା ମୋର କର୍ତ୍ତବ୍ୟ। ତୁମେ ମୋତେ ପଥ ନିର୍ଦ୍ଦେଶ କର।" ଖଲ୍ଲାତକ ଚାଲିବା ଆରମ୍ଭ କଲେ।

ଭୀତ ପରିଚାରକ ମନ୍ତ୍ରୀ ଖଲ୍ଲାତକଙ୍କୁ ଉପେକ୍ଷା କରିବାକୁ ସାହସ କରିପାରିଲା ନାହିଁ। ସେ ଯୁକ୍ତକରରେ ଛୁଟି ଯିବାକୁ ଲାଗିଲା, ପଥ ନିର୍ଦ୍ଦେଶ କରି। ଖଲ୍ଲାତକଙ୍କ ଆଗମନବାର୍ତ୍ତା ନିଶ୍ଚୟ ପୂର୍ବରୁ ହିଁ ପହଞ୍ଚି ଯାଇଥିଲା। କାରଣ ଶୟନକକ୍ଷ ଦ୍ୱାରଦେଶରେ ପହଞ୍ଚି ଖଲ୍ଲାତକ ଦେଖିଲେ ବୀତଶୋକଙ୍କ ପତ୍ନୀ ଠିଆ ହୋଇଛନ୍ତି। ସେ ସମ୍ଭ୍ରମ ସହକାରେ କହିଲେ, "ରାଜବଧୂ, ବୀତଶୋକଙ୍କ ଅସୁସ୍ଥତାର ସମ୍ବାଦ ପାଇ ମୁଁ ଆସିଛି।"

ରାଜବଧୂ ଅସୂର୍ଯ୍ୟମ୍ପଶ୍ୟା ନୁହଁନ୍ତି। କିନ୍ତୁ ପରପୁରୁଷ ସହ ବାକ୍ୟାଳାପରେ ମଧ୍ୟ ଅନଭ୍ୟସ୍ତ। କିନ୍ତୁ ଏ କ୍ଷେତ୍ରରେ ସ୍ପଷ୍ଟ କହିଲେ, "ସେ ଦୁର୍ବଳ। ତା'ଛଡ଼ା ମୁଁ ଚାହେଁନା କେହି ତାଙ୍କ ସହ ସାକ୍ଷାତ କରନ୍ତୁ।"

—"କାରଣ ?"

—"ସେ ଅସୁସ୍ଥ।"

—"କିନ୍ତୁ ମହାରାଣୀ ଆମକୁ ବିପଦରେ ପକେଇଛନ୍ତି। ବୀତଶୋକଙ୍କ ସହ ପରାମର୍ଶ କରିବା ପ୍ରୟୋଜନ।"

—"ବିପଦ ?" ରାଜବଧୂଙ୍କୁ ଚିନ୍ତିତ ଦେଖାଗଲା।

—"ହଁ।"

କରୁଣ ସ୍ୱରରେ ରାଜବଧୂ ଜଣାଇଲେ, "ମନ୍ତ୍ରୀ, ଆପଣ ଯଦି ବାଧ କରନ୍ତି, ତେବେ ମୋର ଅନ୍ୟ କୌଣସି ପଥ ନାହିଁ। ମୋ ପତି ଅତ୍ୟନ୍ତ ତରଳମତି, ବିବାହ ପରେ ଏଇ ପ୍ରଥମଥର ତାଙ୍କୁ ଦୀର୍ଘ ସମୟ ଧରି ଗୃହରେ ପାଇଛି। ତେଣୁ—"

ଖଲ୍ଲାତକ ବହୁ କଷ୍ଟରେ ହାସ୍ୟ ସମ୍ବରଣ କଲେ। ତା'ପରେ କହିଲେ, "ଆପଣଙ୍କର ଆଶଙ୍କାର କୌଣସି କାରଣ ନାହିଁ।"

କକ୍ଷମଧ୍ୟକୁ ପ୍ରବେଶ କରି ଖଲ୍ଲାତକ ଦେଖିଲେ ବୀତଶୋକ ପଲଙ୍କରେ କମ୍ବଳ-ଆବୃତ ହୋଇ ଶୋଇଛନ୍ତି। ରାଜବଧୂ ଡାକିଲେ, "ମନ୍ତ୍ରୀ ଆସିଛନ୍ତି। କପଟତାରେ ଆଉ କୌଣସି ଲାଭ ନାହିଁ।" ତା'ପରେ ସେ ଗମ୍ଭୀର ମୁହଁରେ ପ୍ରସ୍ଥାନ କଲେ।

ସଙ୍ଗେ ସଙ୍ଗେ ଶଯ୍ୟାରେ ଉଠି ବସିଲେ ବୀତଶୋକ, "ଭାଇ ଖଲ୍ଲାତକ, ଏବେ ମୁଁ କରେ କଣ ?"

—"କଣ ହୋଇଛି ?" ଖଲ୍ଲାତକ ହତଭମ୍ବ ।

—"ଏ ଯେ ସାକ୍ଷାତ ପିଶାଚୀ । ନଚେତ କଣ ରାଜକୁମାରଙ୍କ ହସ୍ତଚ୍ଛେଦ କରିଥାନ୍ତା, ଚକ୍ଷୁ ଉତ୍ପାଟନ କରିଥାନ୍ତା ? କେହି କେହି କହୁଛନ୍ତି ଏବେ କୁଆଡ଼େ ସେ ତାଙ୍କ ଜିହ୍ୱା କର୍ତ୍ତନ କରିବ ।" ଆତଙ୍କିତ ଗଳାରେ କହିଲେ ବୀତଶୋକ ।

—"ସେଥିରେ ତୁମର କଣ ଯାଏ ଆସେ ?"

—"ମୋର ?" କଣ୍ଠସ୍ୱର ନିମ୍ନ କଲେ ବୀତଶୋକ, "ମୁଁ ଯେ ଟିକେ ଭିନ୍ନ ଆଖିରେ ଚାହିଁଥିଲି ସେ ରମଣୀ ଆଡ଼କୁ ।"

—"ଭିନ୍ନ ଆଖି ?"

ପୁଣିଥରେ ଦ୍ୱାରଦେଶ ଆଡ଼କୁ ତ୍ରସ୍ତ ଦୃଷ୍ଟି ପହଁରେଇ ଆଣିଲେ ବୀତଶୋକ, "ଅଭ୍ୟାସ ଯେ, ମୁଁ କଣ କରିବି ? ତୁମେ ସର୍ପିଣୀ କହିଥିଲ, ତଥାପି ମନ ମାନିନି । ବର୍ତ୍ତମାନ ରାଜକୁମାରଙ୍କୁ ଯଦି ଏଇ ଶାସ୍ତି ଦେଇ ପାରନ୍ତି ତେବେ ମୋର କି ଦୁର୍ଦ୍ଦଶା ହେବ ! ମୋତେ ହୁଏତ ଉତପ୍ତ ତୈଳ କଟାହରେ ନିକ୍ଷେପ କରିବ । କି ଭୟାନକ !" ତା'ପରେ ସ୍ୱର ପରିବର୍ତ୍ତନ କରି ପ୍ରଶ୍ନ କଲେ, "ରାଜକୁମାରଙ୍କ ଏ ଦଶା କାହିଁକି ହେଲା କୁହ ତ ? ସେ ତ ତଥାଗତଙ୍କ ଭିନ୍ନ ଅନ୍ୟ କିଛି ଜାଣି ନ ଥିଲେ । ସମ୍ପର୍କରେ ମଧ୍ୟ ଜନନୀ, ତେବେ ମତିଭ୍ରଷ୍ଟ ହୋଇ କିଛି କହିପକେଇ ଥିଲେ କି ? ସେମାନେ ବହୁକାଳ ପୂର୍ବେ ଫଲ୍‌ଗୁ ନଦୀ କୂଳରେ ଏକ ଅରଣ୍ୟରେ ରାତି ବିତେଇ ଥିଲେ । ତେବେ ଏସବୁ ହୋଇଛି କାହିଁକି ? ଶୁଣିଛି, ନାଗରିକଗଣ ଖୁବ୍ କ୍ଷିପ୍ତ ।"

ଖଲ୍ଲାତକ ମୁଣ୍ଡ ହଲେଇଲେ, "ଏ ବିଷୟରେ ଗବେଷଣା କଲା ଭଳି ସମୟ ବର୍ତ୍ତମାନ ମୋର ନାହିଁ । ମହାରାଣୀ ପ୍ରକାଶ୍ୟରେ ଘୋଷଣା କରିଛନ୍ତି ତୁମର ଏବଂ ମୋର ଦୀର୍ଘକାଳର ଇଚ୍ଛାନୁଯାୟୀ ସେ ଯୁଦ୍ଧଯାତ୍ରା ପାଇଁ ଅନୁମତି ଦେଉଛନ୍ତି । ଯେମିତି ତାଙ୍କର ବିନ୍ଦୁମାତ୍ର ବାସନା ନ ଥିଲା । ଇଆଡ଼େ ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନର ସମୟ ହୋଇ ଆସିଲାଣି । ତୁମେ ସାଙ୍ଗରେ ନ ରହିଲେ ସୈନ୍ୟମାନଙ୍କୁ ନେଇ ସୁସଂହତ ଭାବରେ ଯାତ୍ରା କରିବା ଅସମ୍ଭବ । ମହାରାଣୀ ଯାହା କରିଛନ୍ତି ସେଥିରେ ଆମର ସଙ୍ଗେ ସଙ୍ଗେ ଯୁଦ୍ଧଯାତ୍ରା କରିବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।"

ବୀତଶୋକ କହିଲେ, "ମୁଁ ଯୁଦ୍ଧ କରିବି ନାହିଁ ।"

"ମାନେ ?" ହତବାକ ହେଲେ ଖଲ୍ଲାତକ ।

"ମୁଁ ବୌଦ୍ଧ । ରକ୍ତପାତରେ ବିଶ୍ୱାସ କରେ ନାହିଁ ।"

ବହୁକଷ୍ଟରେ କ୍ରୋଧ ସମ୍ବରଣ କଲେ ଖଲ୍ଲାତକ । ତା'ପରେ କହିଲେ, "ମହାରାଣୀ ଜଣାଇଛନ୍ତି, ଆମେ ଦୁଇଜଣ ଯଦି ଯୁଦ୍ଧଯାତ୍ରା ନ କରନ୍ତି ତେବେ ଆମ ଅବସ୍ଥା ରାଜକୁମାରଙ୍କଠାରୁ ମଧ୍ୟ ଖରାପ ହେବ ।"

ବୀତଶୋକଙ୍କ ଚକ୍ଷୁ ବିସ୍ଫାରିତ। ମୁଖରୁ ବାକ୍ୟ ନିଃସରଣ ହେଲା ନାହିଁ। ସୈନ୍ୟବାହିନୀଙ୍କୁ ନେଇ ଖଲ୍ଲାତକ ଏବଂ ବିମର୍ଷ ବୀତଶୋକ ରାଜଧାନୀରୁ ଚାଲିଗଲେ। ଦୀର୍ଘକାଳ ପରେ ସାଧାରଣ ଲୋକେ ସଭୟରେ ସୈନ୍ୟମାନଙ୍କୁ ଦେଖିଲେ। ସେମାନେ ରକ୍ତପାତ କରିବାକୁ ଯାଉଛନ୍ତି ବୋଲି ଧିକ୍କାର ଦେଲେ। ଏହାର ପ୍ରତିକ୍ରିୟା ହେଲା ସୈନ୍ୟମାନଙ୍କ ମଧ୍ୟରେ। ସେମାନେ ସ୍ଥିର କଲେ, ସୁଯୋଗ ପାଇଲାମାତ୍ରେ ଦଳତ୍ୟାଗ କରିବେ। ବର୍ତ୍ତମାନ ରାଜଧାନୀର ପଥରେ ସାଧାରଣ ଲୋକମାନଙ୍କର ସ୍ୱଚ୍ଛନ୍ଦ ବିଚରଣ ନାହିଁ। ପ୍ରହରୀ ଏବଂ ଜନସାଧାରଣଙ୍କ ଲୋକ ମଧ୍ୟରେ ସଂଘାତ ହେଉଛି ସର୍ବତ୍ର। ରାଜକୁମାରଙ୍କ ଅନ୍ଧତ୍ୱ ପ୍ରାପ୍ତିର ସମ୍ବାଦ ସମଗ୍ର ସାମ୍ରାଜ୍ୟରେ ସଂଚରିତ ହୋଇଛି। ଯେଉଁ ଘାତକ ଏହି କାର୍ଯ୍ୟଟି ପାଇଁ ଦାୟୀ, ସେ ନିହତ ହୋଇଛି ଇତି ମଧ୍ୟରେ। ସମଗ୍ର ସାମ୍ରାଜ୍ୟରେ ବର୍ତ୍ତମାନ ବିଶୃଙ୍ଖଳା। ସର୍ବତ୍ର ବୌଦ୍ଧମାନେ ବିଦ୍ରୋହ ଘୋଷଣା କରିଛନ୍ତି।

ମହାରାଣୀଙ୍କ କ୍ଷମତା ଗ୍ରହଣ ପରେ ବୌଦ୍ଧମାନଙ୍କ ସ୍ଥାନରେ ନିଷ୍କ୍ରିୟ ଅବୌଦ୍ଧମାନେ ଯୋଗ ଦେଇଥିଲେ। ପ୍ରତିହିଂସା ନିବୃତ୍ତ କରିବାର ସୁଯୋଗକୁ ସେମାନେ କାର୍ଯ୍ୟରେ ଲଗାଇବେ ବୋଲି ଭାବିଥିଲେ। କିନ୍ତୁ ରାଜକୁମାରଙ୍କୁ ଅନ୍ଧ କରିଦେବା ସମ୍ବାଦରେ ସେମାନଙ୍କ ମଧ୍ୟରେ ବି ପ୍ରତିକ୍ରିୟା ସୃଷ୍ଟି ହେଲା। ଏବଂ ଏଇ ଗୋଟିଏ ଘଟଣା ବୌଦ୍ଧ ଏବଂ ଅବୌଦ୍ଧଙ୍କୁ ଏକତ୍ରିତ କରିଦେଲା। ବର୍ତ୍ତମାନ ଯେକୌଣସି ମୁହୂର୍ତ୍ତରେ ମହାରାଣୀଙ୍କ ପ୍ରାସାଦ ଆକ୍ରାନ୍ତ ହୋଇପାରେ। ସୁପ୍ପବାସାର ଅନୁରୋଧରେ କେତେକ ପ୍ରହରୀ ତାଙ୍କ ପ୍ରାସାଦ ରକ୍ଷା କରୁଛନ୍ତି। ମହାରାଣୀ ପ୍ରକୃତରେ ଅସ୍ଥିର।

ଅନ୍ଧ ଏବଂ ପଙ୍ଗୁ ରାଜକୁମାର ସେତେବେଳେ ରାଜଗୃହର ବୈଭାର ପର୍ବତର ନିମ୍ନ ଦେଶରେ ସପ୍ତପର୍ଣ୍ଣୀ ଗୁମ୍ଫାରେ ଆଶ୍ରୟ ନେଇଛନ୍ତି। ସେଠାରେ ଏକଦା ମହାକାଶ୍ୟପ ଅବସ୍ଥାନ କରୁଥିଲେ। ସେ ଅସୁସ୍ଥ ହେବାରୁ ସ୍ୱୟଂ ତଥାଗତ ତାଙ୍କୁ ଦେଖିବାକୁ ଆସିଥିଲେ। ତପୋଦାରେ ସ୍ନାନ ସାରି ରାଜକୁମାର ସେଠାରେ ବସି ତଥାଗତଙ୍କ ଉପାସନା କରୁଥିଲେ ଜଗତ୍‌ବିସ୍ମୃତ ହୋଇ। ସେଠାରେ ହିଁ ବିମ୍ବିସାରଙ୍କ ପୁତ୍ର ଅଜାତଶତ୍ରୁ ତଥାଗତଙ୍କ ପ୍ରତି ପ୍ରଚଣ୍ଡ ବୈରଭାବାପନ୍ନ ହେବା ସତ୍ତ୍ୱେ ଏକ ସମୟରେ ତାଙ୍କ ହୃଦୟ ପରିବର୍ତ୍ତନ ହୋଇଥିଲା। ତେବେ ମହାରାଣୀଙ୍କ ପ୍ରତି ତଥାଗତ କାହିଁକି ଏବେ ସୁଦ୍ଧା ସଦୟ ହେଉ ନାହାଁନ୍ତି? ରାଜକୁମାର କେବଳ ଗୋଟିଏ ପ୍ରାର୍ଥନା କରୁଥିଲେ, "ଚିତ୍ତର ମୁକ୍ତି ଏବଂ ତୃଷ୍ଣାର କ୍ଷୟ ହେଉ।" ସେଦିନ କେବେ ଆସିବ, ଯେଉଁଦିନ ସେ ତଥାଗତଙ୍କ ଭଳି କହିପାରିବେ, 'ମୁଁ ଦେହରୂପ ଗୃହର ନିର୍ମାତାଙ୍କୁ ସନ୍ଧାନ

କରିଛି ଜନ୍ମାନ୍ତର ଧରି, କିନ୍ତୁ ତାଙ୍କ ଦର୍ଶନ ପାଇନାହିଁ। ବାରମ୍ବାର ଏ ସଂସାରକୁ ଆସିବା ସୁଖକର ନୁହେଁ। କିନ୍ତୁ ହେ ଗୃହକାରକ, ଏଥର ତୁମର ଦର୍ଶନ ପାଇଛି। ଏଇ ଦେହରୂପ ଗୃହ ତୁମେ ଆଉ ନିର୍ମାଣ କରିପାରିବ ନାହିଁ। ତୁମର ଗୃହନିର୍ମାଣର ଉପକରଣ ନଷ୍ଟ ହୋଇଛି। କାରଣ ମୋ ଚିତ୍ତ ସଂସ୍କାର ମୁକ୍ତ ଏବଂ ତୃଷ୍ଣା ଲୁପ୍ତ।'

ରାଜକୁମାର ଉପାସନାରେ ଉପବିଷ୍ଟ। ତାଙ୍କ ଅନ୍ଧନୟନରେ ଅଶ୍ରୁ। ସମୁଦ୍ରସ୍ଥ ବାରିରାଶି ଯେମିତି ସ୍ତମ୍ଭ ନିର୍ମାଣ ମାଧ୍ୟମରେ ଆକାଶକୁ ସ୍ପର୍ଶ କରିବାକୁ ଚାହେଁ ଏବଂ ସେଇକ୍ଷଣରେ ଆକାଶ ମଧ୍ୟ ସ୍ପର୍ଶର କାଙ୍ଗାଳ ହୋଇ ତଳକୁ ଓହ୍ଲେଇ ଆସେ ଆକର୍ଷଣରେ, ସେମିତି ଉପାସନା କାଳରେ ରାଜପୁତ୍ର ଏକ ଅନିର୍ବଚନୀୟ ପ୍ରେମାନୁଭୂତି ମାଧ୍ୟମରେ ତଥାଗତଙ୍କ ସାନ୍ନିଧ ପାଉଥିଲେ। ଏକାଗ୍ରମନରେ ତାଙ୍କ ନାମ ଉଚ୍ଚାରଣ କଲେ ହିଁ ଯେମିତି ପବିତ୍ର ସ୍ପର୍ଶ ମିଳେ! ରାଜକୁମାରଙ୍କ ହୃଦୟରେ କୌଣସି କ୍ଷୋଭ ନାହିଁ, କୌଣସି ଅଶାନ୍ତି ନାହିଁ, ପ୍ରତିହିଂସାର ଜ୍ୱାଳା ତ ଦୂର କଥା। ଜାଗତିକ ସମସ୍ତ ବୋଧ ବାହାରକୁ ସେ ଚାଲିଯାନ୍ତି ଉପାସନା ବେଳେ।

କିନ୍ତୁ ତାଙ୍କୁ ଏକାକୀ ରହିବାକୁ ଦେବା ପାଇଁ ଚାହିଁନାହାଁନ୍ତି ବୌଦ୍ଧମାନେ। ଦୁଇଟି ଅଙ୍ଗହାନି ହେବା ସତ୍ତ୍ୱେ ରାଜକୁମାର ଜୀବିତ ଅଛନ୍ତି। ଏଇ ଅଙ୍ଗଚ୍ଛେଦର କାରଣ ସମ୍ପର୍କରେ ନାନା କଳ୍ପନା ଜଳ୍ପନା ଆରମ୍ଭ ହୋଇଛି ଜନସାଧାରଣଙ୍କ ମଧ୍ୟରେ। ଏବଂ ଜନରବ ସହିତ ସତ୍ୟଟି ମିଶିଯାଇଛି। ସମସ୍ତ ନାରୀପୁରୁଷ ଏକ ଯୋଗେ ଧିକ୍କାର ଦେଇଛନ୍ତି। ସନ୍ତାନତୁଲ୍ୟ ରାଜକୁମାରଙ୍କ ନିକଟରେ କାମୁକୀ ମହାରାଣୀଙ୍କ ଏ କୁପ୍ରସ୍ତାବର ଏକମାତ୍ର ଶାସ୍ତି ମୃତ୍ୟୁଦଣ୍ଡ। ବୃଦ୍ଧା ନାରୀମାନେ ଆତଙ୍କିତ; ଯୁବତୀମାନେ ଘୃଣାରେ ମୁହଁ ଫେରାଇଛନ୍ତି। କିନ୍ତୁ ପୁନର୍ବାର ଯେମିତି ଆକ୍ରମଣ ନ ହୁଏ, ସେଥିପାଇଁ ବୈଭାର ପର୍ବତ ଚତୁପାର୍ଶ୍ୱରେ ବୌଦ୍ଧମାନେ ସମବେତ ହୋଇଛନ୍ତି। ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ପୂର୍ବରୁ ଆଉ କୌଣସି ଦୁର୍ଘଟଣା ଘଟୁ—ଏହା ସେମାନେ ଚାହାଁନ୍ତି ନାହିଁ। ରାଜକୁମାରଙ୍କ ଅନୁମତି ବ୍ୟତୀତ ତାଙ୍କ ପାଖକୁ କାହାରି ଯିବା ନିଷିଦ୍ଧ।

ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ସମୟ ଆଗତପ୍ରାୟ। ଆଉ ମାତ୍ର ଗୋଟିଏ ଦିବସ ଏବଂ ଆଉ ରାତ୍ରି ଅବଶିଷ୍ଟ ଅଛି। ପ୍ରାସାଦରେ ତିଷ୍ୟା ଯେମିତି କଣ୍ଟକଶଯ୍ୟାରେ ଶାୟିତା! ପରାଜୟ ବର୍ତ୍ତମାନ ନିଶ୍ଚିତ ହୋଇ ଆସିଲାଣି। ସେ କଣ କରିବେ ଭାବି ପାରୁ ନ ଥିଲେ।

ଏଇ ସମୟରେ ସୁପ୍ରବାସା ତାଙ୍କୁ କହିଲା, ''ମହାରାଣୀ, ଏଥର ଶାନ୍ତ ହୁଅ।''

—''ଏକଥା କେମିତି କହି ପାରିଲୁ ତୁ? ଏ ଜୀବନରେ ମୁଁ ଶାନ୍ତ ହେବିନାହିଁ ସୁପ୍ରା।''

—''କିନ୍ତୁ ତୁମେ ଏଠାରେ ଆଉ ନିରାପଦ ନୁହଁ, ମହାରାଣୀ!''

—''କାହିଁକି?''

—''ତୁମକୁ ସମସ୍ତେ, ସମସ୍ତେ''—ସୁପ୍ରବାସା ଉଚ୍ଚାରଣ କରି ପାରିଲା ନାହିଁ।

—''ସମସ୍ତେ କଣ? ଘୃଣା କରନ୍ତି? ସେଥିରେ ମୋର କିଛି ଯାଏ ଆସେନା।''

—''ତା ହେଉ, ତଥାପି ସମ୍ରାଟ ଫେରି ଆସିବା ପୂର୍ବରୁ ତୁମେ କୁଆଡ଼େ ଚାଲିଯାଅ।''

—''ଚାଲିଯିବି?''

—''ହଁ, ନ ହେଲେ ତୁମର ପ୍ରାଣ ସଂଶୟ ହୋଇପାରେ।''

—''ଏ ପ୍ରାଣ ତ ବହୁ ପୂର୍ବରୁ ସଂଶୟିତ। ନୂଆକରି ଆଉ କ'ଣ ହେବ? କିନ୍ତୁ ସୁପ୍ରା, ମୁଁ ଆଉଥରେ ତାଙ୍କ ସହିତ ଦେଖା କରିବାକୁ ଚାହେଁ। ମାତ୍ର ଥରେ, ଶେଷଥର, ତୁ ବ୍ୟବସ୍ଥା କର।''

—''ଅସମ୍ଭବ ମହାରାଣୀ। ସେ ଆସିବେ ନାହିଁ। ସେ ଅଛନ୍ତି ରାଜଗୃହର ବୈଭାର ପର୍ବତରେ। ତାଙ୍କୁ ଅଷ୍ଟପ୍ରହର ପ୍ରହରା ଦେଉଛନ୍ତି ବୌଦ୍ଧମାନେ। ଏଇ ମୁହୂର୍ତ୍ତରେ ଆପଣଙ୍କ ଆଦେଶ ସେଠାରେ ପହଞ୍ଚି ପାରିବ ନାହିଁ।''

—''ପହଞ୍ଚିବ। ତୁ ଯା। ନିଜେ ଯା। ନା ଥାଉ। ମୁଁ ଯିବି।''

—''ନା, ମହାରାଣୀ। ଏଭଳି ଦୁଃସାହସ ଦେଖାଅ ନାହିଁ। ପ୍ରାସାଦ ତ୍ୟାଗ କରିବା ଭୁଲ ହେବ।''

—''ଭୁଲରେ ମୁଁ ଅଭ୍ୟସ୍ତ। ଏତେକାଳ ତାଙ୍କୁ ମୁଁ ଡକେଇ ପଠେଇଥିଲି। ଆଜି ମୁଁ ନିଜେ ଯିବି। ଏଇ ରାତିରେ ପଥରେ କେହି ନାହାଁନ୍ତି। କେହି ଜାଣିପାରିବେ ନାହିଁ। ତୁ ରଥ ପ୍ରସ୍ତୁତ କରିବାକୁ କହ। କୌଣସି ପ୍ରହରୀକୁ ସାଙ୍ଗରେ ନେବାର ପ୍ରୟୋଜନ ନାହିଁ। ଆମେ ଗୋପନରେ ଯିବା।''

ମଧ୍ୟରାତ୍ରିରେ ରଥ ପହଞ୍ଚିଲା ବୈଭାର ପର୍ବତ ନିମ୍ନ ଦେଶରେ। ସଙ୍ଗେ ସଙ୍ଗେ ଆଗେଇ ଆସିଲେ ଦୁଇ ପ୍ରହରୀ, ''କାହାକୁ ପ୍ରୟୋଜନ? କେଉଁ ଉଦ୍ଦେଶ୍ୟରେ ଆସିଛ ତମେମାନେ?''

ରଥ ଆରୋହୀମାନଙ୍କ ମୁହଁ ଦେଖି ହେଉନଥିଲା। ସୁପ୍ପବାସା କହିଲା, "ଆମେ ମହାନାମ ସହିତ କଥା ହେବାକୁ ଚାହୁଁ। ତାକୁ ସମ୍ବାଦ ଦିଅନ୍ତୁ।"

—"ଆପଣମାନେ କିଏ ?"

—"ମୁଁ ମହାନାମଙ୍କ ଆତ୍ମୀୟ ?"

ଜଣେ ପ୍ରହରୀ ସେଇଠି ଠିଆ ହୋଇ ରହିଲା। ଅନ୍ୟ ଜଣକ ଫେରିଗଲା। କେଉଁଠି କୌଣସି ଶବ୍ଦ ନାହିଁ। ବେଶ୍ କିଛି ସମୟ କଟିଗଲା ପରେ ମହାନାମକୁ ଦେଖାଗଲା। ରାଜକୁମାରଙ୍କ ଅଙ୍ଗହାନି ପରେ ତା'ମନରେ ଆଉ ହର୍ଷ ନାହିଁ। ତାକୁ ଦେଖି ସୁପ୍ପବାସା ରଥ ଉପରୁ ଓହ୍ଲେଇ ଆସିଲା। ମହାନାମ ସମ୍ମୁଖରେ ଠିଆହୋଇ ସେ ମୁଖର ଆବରଣ ଘୁଞ୍ଚେଇଲା, "ମୁଁ ତୁମର ସାହାଯ୍ୟପ୍ରାର୍ଥିନୀ।"

ସୁପ୍ପବାସାକୁ ଚିହ୍ନି ପାରିଲା ମହାନାମ। ସଙ୍ଗେ ସଙ୍ଗେ ତା ମନରେ ଶଙ୍କା ଏବଂ ଦ୍ୱିଧା ଦେଖାଦେଲା। ସେ କୌଣସି ମତେ କହିଲା, "କୁହ, ମୁଁ କ'ଣ କରିପାରେ।"

ସୁପ୍ପବାସା କହିଲା, "ଆମେ ରାଜକୁମାରଙ୍କ ସାକ୍ଷାତପ୍ରାର୍ଥୀ।"

— "ଉଦ୍ଦେଶ୍ୟ ?"

—"ମହାନାମ, ଆମେ ନିରସ୍ତ୍ର। ମୁଁ କଥା ଦେଉଛି ରାଜ କୁମାରଙ୍କର କୌଣସି କ୍ଷତି ହେବ ନାହିଁ। ମୋ ପ୍ରତିଶ୍ରୁତିର କ'ଣ ଆଜି କୌଣସି ମୂଲ୍ୟ ନାହିଁ?" ତିଷ୍ୟାଙ୍କର ମନେହେଲା ଶେଷ ପ୍ରଶ୍ନଟି ଉଚ୍ଚାରଣ କଲାବେଳେ ସୁପ୍ପବାସାର ସ୍ୱରରେ କମ୍ପନ ଆସିଲା।

ମହାନାମ ଅସହାୟ ଆଖିରେ ଚାହିଁଲା। ଅନ୍ୟାନ୍ୟ ବୌଦ୍ଧମାନେ ଆଖପାଖରେ ହିଁ ଅଛନ୍ତି। ସେ ଜିଜ୍ଞାସା କଲା, "ତୁମ ସଙ୍ଗିନୀ କଣ–"

—"ତୁମ ଅନୁମାନ ଯଥାର୍ଥ।"

—"ଅସମ୍ଭବ, ଏ ଅସମ୍ଭବ।"

—"ସମ୍ଭବ ମହାନାମ। ମୋ ସହିତ ମୁହୂର୍ତ୍ତଟିଏ ପାଇଁ ଯଦି କେତେବେଳେ ସଖ୍ୟତା କରିଥାଅ, ତାର ଦାବି ନେଇ କହୁଛି: ସୁଯୋଗ ଦିଅ। କେହି ଜାଣିପାରିବେ ନାହିଁ। ରାଜକୁମାରଙ୍କ କୌଣସି କ୍ଷତି ହେବ ନାହିଁ।"

—"କିନ୍ତୁ ଅନ୍ୟ ସମସ୍ତଙ୍କୁ ମୁଁ କଣ କହିବି ?"

—"କହିବ ପାଟଳିପୁତ୍ରର ଦୁଇଜଣ ନାରୀ ସ୍ୱପ୍ନାବିଷ୍ଟ ହୋଇ ଆସିଛନ୍ତି, ରାଜକୁମାରଙ୍କ ମୁଖନିଃସୃତ ବାଣୀ ସେମାନଙ୍କ ସବୁ ସମସ୍ୟାର ସମାଧାନ କରିବ। ତୁମେ ଭୁଲିଯାଅନା ଭଗବାନ, ସୁଜାତା, ବିଶାଖା, ଆମ୍ରପଲୀ, କୃଶା, ଗୌତମୀ ଓ ଶ୍ୟାମାବତୀ ପ୍ରମୁଖଙ୍କୁ ଅନୁଗ୍ରହ କରିଥିଲେ। ତୁମେ ଆଜି କଠୋର ହୋଇ ଆମର ଚିତ୍ତ ଧ୍ୱଂସ କରନାହିଁ।"

ମହାନାମ ପ୍ରଭାବିତ ହେଲା । ସେ ଦୁଇ ରମଣୀଙ୍କୁ ତାକୁ ଅନୁସରଣ କରିବାକୁ କହିଲା ।

ବୌଦ୍ଧମାନେ ଦେଖିଲେ ଦୁଇଜଣ ରମଣୀ ମୁଖାବୟବ ଆବୃତ କରି ମହାନାମଙ୍କ ପଶ୍ଚାତରେ ଚାଲିଛନ୍ତି । ମହାନାମ ହେଲେ ସେଇ ବ୍ୟକ୍ତି, ଯାହାଙ୍କ ନିକଟରେ ରାଜକୁମାରଙ୍କର କୌଣସି ବିକଳ୍ପ ନାହିଁ । ସେ ଯେତେବେଳେ ଦୁଇଜଣ ନାରୀଙ୍କୁ ପଥ ପ୍ରଦର୍ଶନ କରୁଛନ୍ତି, ସେତେବେଳେ ମନେମନେ କୌତୂହଳ ଏବଂ ଆପତ୍ତି ଥିଲେ ମଧ୍ୟ ସେମାନେ ନୀରବ ରହିଲେ । ମହାନାମ ଚାଲିଆସିଲେ, ଯେଉଁଠାରେ ରାଜକୁମାର ଉପବିଷ୍ଟ ହୋଇଅଛନ୍ତି ଉପାସନାନ୍ତେ, ନିର୍ମଳ ହୃଦୟରେ ।

ମହାନାମ୍ କହିଲା, "ରାଜକୁମାର, ଦୁଇଜଣ ସାକ୍ଷାତ ପ୍ରାର୍ଥୀ ଅପେକ୍ଷାରେ ଅଛନ୍ତି । ସମ୍ଭବତଃ ଜଣେ ଆପଣଙ୍କ ସହ କଥା ହେବେ । ଆପଣ କଣ ଅନୁମତି ଦେବେ ?"

—"କିଏ, ମହାନାମ ?"

—"ମୋର ଅନୁମାନ ଯଦି ନିର୍ଭୁଲ ହୁଏ, ତେବେ ସେ ସାମ୍ରାଜ୍ଞୀ ।" ସହସା ଗୋଟିଏ ଶବ୍ଦ ଉଚ୍ଚାରିତ ହେଲା ଏବଂ ତାହା ଶ୍ରବଣମାତ୍ରେ ରାଜକୁମାର ବିମର୍ଷ ହେଲେ । ଏଇ ଶବ୍ଦ ଆତଙ୍କିତ ମଣିଷର ଜିହ୍ୱା ହିଁ ବ୍ୟବହାର କରିଥାଏ । ରାଜକୁମାର କରୁଣ ସ୍ୱରରେ କହିଲେ, "ଭଗବାନ, ମୁଁ ବର୍ତ୍ତମାନ ସୁଦ୍ଧା ଭୟର ଦାସ । କାରଣ ମୋର ଚିତ୍ତଶୁଦ୍ଧି ହୋଇନାହିଁ । ତୁମେ ମୋତେ ସାହାଯ୍ୟ କର ।" ତାପରେ ଆତ୍ମ ସମ୍ବରଣ କରି କହିଲେ, "ଯାଅ, ସେମାନଙ୍କୁ ଆଦର ସହକାରେ ନେଇ ଆସ ।"

ତିଷ୍ୟା ଆସିଲେ । ସୁପ୍ରବାସା ଠିଆହୋଇ ରହିଲା ଏମିତି ଦୂରତ୍ୱରେ, ଯେଉଁଠି ବାକ୍ୟାଳାପ ଶୁଭିବ ନାହିଁ । ତିଷ୍ୟାଙ୍କ ପାଦ ଭାରୀ ହୋଇ ଉଠିଥିଲା ଏବଂ ସେ ନିଜ ଶରୀରରେ ସ୍ୱର୍ଣ୍ଣଚମ୍ପାର ସୁଗନ୍ଧ ଅନୁଭବ କରୁଥିଲେ । ଦୂରରେ ମଶାଲ ଜଳୁଛି । ତା'ର ନମ୍ର ଆଲୋକରେ ସେ ରାଜକୁମାରଙ୍କୁ ଦେଖିପାରିଲେ । ଅନେକ କୃଶ ହୋଇ ଯାଇଛନ୍ତି । କିନ୍ତୁ ଅନିନ୍ଦ୍ୟ ସୁନ୍ଦର ଜ୍ୟୋତି ଫୁଟିଉଠିଛି ମୁହଁରେ । ସେ ଆଡ଼କୁ ଚାହିଁଲାମାତ୍ରେ ମନ୍ତରେ ଶାନ୍ତଭାବ ଆସେ । ଦୀର୍ଘଦିନ ପରେ ତିଷ୍ୟାଙ୍କ ମନରେ ସେଇ ଭାବ ଆସିଲା ।

ବିନୀତ ଭଙ୍ଗୀରେ ସେ ରାଜକୁମାରଙ୍କ ସମ୍ମୁଖରେ ସାମାନ୍ୟ ଦୂରତ୍ୱ ରଖି ଉପବେଶନ କଲେ । ତା'ପରେ ବହୁ ଯୁଗାନ୍ତରର ଏକ ଆର୍ତ୍ତ କମ୍ପନ ଫୁଟି ଉଠିଲା ତାଙ୍କ କଣ୍ଠସ୍ୱରରେ, "କୁମାର !"

—"କୁହନ୍ତୁ ମହାରାଣୀ ।"

ତିଷ୍ୟାଙ୍କ ଗଳା ରୁଦ୍ଧ ହେଲା । ସମସ୍ତ ଶରୀର ଶୁଷ୍କ କରି ଯେମିତି କାଶ ଜମିଉଠିଲା ସେଠି !

ରାଜକୁମାର ଶାନ୍ତ ଭଙ୍ଗୀରେ ସାମାନ୍ୟ ଅପେକ୍ଷାରେ ପ୍ରଶ୍ନ କଲେ, " ମହାରାଣୀ ସୁସ୍ଥ ଅଛନ୍ତି ତ! ପଥଶ୍ରମରେ ଆପଣଙ୍କର କୌଣସି ଶାରୀରିକ କଷ୍ଟ ହୋଇନି ?"



ଏଥର ବାଷ୍ପ ଜଳବିନ୍ଦୁରେ ରୂପାନ୍ତରିତ ହେଲା। ତିଷ୍ୟାଙ୍କ ନୟନରୁ ଅବିରଳ ଧାରାରେ ଝରିବାକୁ ଲାଗିଲା ଅଶ୍ରୁ।

ରାଜକୁମାର କହିଲେ, "ମହାରାଣୀ ଆପଣ ସାହସିନୀ। କିନ୍ତୁ ମଣିଷ ତାର ନିଜ ଆଚରଣ ମାଧ୍ୟମରେ ମଣିଷର ଶତ୍ରୁତା ଅର୍ଜନ କରେ। ପୁଣି ସେ ବିପରୀତ ଆଚରଣରେ ମିତ୍ରତା ଲାଭ କରିଥାଏ। ଆଜି ଯଦି ସାମ୍ରାଜ୍ୟର ସମସ୍ତ ଅଧିବାସୀ ଆପଣଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଛନ୍ତି, ତେବେ ଜାଣିବେ ଆପଣଙ୍କର କେଉଁଠି ତ୍ରୁଟି ଥିଲା। ତାହା ସଂଶୋଧନ କରି ତଥାଗତଙ୍କ ଶରଣାପନ୍ନ ହୁଅନ୍ତୁ, ଦେଖିବେ ସେ ଆପଣଙ୍କୁ ଶାନ୍ତି ଦେବେ।"

ତିଷ୍ୟାଙ୍କ ଗଳାରେ ସ୍ୱର ଫୁଟିଲା। ଲୁହରେ ଭିଜା ସେ ସ୍ୱର, "ମୋର ତଥାଗତ ତୁମେ। ଏ ଯଦି ତ୍ରୁଟି ହୁଏ, ତେବେ ସେଥିପାଇଁ ମରିବାକୁ ବି ମୋର ଆପତ୍ତି ନାହିଁ।"

—''ମହାରାଣୀ ! ଏ କି ପରିହାସ ?''

—''ପରିହାସ ନୁହେଁ କୁମାର ! ପୃଥିବୀର ନିୟମଗୁଡ଼ିକ ଯଦି ଗୋଟିଏ ପଥରେ ଚାଳିତ ହୁଏ, ହୋଇପାରେ; କିନ୍ତୁ ହୃଦୟ ତା'ର ଦାସତ୍ୱ ଯେ ନିଶ୍ଚୟ ସ୍ୱୀକାର କରିବ– ଏମିତି କଣ ଆଶା କରିବା ସଙ୍ଗତ ?''

—''ମହାରାଣୀ, ଜଣେ ହସ୍ତହୀନ ଅନ୍ଧ ସହିତ ଆପଣ ଆଉ ପରିହାସ କରନ୍ତୁ ନାହିଁ।''

—''ମୁଁ ପୁଣି କହୁଛି କୁମାର ଏ ପରିହାସ ନୁହେଁ। ତୁମର ହାତ ନାହିଁ– ସେଥିରେ କିଛି ଯାଏଆସେନା। ତୁମେ ମୋ ହାତ ନେଇ ପୃଥିବୀକୁ ସ୍ପର୍ଶ କରିବ, ତୁମର ଆଖି ନ ଥାଉ, ତୁମେ ମୋ ଆଖିରେ ଦର୍ଶନ କରିବ। ଦୁଇଟି ହୃଦୟ ଯଦି ଏକାକାର ହୋଇଯାଏ, ତେବେ ଗୋଟିଏ ଦୁଇଟି ଇନ୍ଦ୍ରିୟ ଲୁପ୍ତ ହେଲେ କୌଣସି ଅଭାବ ଅନୁଭୂତ ହୁଏ ନାହିଁ।''

''ମହାରାଣୀ !''

—''ହଁ କୁମାର। ମୋ ଅସ୍ତିତ୍ୱ ବର୍ତ୍ତମାନ ତୁମ ଭିତରେ। ମୋ ଦେହ ଆଉ ତୁମ ପ୍ରତ୍ୟାଶାରେ ନାହିଁ। ତୁମେ ଯଦି ଜିହ୍ୱା, ଚରଣହୀନ ହୁଅ, ସେଥିରେ ମଧ୍ୟ କିଛି ଯାଏଆସେନା। ତୁମର ହୃତ୍‌ସ୍ପନ୍ଦନ ଯେତେଦିନ ରହିବ ସେତେଦିନ ମୋ ହୃତ୍‌ସ୍ପନ୍ଦନ ଚାଳିତ ହେବ। ମୋ ହୃଦୟରେ ଯେତେଦିନ ତୁମେ ସମର୍ପିତ ନ ହେବ ସେତେଦିନ ମୁଁ ନିର୍ବାସିତ ହେବି ନାହିଁ। କାରଣ ମୁଁ ଯେ ସମର୍ପିତ। ଯିଏ ତୁମ ନିକଟରେ ପରାଜିତ ହୋଇ ସାରିଛି, ତାକୁ ଆଉ କେଉଁ ସମୟର ବିଧି ଦେଖେଇ ତୁମେ ଜୟ କରିବ ?''

—''ମହାରାଣୀ ! ଆପଣ ଭୁଲ କରୁଛନ୍ତି। ମୁଁ ଜଣେ ସାମାନ୍ୟ ମଣିଷ। ମୁଁ କେବଳ ଜନ୍ମ ସୂତ୍ରରେ ରାଜପୁତ୍ର। କିନ୍ତୁ ପାର୍ଥିବ ଧନସମ୍ପଦ ବା ରାଜଶକ୍ତିରେ ମୁଁ ଶକ୍ତିମାନ ନୁହେଁ। ମୋର ସମ୍ପଦ ତଥାଗତ।''

—''ହୁଏତ। କିନ୍ତୁ କିଏ ଚାହେଁ ପାର୍ଥିବ ଧନ ସମ୍ପଦ ? ଏଇ ମହାରାଣୀତ୍ୱ ମୁଁ ଜୀର୍ଣ୍ଣବସ୍ତ୍ର ଭଳି ପରିତ୍ୟାଗ କରିପାରେ। ଯେଉଁ ଆକାଙ୍‌କ୍ଷା ନେଇ ତୁମେ ତଥାଗତଙ୍କୁ ସ୍ପର୍ଶ କରିବାକୁ ଚାହୁଁଛ, ତାଠାରୁ ବହୁଗୁଣ ସଂସ୍କାରମୁକ୍ତ ମୁଁ ତୁମଠାରେ ସମର୍ପିତ। ମୋର କୌଣସି ଭୁଲ ନାହିଁ, କୌଣସି ଭିନ୍ନ ପଥ ନାହିଁ କୁମାର। ମୋତେ ତୁମେ ପ୍ରାଣ ଦିଅ, ମୋତେ ଜୀବିତ କର।''

—''ଏ ସମ୍ଭବ ନୁହେଁ ଜନନୀ ! ମୁଁ ଆପଣଙ୍କ ପୁତ୍ର।''

—''ନା। କଦାପି ନୁହେଁ। ତୁମ ସହିତ ମୋର କୌଣସି ଜାଗତିକ ସମ୍ପର୍କ ନାହିଁ।''

—''ଅଛି। ଦ୍ୱିପ୍ରହର ଆକାଶରେ ଘନକୃଷ୍ଣ ମେଘ ଜମିଗଲେ ମଧ୍ୟ ସୂର୍ଯ୍ୟକୁ ଅସ୍ୱୀକାର କରିବା ବାତୁଳତା। ଆପଣ ତାହା ହିଁ କରୁଛନ୍ତି।''

—"ତୁମେ ମୋତେ ଦୟା କରିବ ନାହିଁ କୁମାର ?"

—"ମୁଁ କୌଣସି ମଣିଷକୁ ଦୟା କରିବାର ଅଧିକାରୀ ନୁହେଁ। ଏକମାତ୍ର ତଥାଗତ ହିଁ ଆପଣଙ୍କୁ ସାହାଯ୍ୟ କରି ପାରନ୍ତି। ଆପଣ ତାଙ୍କୁ ସ୍ମରଣ କରନ୍ତୁ।"

ଧୀରେ ଧୀରେ ତିଷ୍ୟା ଉଠି ଠିଆହେଲେ, "ବେଶ୍। କିନ୍ତୁ ଜାଣିରଖ ମୁଁ ସ୍ୱଧର୍ମରେ ରହି ମୃତ୍ୟୁକୁ ଅପେକ୍ଷା କରିବି।"

—"ସ୍ୱଧର୍ମ ?"

—"ମୋର ଧର୍ମ ତୁମ ଭିତରେ ବିଲୀନ ହେବ, ମୋର ଭଗବାନ ତୁମେ।"

—"ଛିଃ।"

—"ଚମତ୍କାର। ନିଜେ ଯଦି ଯୋଗ୍ୟତା ଅର୍ଜନ କରି ନ ଥାଅ, ତେବେ କି ଅଧିକାର ଅଛି ଅନ୍ୟର ବିଶ୍ୱାସକୁ ଆଘାତ ଦେବାର ? ତଥାଗତ କଣ ତୁମକୁ ନମ୍ର ହେବାକୁ ଶିକ୍ଷା ଦେଇନାହାଁନ୍ତି ? ନା କୁମାର, ଯିବା ପୂର୍ବରୁ ତୁମକୁ ଆଉ ରୂଢ଼କଥା କହିବି ନାହିଁ। ଆଜି ମୁଁ ମୃତ୍ୟୁଭୟ ଉପେକ୍ଷା କରି ତୁମର ସାକ୍ଷାତପ୍ରାର୍ଥୀ ହୋଇଥିଲି। କାଲି ମୋର ରାଜତ୍ୱ ଶେଷ ହେବ। ଆଉ ମୁଁ ମୃତ୍ୟୁକୁ ଭୟ କରେ ନାହିଁ। କେବଳ ତୁମଠୁ ପଦଟିଏ ପ୍ରେମର ଭାଷା ଶୁଣିବାକୁ ଚାହେଁ, ଯିବା ପୂର୍ବରୁ ସେତିକି ପାଥେୟ ଦିଅ।"

ରାଜକୁମାରଙ୍କ ଅଧର କମ୍ପିତ ହେଲା। ସେ ମୃଦୁସ୍ୱରରେ ଉଚ୍ଚାରଣ କଲେ, "ବୁଦ୍ଧଂ ଶରଣଂ ଗଚ୍ଛାମି।"

୍ବ ତିରିଶଦିନ ଅତିକ୍ରାନ୍ତ ହେଲା। ରାଜଧାନୀରେ ପହଞ୍ଚିଲା ସମ୍ରାଟଙ୍କ ପ୍ରତ୍ୟାବର୍ତ୍ତନ ସମ୍ବାଦ। ନିରନ୍ଧ୍ର କୋଠାରୀରୁ ନିର୍ଗତ ହେବାର ଉଲ୍ଲାସ ନେଇ ପାଟଳିପୁତ୍ରର ନାଗରିକଗଣ ଧାଇଁଗଲେ ସମ୍ରାଟଙ୍କ ଆଗମନପଥକୁ। ସେମାନେ ସମ୍ରାଟଙ୍କ ଜୟଧ୍ୱନି ଦେଲେ। ଉପଗୁପ୍ତଙ୍କ ପ୍ରତି ସମ୍ମାନ ଜଣେଇଲେ। କିନ୍ତୁ ତା' ସହିତ ଧିକ୍କାର ଦେଲେ ମହାରାଣୀଙ୍କୁ। କ୍ରୁଦ୍ଧ ଜନତା ସମ୍ରାଟଙ୍କ ନିକଟରେ ସେଇ କ୍ରୋଧ ପ୍ରକାଶ କଲେ। ସେମାନେ ମହାରାଣୀଙ୍କ ବିଚାର ପ୍ରାର୍ଥନା କଲେ।

ସମ୍ରାଟ ସ୍ତବ୍ଧ। ସେ ତାଙ୍କର ପାର୍ଶ୍ୱଚରମାନଙ୍କୁ ନିଷେଧ କରିଥିଲେ କେହି ଯେମିତି ତାଙ୍କୁ ରାଜଧାନୀର ସମ୍ବାଦ ଏଇ ତିରିଶ ଦିନରେ ନ ଜଣାନ୍ତି। ବର୍ତ୍ତମାନ ଗୋଟି ଗୋଟି କରି ସବୁ ଅବଗତ ହୋଇ ପ୍ରଥମେ ବାକ୍‌ରହିତ ହୋଇଗଲେ। ସମସ୍ତ

ସାମ୍ରାଜ୍ୟରେ ଅଗ୍ନି ଡେଇଁ ଉଠିଛି। ଅବିଳମ୍ବରେ ତାଙ୍କୁ କାର୍ଯ୍ୟକର ଭୂମିକା ନେବାକୁ ପଡ଼ିବ। ଏ ଅଗ୍ନି ବର୍ଦ୍ଧିତ ହେଲେ ସବୁକିଛି ଧ୍ୱଂସ ହୋଇଯାଇପାରେ।

ସମ୍ରାଟ ହଥିଆରତପୁତ୍ରଙ୍କୁ ଆଦେଶ ଦେଲେ, "ଖଲ୍ଲାତକଙ୍କୁ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିବାକୁ କୁହନ୍ତୁ। ସମ୍ବାଦଟି ସୈନ୍ୟମାନଙ୍କୁ ଜଣାଇ ଦେବେ। ମୁଁ ଚାହେ ସେମାନେ ଯେପରି ରକ୍ତପାତ ନ କରି ଖଲ୍ଲାତକଙ୍କ ସହିତ ଫେରି ଆସନ୍ତି। ସେ ଏବଂ ବୀତଶୋକ ରାଜଧାନୀକୁ ଫେରିବା ମାତ୍ରେ ସେମାନଙ୍କୁ ବନ୍ଦୀ କରିବେ। ଏ ଆଦେଶରେ ଯେପରି ଅନ୍ୟଥା ନ ହୁଏ।"

ତା'ପରେ ସମ୍ରାଟ ଦ୍ରୁତଗାମୀ ଅଶ୍ୱରଥରେ ବୈଭାର ପର୍ବତକୁ ଆସିଲେ। ସେଠାରେ ପୁତ୍ରକୁ ଦର୍ଶନ କରି ସେ ଉଚ୍ଚସ୍ୱରରେ କାନ୍ଦି ଉଠିଲେ, "ତଥାଗତ, ଏ ତୁମର କି ଖେଳ ?"

ରାଜପୁତ୍ର କହିଲେ, "ପିତା, ଆପଣ ଅଧୀର ହୋଇ ତଥାଗତଙ୍କୁ ଅଭିଯୁକ୍ତ କରିବେ ନାହିଁ।"

—"କିନ୍ତୁ, ମୁଁ ତୁମକୁ ଏ ଅବସ୍ଥାରେ ଦେଖିବି, ଏକଥା କଳ୍ପନା ସୁଦ୍ଧା କରି ନଥିଲି।"

—"ମୋର କୌଣସି କଷ୍ଟ ନାହିଁ ପିତା ! ତଥାଗତଙ୍କ କରୁଣାରେ ମୁଁ ବାହୁଲ୍ୟବର୍ଜିତ ହୋଇଛି। ସେ ବର୍ତ୍ତମାନ ମୋର ଆହୁରି ନିକଟକୁ ଆସିଛନ୍ତି। ଆପଣ ଉଦ୍‌ବିଗ୍ନ ହେବେ ନାହିଁ। ଆଶା କରେ, ଆପଣଙ୍କ ଧର୍ମଯାତ୍ରା ସଫଳ ହୋଇଛି।"

ବହୁ କଷ୍ଟରେ ସମ୍ରାଟ ଆତ୍ମ ସମ୍ବରଣାନ୍ତେ ମସ୍ତକ ସଞ୍ଚାଳନ କଲେ, "ହଁ। ମୁଁ ଚେଷ୍ଟା କରିଛି ତଥାଗତଙ୍କ ବାଣୀ ପ୍ରଚାର କରିବା ପାଇଁ। କିନ୍ତୁ କାହିଁକି, କେଉଁ ପୈଶାଚିକ ଆନନ୍ଦରେ ସାମ୍ରାଜ୍ଞୀ ତୁମର ଏ ଦୁର୍ଦ୍ଦଶା କଲେ ? କଣ ତୁମର ଅପରାଧ ?"

ରାଜପୁତ୍ର ମୁହଁ ଟେକିଲେ। ତାଙ୍କର ଦୃଷ୍ଟିଶକ୍ତି ନାହିଁ। କିନ୍ତୁ ସମ୍ରାଟଙ୍କ କାତର ଓ ଭୀତ ମୁହଁଟି ସେ କଳ୍ପନା କରି ପାରିଲେ, "ଏହାର ବିଚାର ସେ କରିବେ ପିତା। ହୁଏତ ଜନ୍ମାନ୍ତରର କୌଣସି ଅପରାଧରୁ ଆଜି ମୁକ୍ତ ହେଲି ମୁଁ।"

—"କିନ୍ତୁ, କିନ୍ତୁ ସାମ୍ରାଜ୍ଞୀ ତ ତୁମକୁ ଚିହ୍ନି ନ ଥିଲେ। ତେବେ ? ମୁଁ ଏହାର କୌଣସି ସମାଧାନ ପାଉନାହିଁ।" ସମ୍ରାଟଙ୍କ କଣ୍ଠରେ ବ୍ୟାକୁଳତା।

—"ପିତା, ଆପଣଙ୍କ ଏ ପ୍ରଶ୍ନର ଉତ୍ତର ଦେବାର ଯୋଗ୍ୟତା ମୋର ନାହିଁ।"

—"ବେଶ୍। ତୁମେ ରାଜଧାନୀକୁ ଫେରି ଚାଲ। କାଞ୍ଚନମାଳା ଶଯ୍ୟାଶାୟିନୀ। ପଦ୍ମାବତୀ ଚେତନାହୀନା। ତୁମେ ତ ସନ୍ନ୍ୟାସୀ ନୁହଁ।"

—"ସେ ଯୋଗ୍ୟତା ମୋର କେଉଁଠି ? ପାରମିତା ପୂର୍ଣ୍ଣକରି ପଞ୍ଚ ମହାଦାନ କରିବାର କ୍ଷମତା ମୋର ନାହିଁ। ବେଶ୍ ଚାଲନ୍ତୁ, ମୁଁ ଉପଗୁପ୍ତଙ୍କ ଚରଣ ସ୍ପର୍ଶ କରିବି ?"

ଅବିଳମ୍ବେ ବିଚାର ହେଉ। ରାଜଧାନୀରେ ବର୍ତ୍ତମାନ ଏଇ ଦାବି ମୁଖର ହୋଇଉଠିଛି। ଖଲ୍ଲାତକଙ୍କୁ ଗୋଦାବରୀ ଯାଏଁ ପହଁଚିବାକୁ ପଡ଼ିନି। ପଥ ମଧ୍ୟରେ ସୈନ୍ୟମାନେ ଏମିତି ଅସହଯୋଗିତା କଲେ ଯେ ତାଙ୍କ ଅଗ୍ରଗତି ବାଧାପ୍ରାପ୍ତ ହେଉଥିଲା। ତା'ଛଡ଼ା ବୀତଶୋକ ସହିତ ତାଙ୍କର ପରୋକ୍ଷ ସଂଘାତ ଆରମ୍ଭ ହୋଇଥିଲା। ଏଇ ସମୟରେ ସମ୍ରାଟଙ୍କ ଆଦେଶ ପହଂଚିଲା ତାଙ୍କ ପାଖରେ। ଏବଂ ସେ ଆଦେଶ ଯେହେତୁ ଗୋପନ ରହିଲା ନାହିଁ, ସଙ୍ଗେ ସଙ୍ଗେ ସୈନ୍ୟବାହିନୀରେ ତାର ପ୍ରତିକ୍ରିୟା ଦେଖା ଦେଲା।

ସୈନ୍ୟମାନେ ଫେରିଆସିଲେ ବନ୍ଦୀ ଖଲ୍ଲାତକ ଏବଂ ବୀତଶୋକଙ୍କୁ ନେଇ। ଜନତା ସେମାନଙ୍କର ମଧ୍ୟ ବିଚାର ଚାହିଁଲେ। ଏ କ୍ଷେତ୍ରରେ ଜନସାଧାରଣ ଜାଣିଥିଲେ, ଖଲ୍ଲାତକ ଏବଂ ବୀତଶୋକ ସାମ୍ରାଜ୍ଞୀଙ୍କୁ ବାଧ୍ୟ କରିଥିଲେ ଯୁଦ୍ଧଯାତ୍ରାର ଅନୁମତି ଦେବା ପାଇଁ।

ରାଜପ୍ରାସାଦରେ ସମ୍ରାଟଙ୍କ ଆଖିରେ ନିଦ ନାହିଁ। ଶଯ୍ୟା ତାଙ୍କ ନିକଟରେ ହୋଇପଡ଼ିଛି କଣ୍ଟକତୁଲ୍ୟ। ଏଇ ତିରିଶ ଦିନରେ ସାମ୍ରାଜ୍ଞୀ ଯେଉଁ ସବୁ କାର୍ଯ୍ୟ କରିଛନ୍ତି, ତା'ର ଅଧିକାଂଶ ତାଙ୍କ ଆଦର୍ଶ ବହିର୍ଭୂତ। ପୂର୍ବାବସ୍ଥାକୁ ଫେରାଇ ଆଣିବାକୁ ଅବଶ୍ୟ ଅଧିକ ସମୟ ଲାଗିବ ନାହିଁ। କିନ୍ତୁ ସାମ୍ରାଜ୍ଞୀଙ୍କ ଏ ସବୁ କାର୍ଯ୍ୟ ପଶ୍ଚାତ୍‌ରେ ଯୁକ୍ତି କ'ଣ? କ୍ଷମତା ହସ୍ତାନ୍ତର ହେବାମାତ୍ରେ ଅବୌଦ୍ଧମାନେ, ଯେଉଁମାନେ ଅତ୍ୟାଚାରୀର ଭୂମିକା ନେଇଥିଲେ, ସେମାନେ ଅନ୍ତର୍ହିତ ହୋଇଛନ୍ତି।

ମଧ୍ୟରାତ୍ରିରେ ଯେତେବେଳେ ରାଜଧାନୀ ନିଦ୍ରାମଗ୍ନ, ରାଜପଥ ଜନମାନବ ଶୂନ୍ୟ, ସେତିକିବେଳେ ରାଜକୀୟ ରଥ ପହଂଚିଲା ମହାରାଣୀଙ୍କ ପ୍ରାସାଦ ଦ୍ୱାରରେ। ସମ୍ରାଟଙ୍କ ସହିତ ପ୍ରହରୀ ନାହାଁନ୍ତି। ଅନୁଚରଙ୍କ ସଂଖ୍ୟା ମଧ୍ୟ ଅଳ୍ପ। ଦ୍ୱାରୀ ସମ୍ବାଦ ନେଇଗଲା ଅନ୍ଦରମହଲକୁ, ସମ୍ରାଟ ସାକ୍ଷାତ ପ୍ରାର୍ଥୀ।

ସେ ରାତ୍ରିରେ ମହାରାଣୀଙ୍କ ପ୍ରାସାଦରେ ମଧ୍ୟ ନିଦ୍ରା ଆସିନି। ବୃତ୍ତାନ୍ତ ପରିଣତି ପାଇଁ ପ୍ରତି ମୁହୂର୍ତ୍ତରେ ଯେଉଁ ଶଙ୍କା ଜନ୍ମ ନେଉଥିଲା, ତା' ସୁପ୍ପବାସା ବା ଅନ୍ୟ ପରିଚାରିକାମାନଙ୍କୁ ଆକ୍ରାନ୍ତ କରିଥିଲେ ହେଁ ସାମ୍ରାଜ୍ଞୀ ହଠାତ୍ ଅତ୍ୟନ୍ତ ସ୍ଥିର ଏବଂ ଶାନ୍ତ ହୋଇ ଯାଇଛନ୍ତି! ବାତାୟନରେ ବସି ସେ ଅପଲକ ଆଖିରେ ଚାହିଁଥିଲେ

ମଧ୍ୟରାତ୍ରିର ଅନ୍ଧକାର ଆକାଶ ଆଡ଼କୁ। ଏଇ ସମୟରେ ସୁପ୍‌ପବାସା ତାଙ୍କୁ ସମ୍ବାଦ ଦେଲା।

ଦ୍ୱିତୀୟଥର ମୁହଁ ଫେରାଇଲେ ତିଷ୍ୟା। ସମ୍ବାଦଟି ଯେମିତି ତାଙ୍କର ବୋଧଗମ୍ୟ ହେଲା ନାହିଁ ପ୍ରଥମେ। ସୁପ୍‌ପବାସା ପୁନର୍ବାର ଉଚ୍ଚାରଣ କଲାପରେ ତାଙ୍କ ଲଲାଟ କୁଂଚିତ ହେଲା, ''ସମ୍ରାଟ ଆସିଛନ୍ତି ?''

—''ଆଜ୍ଞା ହଁ, ମହାରାଣୀ।''

—''ଏତେ ରାତ୍ରିରେ !''

ଏ ପ୍ରଶ୍ନର କି ଉତ୍ତର ଦେବ ସୁପପ୍‌ବାସା ? ଏତେ ରାତ୍ରିରେ ସମସ୍ତଙ୍କ ଅଜ୍ଞାତରେ ଆସିବାର ତ ଗୋଟିଏ ହିଁ ଅର୍ଥ ହୁଏ। ସମ୍ରାଟଙ୍କ ନିକଟରୁ ସାହାଯ୍ୟ ପାଇବାର ସମ୍ଭାବନା ଅଛି।



ହଠାତ୍ ତିଷ୍ୟା ସଚକିତ ହେଲେ, ''ଶୁଣ ସୁପ୍‌ପବାସା, ସମ୍ରାଟଙ୍କୁ ସ୍ମରଣ କରେଇ ଦେ, ସେ ମୋ' ନିକଟରେ ପ୍ରତିଜ୍ଞାବଦ୍ଧ, କଦାପି ଏ ପ୍ରାସାଦରେ ପ୍ରବେଶ କରିବେ ନାହିଁ।''

ସୁପ୍‌ପବାସା ଚମକି ଉଠିଲା, ''ମହାରାଣୀ !''

ତିଷ୍ୟା ମୁହଁ ଫେରେଇ ନେଲେ। ଏବଂ ସେତିକି ବେଳେ ତାଙ୍କ ଦୃଷ୍ଟିରେ ଧରାପଡ଼ିଲା ଆକାଶ ଦେହରୁ ଗୋଟିଏ ନକ୍ଷତ୍ର ଖସିପଡ଼ିବା। ସେ ଦୁଇଆଖି ବନ୍ଦ କଲେ। ସୁପ୍‌ପବାସା ନମ୍ର ସ୍ୱରରେ ଜଣାଇଲା, ''ସମ୍ରାଟ ପ୍ରାସାଦକୁ ପ୍ରବେଶ କରି ନାହାଁନ୍ତି ମହାରାଣୀ। ସେ ଆପଣଙ୍କ ଅନୁମତି ପାଇଁ ଅପେକ୍ଷା କରିଛନ୍ତି। ମହାରାଣୀ, ଏଇ ମୁହୂର୍ତ୍ତରେ ଆମକୁ ଆବେଗ ନୁହେଁ, ବୁଦ୍ଧି ଦ୍ୱାରା ପରିଚାଳିତ ହେବା ଉଚିତ।''

''ଉଚିତ ?'' ତିଷ୍ୟା ହସିଲେ, ''ବେଶ୍। ସମ୍ରାଟଙ୍କୁ ଅତିଥି କକ୍ଷକୁ ନେଇଆ।''

ମଧ୍ୟରାତ୍ରିରେ ରମଣୀମାନଙ୍କ ସାଜସଜ୍ଜାରେ ସତର୍କତା ରହେ ନାହିଁ। ସାମ୍ରାଜ୍ଞୀ ମଧ୍ୟ ଥିଲେ କିଛିଟା ଅବିନ୍ୟସ୍ତ। କିନ୍ତୁ ତାଙ୍କର ବିନ୍ଦୁମାତ୍ର ଇଚ୍ଛା ହେଲା ନାହିଁ ନିଜକୁ ପ୍ରସାଧିତ କରିବାର। ତାଙ୍କ ସୌନ୍ଦର୍ଯ୍ୟ ଉପରେ ଅବହେଳାର ଛାଇ ପଡ଼ିଲା। ଏ ଅବସ୍ଥାରେ ସେ ସମ୍ରାଟଙ୍କ ମୁହାଁମୁହିଁ ହେଲେ। ହେବାମାତ୍ରେ ତାଙ୍କ ହୃଦୟରେ ଆଜି କୌଣସି ପ୍ରତିକ୍ରିୟା ହେଲା ନାହିଁ। ଏହା ପୂର୍ବରୁ ଯେବେ ବି ସେ ସମ୍ରାଟଙ୍କୁ ଦେଖିଛନ୍ତି, ସେତେବେଳେ ହିଁ ଜରାଗ୍ରସ୍ତ ଅସୁନ୍ଦରକୁ ସହ୍ୟାତୀତ ବୋଲି ମନେ ହୋଇଛି। ଆଜି ତାଙ୍କ ମନରେ କୌଣସି ବିରୂପଭାବ ଆସିଲା ନାହିଁ।

ତାଙ୍କୁ ଦେଖିବାମାତ୍ରେ ସମ୍ରାଟ କହିଲେ, ''ତିଷ୍ୟା, କଣ ହୋଇଛି ? କେଉଁ କାରଣରୁ ତୁମେ ଏତେ ନିଷ୍ଠୁର ଆଚରଣ କଲ ? ତିଷ୍ୟା, ମୋତେ କୁହ, ସବୁ କିଛି ଖୋଲି କୁହ।''

ଅତ୍ୟନ୍ତ ଶାନ୍ତ ସ୍ୱରରେ ତିଷ୍ୟା ପ୍ରଶ୍ନ କଲେ, ''କଣ ଶୁଣିବାକୁ ଚାହାଁନ୍ତି ?''

ଏଇ ପ୍ରଶାନ୍ତିରେ ବିସ୍ମିତ ହେଲେ ସମ୍ରାଟ। ସେ ତିଷ୍ୟାଙ୍କ ଆଡ଼କୁ ପୂର୍ଣ୍ଣଦୃଷ୍ଟିରେ ଚାହିଁଲେ। ତାଙ୍କର ମନେ ହେଲା ମଧ୍ୟାହ୍ନରେ ସୂର୍ଯ୍ୟ ଯେମିତି ହଠାତ୍ ଅପରାହ୍ନରେ ଆସି ପହଂଚିଛି ! ତିଷ୍ୟାଙ୍କ ରୂପରେ ସାୟାହ୍ନର ଛାଇ। ସେ ଖରତାପ ନାହିଁ, କିନ୍ତୁ ବୈରାଗ୍ୟର ଅମନ୍ଦ ଆଲୋକରେ ସୌନ୍ଦର୍ଯ୍ୟମୟ। ଏ ଭିନ୍ନ ରୂପ।

ସମ୍ରାଟ କହିଲେ, ''ତିରିଶ ଦିନ ମଧ୍ୟରେ ତୁମେ ସାମ୍ରାଜ୍ୟର ସମସ୍ତ ଲୋକଙ୍କୁ ଶତ୍ରୁ କରି ତୋଳିଛ। ଶାସନ ବ୍ୟବସ୍ଥାର ପରିବର୍ତ୍ତନ, ତଥାଗତଙ୍କ ଉପଦେଶକୁ ଅମାନ୍ୟ, ଅନ୍ୟ ରାଜ୍ୟ ଆକ୍ରମଣ ଏସବୁ ନେଇ ମୁଁ ତୁମକୁ କୌଣସି ପ୍ରଶ୍ନ କରୁନାହିଁ।''

—''ତେବେ ଆପଣ ଠିକ୍ କଣ ଜାଣିବାକୁ ଏତେ ରାତିରେ ଆସିଛନ୍ତି ? ମୁଁ କାହିଁକି କୁମାରଙ୍କ ଅଙ୍ଗହାନିର ଆଦେଶ ଦେଇଛି, ଏଇଆ ?''

—''ହଁ ତିଷ୍ୟା ! କୁମାର ତୁମର ପୁତ୍ରତୁଲ୍ୟ। ସେ ତଥାଗତଙ୍କ ପ୍ରତି ନିବେଦିତପ୍ରାଣ। ଜ୍ଞାନତଃ ସେ କୌଣସି ଅନ୍ୟାୟ କରି ନାହିଁ, କରି ପାରେନା। ତାକୁ କାହିଁକି ତୁମେ ଶାସ୍ତି ଦେଲ ?''

—''ସେ ବିଦ୍ରୋହୀମାନଙ୍କ ସହ ଯୋଗ ଦେଇଥିଲେ।''

—''ନା, ତିଷ୍ୟା ! ମୁଁ ଜାଣିପାରିଛି। ସେ ବିଦ୍ରୋହୀମାନଙ୍କୁ ଶାନ୍ତ କରିଥିଲା। ତୁମ ନିର୍ଦ୍ଦେଶ ପାଇବାମାତ୍ରେ ସେ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିଛି। ତା'ଛଡା ସେ ସ୍ୱଳ୍ପବୟସ୍କ। ତାକୁ ଏଭଳି ସମ୍ମାନଜନକ ସମ୍ବୋଧନ କରୁଛ କାହିଁକି ?''

—''କାରଣ ସେ ମୋର ଶ୍ରଦ୍ଧେୟ। ସମ୍ରାଟ, କୁମାରଙ୍କ ପ୍ରତି ମୁଁ ସମର୍ପିତପ୍ରାଣ।''

—''କଣ ?'' ଚିତ୍କାର କରି ଉଠିଲେ ସମ୍ରାଟ।

—"ହଁ। ଏଇ ସତ୍ୟଟି ଜାଣିନିଅନ୍ତୁ। ଏକତିରିଶ ବର୍ଷ ପୂର୍ବରୁ ଯେଉଁ ତରୁଣଟି ମୋତେ ଧର୍ଷଣ କରିଥିଲା, ବିବାହ କରିବାକୁ ବାଧ୍ୟ ହୋଇଥିଲା ଏବଂ ତ୍ୟାଗ କରିଥିଲା—ସେ ହିଁ ମୋର ଆରାଧ୍ୟ। ତିରିଶ ବର୍ଷ କାଳ ତାଙ୍କୁ ଇ ମୁଁ ଭଲପାଇ ଆସିଛି। ସେ ତରୁଣ ଆପଣ ନୁହଁନ୍ତି। ଆପଣ ତ ଜରାଗ୍ରସ୍ତ ବୃଦ୍ଧ। ସେଇ ତରୁଣଟିକୁ ମୁଁ, କୁମାରଙ୍କ ଭିତରେ ଦେଖିଛି! ହଁ, ତାଙ୍କୁ ଇ ପାଇବାକୁ ଚାହିଁଥିଲି ମୁଁ; କିନ୍ତୁ ଏ ଜନ୍ମରେ ମୋ ଆଶା ପୂର୍ଣ୍ଣ ହେଲା ନାହିଁ। ତାଙ୍କ ଦେହରେ ଯେତିକି ଆଘାତ ଦେଇଛି ତାର ବହୁଗୁଣ ଆଘାତ ମୋ ହୃଦୟରେ ବାଜିଛି"।

ସମ୍ରାଟ ତିଷ୍ୟାଙ୍କ କଥା ଶ୍ରବଣ ମାତ୍ରକେ ମୂହ୍ୟମାନ ହେଲେ। ତା'ପରେ କୌଣସି ମତେ ଉଚ୍ଚାରଣ କଲେ, "ଏ ଅନ୍ୟାୟ ତିଷ୍ୟା, ଘୋର ଅନ୍ୟାୟ।

"ଅନ୍ୟାୟ! ମୋର ହୃଦୟ ନ୍ୟାୟ ଏବଂ ଅନ୍ୟାୟର ସୀମାରେଖା ଅତିକ୍ରମ କରିଛି ସମ୍ରାଟ।"

—"କିନ୍ତୁ ଏ କଥା ତୁମେ ଭୁଲିଯାଅ ତିଷ୍ୟା। ଆଉ କେବେ ବି ମନକୁ ଆଣନା। ଜାଣେନା, ଇତିମଧ୍ୟରେ ପ୍ରଜାମାନେ ଏ ସମ୍ବାଦ ଜାଣିଯାଇଛନ୍ତି କି ନା! ତୁମ ନିକଟରେ ମୋର ମିନତି— କେବେ ବି ଏ ସତ୍ୟ ପ୍ରକାଶ କରନା!"

—"କାହିଁକି? ସତ୍ୟ ପ୍ରକାଶରେ ମୁଁ କୁଣ୍ଠିତ ହେବି କାହିଁକି? ସେ ମୋର ହୃଦୟ ଅଧିକାର କରିଛନ୍ତି। ଏ ତ ମୋର ଆନନ୍ଦ। ମୋର ପରିତ୍ରାଣ।"

ସମ୍ରାଟ ତିଷ୍ୟାଙ୍କ ମୁହଁ ଆଡ଼କୁ ଚାହିଁଲେ। ତାଙ୍କର କ୍ରୋଧ ହେଉଥିଲା, କିନ୍ତୁ ଏଇ ମୁହଁ ଆଡ଼କୁ ଚାହିଁ ସେ ପ୍ରେମାର୍ତ୍ତ ହେଲେ। ଏ ସୁନ୍ଦରୀ, ଦୀପ୍ତିମୟୀ ଯେତେ ଅନ୍ୟାୟ କରି ଥାଉ ପଛେ, ସେ କୌଣସି ଶାସ୍ତି ଦେଇ ପାରିବେ ନାହିଁ। କେବଳ ତିଷ୍ୟା ଯଦି ତାଙ୍କ ପ୍ରତି ଅନୁଗତ ରହେ, ଯଦି ଅବାଧ୍ୟ ନ ହୁଏ। ସମ୍ରାଟ ମୃଦୁ ସ୍ୱରରେ କହିଲେ, "ତିଷ୍ୟା, ତୁମ କଥାଗୁଡ଼ିକ ମୋ ହୃଦୟରେ ଉତ୍ତପ୍ତ ଶଳାକାଭଳି ବିଦ୍ଧ କରୁଛି। ତୁମେ ଏଭଳି କଥା ଉଚ୍ଚାରଣ କରନାହିଁ। ତରୁଣ କାଳରେ ମୁଁ ଯେଉଁ ଅନ୍ୟାୟ କରିଛି, ତା' ପାଇଁ ଯେଉଁ ଶାସ୍ତି ଦେବ, ମଥା ପାତି ଗ୍ରହଣ କରିବି, କିନ୍ତୁ ଏଇ ଶାସ୍ତି ଦିଅ ନାହିଁ। ମୋତେ ତୁମେ ସୁଯୋଗ ଦିଅ, ଥରଟିଏ ପାଇଁ, ଶେଷଥର।"

—"ସୁଯୋଗ, କଣ ପାଇଁ ସୁଯୋଗ?"

—"ତୁମକୁ ନିଜର କରି ପାଇବାର ସୁଯୋଗ।"

—"ଅସମ୍ଭବ"।

—"କାହିଁକି ଅସମ୍ଭବ? ତୁମେ ମୋର ପତ୍ନୀ। ତୁମର ଅନୁରାଗ ପାଇଲେ ମୁଁ ମୋ ପ୍ରଜାମାନଙ୍କୁ ଯେମିତି ହେଲେ ଶାନ୍ତ କରି ପାରିବି। ତୁମକୁ ନିଶ୍ଚୟ ବିପଦମୁକ୍ତ କରିବି।"

—"ଆପଣଙ୍କ ଦୟା ପାଇଁ ଧନ୍ୟବାଦ। କିନ୍ତୁ ମୋର ଆଉ କିଛି କରିବାର ନାହିଁ। ଆପଣ ଖୁବ୍ ବିଳମ୍ବ କରି ପକାଇଲେ। ସମ୍ରାଟ, ମୁଁ ଭାରି କ୍ଳାନ୍ତ। ମୋତେ ଟିକେ ଏକାକୀ ରହିବାକୁ ଦିଅନ୍ତୁ।" ତିଷ୍ୟା ଆଉ ରହିଲେ ନାହିଁ। ଅଳସ ପାଦରେ ଅନ୍ଦର ମହଲକୁ ଚାଲିଗଲେ।



ମହାରଣୀ ତିଷ୍ୟା, ମନ୍ତ୍ରୀ ଖଲ୍ଲାତକ ଏବଂ ରାଜଭ୍ରାତା ବୀତଶୋକଙ୍କର ବିଚାର ହେବ। ଏବଂ ସମସ୍ତ ରାଜ୍ୟର ଜନତା ଏକ ଯୋଗରେ ଦାବି କରୁଛନ୍ତି ସେମାନଙ୍କ ମୃତ୍ୟୁଦଣ୍ଡ। ମହାରାଣୀଙ୍କୁ କାହିଁକି ବନ୍ଦୀ କରା ହୋଇନାହିଁ— ଏ ନେଇ ଅଭିଯୋଗ ଉଠୁଛି।

ସମ୍ରାଟ ଛୁଟିଗଲେ ଉପଗୁପ୍ତଙ୍କ ନିକଟକୁ। ସନ୍ୟାସୀଙ୍କୁ କହିଲେ ସବୁକଥା। ତାଙ୍କ ନିଜକଥା ମଧ୍ୟ କହିଲେ। ତା'ପରେ ଉପଗୁପ୍ତ କହିଲେ, "ଅପରାଧ କଲେ ତାର ଶାସ୍ତି ଦେବା ସମ୍ରାଟଙ୍କ କର୍ତ୍ତବ୍ୟ। ତୁମେ କାହିଁକି ବିଚଳିତ ହେଉଛ ?"

"କିନ୍ତୁ କିଭଳି ଭାବେ ମୁଁ ତିଷ୍ୟାର ଅପରାଧ ମାର୍ଜନା କରିପାରେ ?"

"ମାତା ଯେମିତି ନିଜ ପୁତ୍ରକୁ ଜୀବନ ଦେଇ ରକ୍ଷା କରେ ସେମିତି ମହାରାଣୀଙ୍କ ମନରେ ମୈତ୍ରୀଭାବ ଯଦି ଉତ୍ପନ୍ନ କରିପାର, ଯଦି ସେ କୃତ କାର୍ଯ୍ୟ ପାଇଁ ଅନୁଶୋଚନା କରନ୍ତି ଏବଂ ସେଥିରୁ ଶିକ୍ଷାଗ୍ରହଣ କରି ଜୀବନକୁ ନିୟନ୍ତ୍ରଣ କରିପାରନ୍ତି, ତେବେ ତଥାଗତଙ୍କ ଇଚ୍ଛାରେ ତାଙ୍କ ଦଣ୍ଡ ହ୍ରାସ କରିପାର।"

ସମ୍ରାଟ କାତର ସ୍ୱରରେ କହିଲେ, "ସେ ଯଦି ଅନୁଶୋଚନା ନ କରେ ?"

—"ନିଜର କୃତ ପାପରେ ନିଜେ ହିଁ ସଂଶ୍ଳିଷ୍ଟ ହେବ।"

ଫେରି ଆସିଲେ ସମ୍ରାଟ।

ବିଚାରସଭା ଆହ୍ୱାନ କରାହେଲା। ପ୍ରଥମେ ଖଲ୍ଲାତକ। ତାଙ୍କ ବିରୁଦ୍ଧରେ ଗୋଟିକ ପରେ ଗୋଟିଏ ଅଭିଯୋଗ ଶୁଣିବା ପରେ ସମ୍ରାଟ ଅଭିଯୁକ୍ତର ବକ୍ତବ୍ୟ ଶୁଣିବାକୁ ଚାହିଁଲେ। ଖଲ୍ଲାତକ କହିଲେ, "ମୁଁ ଯାହା କରିଛି ତା' ଦେଶ ପାଇଁ କରିଛି।

ତେବେ ଏ କାର୍ଯ୍ୟ ପାଇଁ ଯଦି କାହାରି ପ୍ରାଣରେ ଆଘାତ ଦେଇଥାଏ–ତେବେ ମୁଁ ଦୁଃଖିତ।''

ସମ୍ରାଟ ଖଲ୍ଲାତକଙ୍କ ଅତୀତର ସେବା କଥା ସ୍ମରଣ କରି କାରାବାସର ଆଦେଶ ଦେଲେ।

ବୀତଶୋକ କହିଲେ, ''ମୁଁ କୌଣସି ଅନ୍ୟାୟ କରିନାହିଁ। ସମ୍ରାଜ୍ଞୀ ଏବଂ ଖଲ୍ଲାତକ ମୋତେ ଯେଉଁଭଳି ଆଦେଶ ଦେଇଛନ୍ତି, ମୁଁ ତାହା ହିଁ ପାଳନ କରିଛି ମାତ୍ର।''

ସମସ୍ତ ବିଷୟ ବିଚାର କରି ସମ୍ରାଟ ତାଙ୍କୁ ସ୍ୱଳ୍ପମିଆଦୀ କାରାବାସ ଶାସ୍ତି ଦେଲେ।



ଏତେ ସମୟ ଯାହାଙ୍କ ପାଇଁ ସମସ୍ତେ ଅଧୀର, ସେଇ ତିଷ୍ୟା ଆସିଲେ ସ୍ୱାଭାବିକ ପଦକ୍ଷେପରେ। ତାଙ୍କୁ ଦେଖିବା ମାତ୍ରେ ଦର୍ଶକମାନେ ଚଞ୍ଚଳ ହେଲେ। ସମ୍ରାଟଙ୍କର ମନେ ହେଲା ତିଷ୍ୟାଙ୍କ ବୟସ ଯେମିତି ରାତାରାତି ବୃଦ୍ଧି ପାଇଛି। କିନ୍ତୁ ସାମାନ୍ୟତମ ଭୟର ଚିହ୍ନ ନାହିଁ ସେ ସୁନ୍ଦର ମୁଖାବୟବରେ। ଅତ୍ୟନ୍ତ ପ୍ରଶାନ୍ତ ଦେଖା ଯାଉଥିଲେ ସେ।

ତାଙ୍କ ବିରୁଦ୍ଧରେ ଅଭିଯୋଗଗୁଡ଼ିକ ଗୋଟିକପରେ ଗୋଟିଏ ଜଣାଇ ଦିଆଗଲା। ପ୍ରତିଟି ଅଭିଯୋଗ ବେଶ୍ ଦୃଢ଼। ରାଜକୁମାରଙ୍କ ଅଙ୍ଗହାନିର ବର୍ଣ୍ଣନା ଯେତେବେଳେ ଜଣା ହେଉଥିଲା ସେତେବେଳେ ଧିକ୍କାର ଉଠିଲା ବିଚାରସଭାରେ। କିନ୍ତୁ ସେଥିରେ ସାମାନ୍ୟ ବିଚଳିତ ହେଲେ ନାହିଁ ତିଷ୍ୟା।

ଅଭିଯୋଗ ଶୁଣିବାପରେ ସମ୍ରାଟ ଜାଣିବାକୁ ଚାହିଁଲେ, ''ତୁମର କିଛି ବକ୍ତବ୍ୟ ଅଛି?''

ତିଷ୍ୟା ସାମ୍ରାଜ୍ଞୀ ଭଳି ହସିଲେ, ''ନା। କିଛି ବକ୍ତବ୍ୟ ନାହିଁ।''

ଜନତା ସ୍ତବ୍ଧ। ସମ୍ରାଟ ଶଙ୍କିତ ହେଲେ। ଏଇ ମୁହଁ ଆଡ଼କୁ ଚାହିଁ ସେ କ୍ରମଶଃ ଦୁର୍ବଳ ହୋଇ ପଡୁଥିଲେ। ସମ୍ରାଟ କହିଲେ, ''ମୁଁ ତୁମ ନିକଟରେ କୃତଜ୍ଞ, କାରଣ ତୁମେ ମୋ ଜୀବନ ରକ୍ଷା କରିଛ।''

ତିଷ୍ୟା ମସ୍ତକ ଆନ୍ଦୋଳିତ କଲେ, ''ନା, ଆପଣଙ୍କ ଜୀବନ ତଥାଗତଙ୍କ ଇଚ୍ଛାରେ ରକ୍ଷା ପାଇଛି।''

ସମଗ୍ର ସଭାରେ ଗୋଟିଏ ଅସ୍ଫୁଟ ଧ୍ୱନି ଗୁଞ୍ଜରିତ ହେଲା। ଏଭଳି ଉତ୍ତର କେହି ଆଶା କରି ନଥିଲେ। ସମ୍ରାଟ ଦୁର୍ବିପାକରେ ପଡ଼ିଲେ। ଯେମିତି ତାଙ୍କ ମୁହଁର କଥା ବନ୍ଦ କରି ଦେଇଛନ୍ତି ତିଷ୍ୟା। ସେ ପ୍ରଶ୍ନ କଲେ, ''ତୁମ ବିରୁଦ୍ଧରେ ଯେଉଁ ସବୁ ଅଭିଯୋଗ ଉତ୍ଥାପିତ ହୋଇଛି, ଏଗୁଡ଼ିକ କଣ ତୁମେ ଅସ୍ୱୀକାର କର ?''

—''ନା, ଏ ସବୁ ସତ୍ୟ। ତେବେ ଘଟଣା ଯେତେବେଳେ ଘଟେ, ସେତେବେଳେ ତାର ଅନେକ ପ୍ରକାର ବ୍ୟାଖ୍ୟା କରାଯାଇପାରେ। ମୁଁ ସେ ବ୍ୟାଖ୍ୟାରେ ଯିବାକୁ ଚାହେଁ ନାହିଁ। ଘଟଣାଟି ଯେ ସତ୍ୟ ତା' ଅସ୍ୱୀକାର କରି ହୁଏ ନାହିଁ।'' ତିଷ୍ୟା ଶାନ୍ତ ସ୍ୱରରେ ଜଣାଇଲେ।

ସମ୍ରାଟ ପୂର୍ଣ୍ଣ ଦୃଷ୍ଟିରେ ତିଷ୍ୟାଙ୍କୁ ଦେଖିଲେ। ତା'ପରେ ଆନ୍ତରିକ ସ୍ୱରରେ ପ୍ରଶ୍ନ କଲେ, ''ତୁମେ କଣ କୃତକର୍ମ ପାଇଁ ଅନୁଶୋଚନା ବୋଧ କରୁଛ ?''

—''ଅନୁଶୋଚନା ?''

—''ହଁ। ମୁଁ ବୁଦ୍ଧଙ୍କ ଆଶ୍ରିତ। ସେ ଅନୁଶୋଚନାକାରୀଙ୍କୁ କ୍ଷମା ପ୍ରଦର୍ଶନ କରିବାକୁ କହିଛନ୍ତି।''

ତତ୍କ୍ଷଣାତ୍ ବିଚାରସଭାରେ ସମବେତ ଦର୍ଶକବୃନ୍ଦ ପ୍ରତିବାଦରେ ହେଲେ। ନା, କୌଣସି କ୍ଷମା ନୁହେଁ। କେବଳ ମାତ୍ର ଅନୁଶୋଚନା ଏତେବଡ଼ ଅନ୍ୟାୟର ବୋଝ ହ୍ରାସ କରି ନ ପାରେ।



ତିଷ୍ୟା ଜନତା ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ। ତା'ପରେ ଦୃଢ଼ କଣ୍ଠରେ କହିଲେ, ''ଆପଣମାନେ ଚିନ୍ତିତ ହେବେନାହିଁ। ମୁଁ ଆଦୌ ଅନୁଶୋଚନାଗ୍ରସ୍ତ ନୁହେଁ। କାରଣ ମୁଁ ଅନ୍ୟାୟ କରିନାହିଁ।''

ହତାଶା ଏବଂ କ୍ରୋଧ ଉଭୟ ଭାବବ୍ୟଞ୍ଜକ ଧ୍ୱନି ଉଚ୍ଚାରିତ ହେଲା ବିଚାର କକ୍ଷରେ। ସମ୍ରାଟ ଏମିତି ଉତ୍ତର ଆଶା କରି ନଥିଲେ।

ସେ ବିଭ୍ରାନ୍ତ ହୋଇ ପ୍ରଶ୍ନ କଲେ, ''ତୁମେ ଅନ୍ୟାୟ କରିନାହଁ ?''

—''ନା।''

ତିଷ୍ୟାଙ୍କ ଘୋଷଣା ମାତ୍ରେ ଜନତା ଧିକ୍କାର ଧ୍ୱନି ଦେଲେ। ସମ୍ରାଟ ସେମାନଙ୍କୁ ଶାନ୍ତ କଲେ। ତା'ପରେ ଗୋଟିଏ ଦୀର୍ଘ ନିଃଶ୍ୱାସ ତ୍ୟାଗ କଲେ। ''ତୁମେ ନିଜକୁ ଅପରାଧୀ କାହିଁକି ମନେ କର ନାହିଁ ?''

—''କାରଣ ମୁଁ କୌଣସି ଅନ୍ୟାୟ କରିନାହିଁ। କୁମାର ବିଦ୍ରୋହ ଦମନ କରିନାହାଁନ୍ତି। ସେ ସେମାନଙ୍କ ସହ ଯୋଗ ଦେଇଥିଲେ। ତେବେ ଏଇ କାରଣରୁ ମୁଁ ତାଙ୍କ

ଅଙ୍ଗହାନି କରିନାହିଁ। ମୁଁ କୁମାରଙ୍କୁ ପ୍ରାର୍ଥନା କରିଥିଲି। ଆକୈଶୋର ମୁଁ ତାଙ୍କ ସହିତ ମାନସିକ ଭାବେ ବାସ କରିଛି। ସେ ମୋର ଆରାଧ୍ୟ, ମୋର ଦେବତା। ସେଇଥିପାଇଁ ଯେତେଥର ମୁଁ ପ୍ରତ୍ୟାଖ୍ୟାତା ହୋଇଛି, ସେତେଥର ଅଭିମାନର ଚିହ୍ନ ରଖିଛି ତାଙ୍କ ଦେହରେ। ମୁଁ ତାଙ୍କୁ ବୁଝେଇବାକୁ ଚାହିଁଛି ମୋର ଆକାଙ୍କ୍ଷା ତାଙ୍କ ଦେହ ନୁହେଁ, ହୃଦୟ। ମୋର ହୃଦୟ ଶାନ୍ତ ହେବ ନାହିଁ, ଯେତେ ସମୟ ସେ ମୋତେ ସ୍ପର୍ଶ ନ କରିଛନ୍ତି।'' ଅନାବିଳ ତିଷ୍ୟା ଅକପଟରେ ଘୋଷଣା କଲେ।

ସମ୍ରାଟ ଦୁଇ ହାତରେ ଚକ୍ଷୁ ଆବୃତ କଲେ। ଦର୍ଶକମାନେ ଘୃଣାରେ ମୁହଁ ଫେରାଇଲେ। ସମ୍ରାଟ ଶେଷକୁ କହିଲେ, ''ତୁମେ କାମୁକୀ ନାରୀ ଭଳି ଆଚରଣ କରୁଛ, ତିଷ୍ୟା !''

—''କାମ ?'' ତିଷ୍ୟା ମସ୍ତକ ଆନ୍ଦୋଳିତ କଲେ, ''ନା। ଏହା ପ୍ରେମ।''

—''ତୁମେ ସମାଜ-ସଂସାର-ଧର୍ମ ଏପରିକି ମୋତେ ମଧ୍ୟ ଅପମାନ କରୁଛ ?''

—''ଜାଣେ ନା। କିନ୍ତୁ ମୁଁ ଶାଶ୍ୱତ ସତ୍ୟ ନିକଟରେ ନିବେଦିତ।''

—''ଏଇ ଔଦ୍ଧତ୍ୟ ତୁମର ମୃତ୍ୟୁର କାରଣ ହୋଇପାରେ।''

—''କଣ ଯାଏ ଆସେ ? ପ୍ରକୃତ ପ୍ରେମର ସନ୍ଧାନ ଯେ ପାଇଛି, ତା' ନିକଟରେ ମୃତ୍ୟୁ ପରାଜିତ।''

ଜନତା ମୁଖର ହୋଇଉଠିଲେ। କ୍ଷତ ବିକ୍ଷତ ହୃଦୟରେ ସମ୍ରାଟ ଶେଷକୁ ମୃତ୍ୟୁଦଣ୍ଡ ଘୋଷଣା କଲେ। ତାଙ୍କର ସମଗ୍ର ସତ୍ତା ବିଦୀର୍ଣ୍ଣ ହେଉଥିଲା। ବୌଦ୍ଧ ଭାବରେ ସେ କୌଣସି ପ୍ରାଣୀର ମୃତ୍ୟୁ କାମନା କରି ପାରନ୍ତି ନାହିଁ। ଉଦାର କ୍ଷମା ହିଁ ତାଙ୍କର ଏକମାତ୍ର ଧର୍ମ। କିନ୍ତୁ ପ୍ରଜାମାନଙ୍କ ନିକଟରେ ଦୃଷ୍ଟାନ୍ତ ରଖିବା ପାଇଁ, ନିଜକୁ ଆବେଗର ଉର୍ଦ୍ଧ୍ୱରେ ବୋଲି ପ୍ରମାଣ କରିବାକୁ ଏଇ ଦଣ୍ଡ ଦେବା ବ୍ୟତୀତ ଅନ୍ୟ କୌଣସି ପଥ ନଥିଲା। ବର୍ତ୍ତମାନ ପ୍ରଜାମାନେ କହୁଛନ୍ତି, ସମ୍ରାଟଙ୍କ ବିଚାର ସଠିକ ବିଚାର।

ଦଣ୍ଡାଦେଶ ଉଚ୍ଚାରିତ ହେବା ସତ୍ତ୍ୱେ ସେ ଆଗାମୀ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ତା' କାର୍ଯ୍ୟକାରୀ କରିବା ସ୍ଥଗିତ ରଖିଲେ। କାରଣ ସେ ଅପରାଧୀକୁ ଅନୁଶୋଚନା ବୋଧ କରିବାର ଶେଷ ସୁଯୋଗ ଦେବାକୁ ଚାହାଁନ୍ତି। ତିଷ୍ୟା ଅନୁଶୋଚନାଗ୍ରସ୍ତ ହେଲେ ଦଣ୍ଡାଦେଶ ହ୍ରାସ ହୋଇପାରେ।

ସୁପ୍ପବାସା ଆତ୍ମ ସମ୍ବରଣ କରି ପାରିଲା ନାହିଁ। ବିଚାର ସମୟରେ ସେ ସାମ୍ରାଜ୍ଞୀଙ୍କ ନିକଟରେ ହିଁ ଉପସ୍ଥିତ ଥିଲା। ପ୍ରଥମେ ସେ ଅଭ୍ୟାସବଶତଃ ମହାରାଣୀଙ୍କ ସହ ଯେଉଁ ଦୂରତ୍ୱ ରଚନା କରିଥିଲା, ସାନ୍ନିଧ୍ୟ ତା' ଦୂର କରିଛି। ନିଜର ଅଜାଣତରେ ସେ ମହାରାଣୀଙ୍କ ଅତି ନିକଟକୁ ଚାଲିଆସିଛି। ଦଣ୍ଡାଦେଶ ଶୁଣିବା ମାତ୍ରେ ସେ ସ୍ଥାନକାଳପାତ୍ର ବିସ୍ମରିତ ହୋଇ ଉଚ୍ଚ କଣ୍ଠରେ କାନ୍ଦି ଉଠିଲା।

ତିଷ୍ୟା ତା' ଆଡ଼କୁ ଚାହିଁ କହିଲେ, "ସୁପ୍ପବାସା ଅଧୀର ହୋଇ କି ଲାଭ? ତୁ କଣ ଶୁଣିନାହୁଁ, ସ୍ୱୟଂ ତଥାଗତ ଥରେ କହିଥିଲେ, 'ଯେଉଁ ସମସ୍ତ ବସ୍ତୁ ଆମର ପ୍ରିୟ ଏବଂ ମନୋଜ୍ଞ, ସେମାନଙ୍କ ଧର୍ମ ହିଁ ହେଲା ଆମଠୁଁ ବିଚ୍ଛିନ୍ନ ହୋଇଯିବ'। ମୋ ମନରେ ଆଉ କୌଣସି କ୍ଷୋଭ ନାହିଁ। ତୁ ଆଉ ଅଶାନ୍ତି କର ନା।"

ପାଟଳିପୁତ୍ରର ଲୋକମାନଙ୍କୁ ଏଇ ରାତ୍ରିରେ ଆଉ ନିଦ୍ରା ନାହିଁ। ଆଗାମୀ ପ୍ରଭାତରେ ସାମ୍ରାଜ୍ଞୀଙ୍କ ପ୍ରାଣଦଣ୍ଡ କାର୍ଯ୍ୟକାରୀ ହେବ। ଏଇ ସୁନ୍ଦରୀ ରମଣୀର ଦେହ ପଞ୍ଚଭୂତରେ ବିଲୀନ ହେବ ବୋଲି କେହି କେହି ଦୁଃଖିତ। କିନ୍ତୁ ସେମାନଙ୍କ ସଂଖ୍ୟା ଅଳ୍ପ। ଏକ କାଳଗ୍ରହ କବଳରୁ ମୁକ୍ତି ମିଳିବ ବୋଲି ଅଧିକାଂଶ ଲୋକ ଅଧୀର ହୋଇ ପ୍ରତୀକ୍ଷାରତ। ସମ୍ରାଟ ଯଦି ଦୁର୍ବଳ ହୋଇ ପଡ଼ିଥାନ୍ତେ, ଯଦି କ୍ଷମା ପାଇଥାନ୍ତା ସେଇ କାମୁକୀ, ତେବେ ଅବଧାରିତ ଭାବେ ତାର ପ୍ରଭାବ ପଡ଼ିଥାନ୍ତା ନଗରୀର ଘରେ ଘରେ। ସେତେବେଳେ ନାରୀମାନଙ୍କ ଅବାଧ୍ୟତା ବର୍ଦ୍ଧିତ ହୋଇଥାନ୍ତା, ସେମାନଙ୍କୁ ଆଉ ସଂଯମରେ ରଖିବା କଷ୍ଟସାଧ୍ୟ ହୋଇ ପଡ଼ିଥାନ୍ତା। କିନ୍ତୁ ଏଇ ପାପର ଶାସ୍ତି ଦୃଷ୍ଟାନ୍ତ ହୋଇ ରହିଲେ ଆଉ କେହି ଏଭଳି ଆଚରଣ କରିବାକୁ ସାହସୀ ହେବେ ନାହିଁ।

ନିଦ୍ରା ନ ଥିଲା ଉପଗୁପ୍ତଙ୍କ ଚକ୍ଷୁରେ। ସମ୍ରାଟ ଯାହା କରିଛନ୍ତି, ତା' ବାଧ୍ୟ ହୋଇ କରିଛନ୍ତି। ବୃହତ୍ତର ସ୍ୱାର୍ଥଆଡ଼କୁ ଦୃଷ୍ଟିରଖି ପ୍ରାଣଦଣ୍ଡ ଉଚ୍ଚାରଣ କରିବାକୁ ପଡ଼ିଛି ତାଙ୍କୁ। କିନ୍ତୁ ପ୍ରବଳ ଆପତ୍ତି ଥିଲା ତାଙ୍କର ପ୍ରାଣୀ ହତ୍ୟାରେ। ରାତ୍ରିର ତୃତୀୟ ଯାମରେ ନିର୍ବାଣଲାଭ ପୂର୍ବରୁ ତଥାଗତ କହିଥିଲେ, "ମୁଁ ଯେ ତୁମମାନଙ୍କୁ ଧର୍ମ ଓ ବିନୟ ଉପଦେଶ ଦେଇଛି ଏବଂ ବୁଝେଇଛି- ମୋର ଅବର୍ତ୍ତମାନରେ ତାହା ହିଁ ହେବ ତୁମର ଉପଦେଷ୍ଟା।" କିନ୍ତୁ ସେଇ ଧର୍ମ ଓ ବିନୟରୁ ଶିକ୍ଷା ପ୍ରାପ୍ତ ହୃଦୟ କେତେବେଳେ କେତେବେଳେ ଦ୍ୱିଧାରେ ଦ୍ୱିଖଣ୍ଡ ହୁଏ। ସେତେବେଳେ?

ତଥାଗତ କହିଥିଲେ, ''କେହି କାହାକୁ ବିଶୁଦ୍ଧ କରି ପାରେ ନାହିଁ। ଶୁଦ୍ଧି ଓ ଅଶୁଦ୍ଧି ନିଜର ସୃଷ୍ଟି।'' ଏ କ୍ଷେତ୍ରରେ ସାମ୍ରାଜ୍ଞୀ ଯଦି ନିଜେ ବିଶୁଦ୍ଧ ନ ହୁଅନ୍ତି, ତେବେ କରଣୀୟ କଣ ଥାଇପାରେ? ସମ୍ରାଟଙ୍କୁ ଦୁର୍ବଳ ହେବାକୁ ସେ ଅନୁରୋଧ କରିପାରନ୍ତି ନାହିଁ।

ସମ୍ରାଟଙ୍କ ଆଖିରେ ମଧ୍ୟ ନିଦ୍ରା ନଥିଲା। ତାଙ୍କୁ ସ୍ମୃତିରେ କେବଳ ଯୌବନର ପ୍ରଥମ ପଦଧ୍ୱନି ଭାସି ଆସୁଥିଲା। ସେଇ ଦ୍ୱୀପରେ ଉଷାକାଳରେ ସୁନ୍ଦରୀ ବାଳିକାର ଶରୀରରେ ସେ ନିମଜ୍ଜିତ ହୋଇଥିଲେ। ଅଥଚ କୃତ ପାପର ପ୍ରାୟଶ୍ଚିତ କରି ହେଲା ନାହିଁ। ତିଷ୍ୟାଙ୍କୁ ମହାରାଣୀ ପଦ ଦାନ ହିଁ ପରତ୍ରାଣ ନୁହେଁ, ତାଙ୍କ ପ୍ରେମ ଅର୍ଜନରେ ହିଁ ଥିଲା ମୁକ୍ତି। କିନ୍ତୁ ସେ ପରାଜିତ ହେଲେ ପୁତ୍ର ନିକଟରେ। ଅଥଚ ଏଥିପାଇଁ ସେ ବିନ୍ଦୁମାତ୍ର ଈର୍ଷାବୋଧ କରୁନାହାଁନ୍ତି ବର୍ତ୍ତମାନ। ସମସ୍ତ ଅନ୍ତର ଜ୍ୱଳନ୍ତ ଅଙ୍ଗାର ଭଳି, ଅଥଚ ସେଠାରେ କୌଣସି ଅଗ୍ନି ନାହିଁ।

ନିଦ୍ରା ନ ଥିଲା ରାଜକୁମାରଙ୍କ ଅନ୍ଧ ଆଖିରେ। ଆଗାମୀ କାଲି ଏକ ଶରୀର ବିନଷ୍ଟ ହେବ ଏବଂ ସେ ନିଜେ ତାର ପରୋକ୍ଷ–କାରଣ... ଏଇ ସତ୍ୟ ପୀଡ଼ିତ କରୁଥିଲା କୁମାରଙ୍କ ହୃଦୟ। କିନ୍ତୁ ଏ କ୍ଷେତ୍ରରେ ତାଙ୍କର କିଛି କରିବାର ନାହିଁ। ସେ ପିତାଙ୍କ ନିକଟରେ ମିନତି ଜଣେଇ ପାରିଥାନ୍ତେ ଦଣ୍ଡାଦେଶ ହ୍ରାସ କରିବାକୁ। କିନ୍ତୁ ଯିଏ ଦଣ୍ଡିତ, ସେ ନିଜେ ଅସ୍ୱୀକାର କରିଥାନ୍ତେ। ବର୍ତ୍ତମାନ କେବଳ ତଥାଗତଙ୍କ ଚରଣରେ ପ୍ରାର୍ଥନା କରିବା ବ୍ୟତୀତ ରାଜକୁମାର ଅନ୍ୟ ଚିନ୍ତା କରି ପାରୁ ନାହଁନ୍ତି।

ନିଦ୍ରା ନ ଥିଲା, ତିଷ୍ୟାଙ୍କ ଆଖିରେ। ସମ୍ରାଟ ତାଙ୍କୁ ବନ୍ଦୀଶାଳାକୁ ନେଇ ଯାଇ ନାହାଁନ୍ତି। ତାଙ୍କୁ ସସମ୍ମାନରେ ରହିବାକୁ ଦେଇଛନ୍ତି ତାଙ୍କରି ପ୍ରାସାଦରେ। କିନ୍ତୁ ଆଗାମୀକାଲି ସୂର୍ଯ୍ୟୋଦୟ ପୂର୍ବରୁ ହିଁ ତାଙ୍କୁ ଯିବାକୁ ପଡ଼ିବ ବଧ୍ୟଭୂମିକୁ। ସେଠାରେ ଉନ୍ମୁକ୍ତ ଆକାଶତଳେ ଫାଶୀମଞ୍ଚ ସ୍ଥାପିତ ହୋଇଛି। ତାଙ୍କ ହୃଦୟରେ ଆଜି କୌଣସି ଆନ୍ଦୋଳନ ନାହିଁ, ଅଦ୍‌ଭୁତ ଶାନ୍ତି ବିରାଜୁଛି ସେଠାରେ। ଦୁଇଆଖି ବନ୍ଦ କଲାମାତ୍ରେ ବର୍ତ୍ତମାନ ଆତ୍ମଦର୍ଶନ ହେଉଛି। ସେ ଦର୍ଶନରେ ପରମ ପ୍ରାପ୍ତି। ସୁନ୍ଦର ତରୁଣ ସାବଲୀଳ ଭଙ୍ଗୀରେ ହସୁଛନ୍ତି ତା' ସତ୍ତାରେ। ନିଦ୍ରା କିମ୍ବା ଜାଗରଣରେ ଊର୍ଦ୍ଧ୍ୱରେ ଏକ ଅମୃତଲୋକକୁ ଚାଲି ଯାଇଛନ୍ତି ତିଷ୍ୟା। ନିଜକୁ ଏତେ ପବିତ୍ର ବୋଲି ଏହା ପୂର୍ବରୁ କେବେ ବି ଅନୁଭୂତ ହୋଇନାହିଁ ତାଙ୍କର।

ରାତ୍ରିର ଶେଷ ଯାମରେ ରକ୍ଷୀମାନେ ଉପସ୍ଥିତ ହେଲେ। ତିଷ୍ୟା ପ୍ରସ୍ତୁତ ହୋଇଥିଲେ। କ୍ରନ୍ଦନରତା ସୁପ୍ପବାସା ଏବଂ ଅନ୍ୟାନ୍ୟ ପରିଚାରିକାଙ୍କ ବିଳାପକୁ ଉପେକ୍ଷା କରି ତିଷ୍ୟା ରାଜକୀୟ ରଥ ଆରୋହଣ କଲେ। ସେତେବେଳେ ପାହାନ୍ତି ତାରା ଆକାଶରେ ଦୀପ୍ୟମାନ। କିନ୍ତୁ ରାଜପଥରେ ଦଳଦଳ ଲୋକ। ସମସ୍ତେ ସାମ୍ରାଜ୍ଞୀଙ୍କ ଫାଶୀ ଦେଖିବାକୁ ଆଗ୍ରହୀ।

କିନ୍ତୁ ରକ୍ଷୀଗଣ ଫାଶୀମଞ୍ଚ ଘେରି ଯେଉଁ ବେଷ୍ଟନୀ ସୃଷ୍ଟି କରିଛନ୍ତି ତା' ଭେଦ କରିବା ଜନତାଙ୍କ ଅସାଧ୍ୟ ଥିଲା। ଏଇ ମୁହୂର୍ତ୍ତରେ ଜନତା ଶାନ୍ତ। କ୍ରୋଧ ଯେତେ ପ୍ରବଳ ହେଉ, ଗୋଟିଏ ମୃତ୍ୟୁ ଦୃଶ୍ୟର ସାକ୍ଷୀ ହେଲାବେଳେ ସେମାନଙ୍କ ଚିତ୍ତ ଦୁର୍ବଳ ହୋଇପଡ଼ିଥିଲା। ଅଥଚ ନିଷ୍ଠୁର କିଛି ଦେଖିବାର ଆନନ୍ଦରୁ ବଞ୍ଚିତ ହେବାର ଇଚ୍ଛା ମଧ୍ୟ ସେମାନଙ୍କର ନଥିଲା !

ଦୀର୍ଘକାଳ ଅଳସ ଜୀବନରେ ଅଭ୍ୟସ୍ତ ଘାତକ ଦ୍ୱିଧାଗ୍ରସ୍ତ ଥିଲା ଆଦେଶ ଘୋଷିତ ହେବା ପରଠାରୁ। ଅନଭ୍ୟାସ ମଣିଷକୁ ଅବଶ କରେ। ଏକଦା ଯିଏ ସହଜପଟୁତ୍ୱରେ ଗୋଟିକ ପରେ ଗୋଟିଏ ପ୍ରାଣ ହରଣ କରିଛି, ଆଜି ତା' ଭିତରେ ମଧ୍ୟ ଜଡ଼ତା।

ସାମ୍ରାଜ୍ଞୀଙ୍କୁ ବଧ୍ୟଭୂମିକୁ ଅଣାଗଲା। ତାଙ୍କୁ ଦେଖି ଘାତକ ଚମକିତ ହେଲା। ସେ ଏହା ପୂର୍ବରୁ ସାମ୍ରାଜ୍ଞୀଙ୍କୁ ଦର୍ଶନ କରିନାହିଁ, କେବଳ ତାଙ୍କ ରୂପର ପ୍ରଶସ୍ତି ଶୁଣିଆସିଛି। କିନ୍ତୁ ପରମାସୁନ୍ଦରୀ ଏଇ ରମଣୀ ପ୍ରାଣ ତାକୁଇ ହରଣ କରିବାକୁ ପଡ଼ିବ ଭାବି ସେ ଶିହରିତ ହେଲା। ଏତେକାଳ ଯେଉଁ ସବୁ ଅପରାଧୀ ତା ନିକଟକୁ ଆସିଛନ୍ତି, ସେମାନଙ୍କ ମଧ୍ୟରୁ କେହି ହେଲେ ତା' ମମତା ଉଦ୍ରେକ କରି ନାହାଁନ୍ତି। କିନ୍ତୁ ବୃଦ୍ଧ ଘାତକ ସାମ୍ରାଜ୍ଞୀଙ୍କୁ ଦର୍ଶନ କରିବା ମାତ୍ରକେ ଦୁର୍ବଳ ହେଲା। ବହୁ ଯତ୍ନରେ ଗୋଟିଏ ରାତି ଭିତରେ ସେ ରଜ୍ଜୁ ନିର୍ମାଣ କରିଥିଲା। କିନ୍ତୁ ସେଇ ରଜ୍ଜୁ ସାମ୍ରାଜ୍ଞୀଙ୍କ ଗଳାରେ ତୀବ୍ର ଚାପ ଆଣିବ—ଏକଥା କଳ୍ପନା କରି ସେ ବ୍ୟଥିତ ବୋଧ କଲା।

ସାମ୍ରାଜ୍ଞୀ ଆସି ଠିଆ ହେଲେ ମଞ୍ଚ ଉପରେ। ତେଜୋଦୀପ୍ତ ଭଙ୍ଗୀ। ମୁଖରେ ସାମାନ୍ୟତମ ଶଂକାର ଚିହ୍ନ ନାହିଁ। ଅଧରରେ ସ୍ମିତହାସର ବଙ୍କିମ ରେଖା। ତାଙ୍କୁ ପ୍ରଶ୍ନ କରାଗଲା, ସେ ମସ୍ତକ ଆବୃତ କରିବେ କି ନା ? ସାମ୍ରାଜ୍ଞୀ ବିନା ଦ୍ୱିଧାରେ ଅସ୍ୱୀକାର କଲେ।

ସେ ଆସି ଠିଆ ହେଲେ ମଞ୍ଚର ସେଇ ସ୍ଥାନରେ— ଯେଉଁଠି ମଞ୍ଚର ପଟା କୌଶଳରେ ମୁକ୍ତ କରାଯାଇପାରେ। ଘାତକର ହାତ କମ୍ପିତ ହେଲା। ଶେଷ ମୁହୂର୍ତ୍ତରେ ତା' ହୃଦୟରେ ମାୟା ଜନ୍ମିଲା। ମହାରାଣୀଙ୍କ ଗଳାରେ ରାଜୁ ଯେପରି ଜୋରରେ ଚାପ ନ ଦିଏ, ସେଥିପାଇଁ ସେ ଫାଶ ଟିକିଏ ଅଧିକ ଢିଲା କଲା। ତା'ପରେ ଆଦେଶ ଘୋଷଣାମାତ୍ରେ ପଟା ମୁକ୍ତ କଲା।

ସମବେତ ଜନତା ବଧ୍ୟଭୂମିରେ ଠିଆ ହୋଇ ଆଖି ବନ୍ଦ କରିବାକୁ ଯାଇ ଆଶ୍ଚର୍ଯ୍ୟ ହେଲେ। ସାମ୍ରାଜ୍ଞୀଙ୍କ ଶରୀର ନିମ୍ନଗାମୀ ହେଲା। ତାଙ୍କ ଗଳାରେ ରଜ୍ଜୁ ଚାପ ସୃଷ୍ଟି ହେଲା ମାତ୍ରେ ଶରୀରରେ କମ୍ପନ ଦେଖା ଦେଲା। ଶରୀରର ଚାପରେ ରଜ୍ଜୁର ଫାଶ ବୃଦ୍ଧି ପାଇଲା ମାତ୍ରେ ମହାରାଣୀଙ୍କ ମସ୍ତକ ବାହାରି ଆସିଲା ତଳକୁ। ତାଙ୍କ ଦେହ ନଚାଡ଼ି ହୋଇ ପଡ଼ିଲା ଭୂମିରେ। ସଙ୍ଗେ ସଙ୍ଗେ ହା-ହାରବ ଉଠିଲା। ରାଜ-କର୍ମଚାରୀମାନେ ତୀବ୍ର ଆଖିରେ ଚାହିଁଲେ ଘାତକ ଆଡ଼କୁ। ସେ ଲଜ୍ଜାରେ, ଦୁଃଖରେ ଅଧୋମୁଖ।

କର୍ମଚାରୀମାନେ ଛୁଟି ଗଲେ ମହାରାଣୀଙ୍କ ନିକଟକୁ। ସେ ବାକ୍‌ଶକ୍ତିରହିତ। ପ୍ରଚଣ୍ଡ ଯନ୍ତ୍ରଣାରେ ତାଙ୍କ ଶରୀର କାତର। ମସ୍ତକ ଘୂରି ଯାଇଛି; ଶରୀରର ନିମ୍ନଭାଗ ବଧ୍ୟ ପଶୁ ଭଳି କମ୍ପମାନ। ତାଙ୍କ ଜିହ୍ୱା ବର୍ଦ୍ଧିତ ହୋଇଛି, କିନ୍ତୁ ପ୍ରାଣବାୟୁ ଶରୀର ତ୍ୟାଗ କରିନାହିଁ?

କର୍ମଚାରୀମାନେ କିଂକର୍ତ୍ତବ୍ୟବିମୂଢ଼। ଏ ଅବସ୍ଥାରେ କଣ କରଣୀୟ ତା’ ସେମାନେ ବୁଝିପାରୁନଥିଲେ। ଏଇ ଶରୀର ପୁନର୍ବାର ମଞ୍ଚକୁ ନେଇଯିବା ଆଇନବିରୁଦ୍ଧ। ଅଥଚ ମହାରାଣୀଙ୍କ ଯନ୍ତ୍ରଣା ଦର୍ଶନ କରିବା ବେଦନାଦାୟକ। ସମ୍ବାଦ ପ୍ରଚାରିତ ହେଲା। ଜନତା ସ୍ତବ୍ଧ। ରାଜବୈଦ୍ୟ ଛୁଟି ଆସିଲେ।

ମସ୍ତକ ସୁସ୍ଥିର କରି ସେ ବୁଝିଲେ ସାମ୍ରାଜ୍ଞୀଙ୍କ ଗ୍ରୀବା ଭଙ୍ଗ ହୋଇଛି। ରଜ୍ଜୁର ଚାପ ଯଥେଷ୍ଟ ହୋଇ ନଥିବାରୁ ପ୍ରାଣ ନିର୍ଗତ ହୋଇନାହିଁ। ଏଇ ଅବସ୍ଥାରେ ମୃତ୍ୟୁ ଆସିବ, ତେବେ ଖୁବ ଧୀରଲୟରେ; କେତେବେଳେ ଆସିବ ତାର କୌଣସି ସ୍ଥିରତା ନାହିଁ। ଅନ୍ୟପକ୍ଷରେ ତାଙ୍କ ନିକଟରେ ଏମିତି କୌଣସି ଔଷଧ ନାହିଁ ଯେଉଁଥିରେ ମହାରାଣୀଙ୍କୁ ସୁସ୍ଥ କରିହେବ। ଅତଏବ ଏଇ ପାପିଷ୍ଠା ରମଣୀଙ୍କୁ ଏଇଭଳି ଭାବେ ଯନ୍ତ୍ରଣା ପାଇବାକୁ ପଡ଼ିବ। ତାଙ୍କର ଆଉ କିଛି କରିବାର ନାହିଁ।

ସମ୍ରାଟ ସ୍ତବ୍ଧ। ବଧ୍ୟଭୂମିକୁ ଆସି ତିଷ୍ୟାଙ୍କୁ ଦେଖିବାମାତ୍ରେ ତାଙ୍କ ହୃଦୟ ବିଦୀର୍ଣ୍ଣ ହେଲା। ଆହତ ପଶୁ ମଧ୍ୟ ଏଇ ସମୟରେ ବୋଧହୁଏ ଏତେ ଯନ୍ତ୍ରଣା ପାଏ ନାହିଁ। ତିଷ୍ୟାଙ୍କ ଛାତିର କମ୍ପନ, ତାଙ୍କ ନିଃଶ୍ୱାସର ଯନ୍ତ୍ରଣା ସମସ୍ତ ଶରୀରକୁ କମ୍ପିତ କରୁଥିଲା। ସମ୍ରାଟ ରାଜବୈଦ୍ୟଙ୍କୁ ଅନୁନୟ କଲେ, ଯେ କୌଣସି ଔଷଧରେ ତିଷ୍ୟାଙ୍କୁ ସୁସ୍ଥ କରି ତୋଳିବା ପାଇଁ। ରାଜବୈଦ୍ୟ ଜଣେଇଲେ ସେ ଅପାରଙ୍ଗମ। ସେତେବେଳେ ସମ୍ରାଟ ନିଜକୁ କଠୋର କଲେ, “ବେଶ୍ ତେବେ ଆପଣ ସେଇ ଔଷଧ ପ୍ରୟୋଗ କରନ୍ତୁ, ଯେଉଁଥିରେ ଯା’ଙ୍କ ପ୍ରାଣ ଦ୍ରୁତ ନିର୍ଗତ ହୁଏ।”

ରାଜବୈଦ୍ୟ କହିଲେ, “ନା। ତା’ ସମ୍ଭବ ନୁହେଁ ସମ୍ରାଟ। ଔଷଧ ମଣିଷର ଜୀବନଦାନ ପାଇଁ ପ୍ରସ୍ତୁତ ହୁଏ, ଜୀବନନାଶ ପାଇଁ ବ୍ୟବହାର କରିବା ନୀତିବହିର୍ଭୂତ। ମୋ ପକ୍ଷରେ ତାହା କେବେହେଲେ ସମ୍ଭବ ନୁହେଁ।”

ସମ୍ରାଟଙ୍କ କଣ୍ଠ ରୁଦ୍ଧ ହେଲା । ସେ ତଥାଗତଙ୍କ ଶରଣାପନ୍ନ ହେଲେ ।

ରାଜଧାନୀର ସମସ୍ତ ଚଞ୍ଚଳତା ସ୍ତବଧ । ଫାଶୀ ମଞ୍ଚରୁ ପତିତ ହୋଇ ସାମ୍ରାଜ୍ଞୀଙ୍କ ଗ୍ରୀବା ଭଙ୍ଗ ହୋଇଛି । ଅର୍ଦ୍ଧମୃତ ସେଇ ରମଣୀ ଭୂମିରେ ଶାୟିତା ଏବଂ ଆହତ ପଶୁଭଳି କ୍ଳେଶ ସହ୍ୟ କରୁଛନ୍ତି । ଏ ସମ୍ବାଦରେ ତାଙ୍କର ଅତିବଡ଼ି ସମାଲୋଚକ ମଧ୍ୟ ବ୍ୟଥିତ ।

ରାଜକୁମାର ଶୁଣିବାମାତ୍ରେ ମୁହ୍ୟମାନ ହେଲେ । ସାମ୍ରାଜ୍ଞୀଙ୍କ ବକ୍ଷ ଉଠୁଛି ପଡୁଛି । ପ୍ରାଣ ନିର୍ଗତ ହେବାକୁ ଯାଇ ମଧ୍ୟ ଯାଉ ନାହିଁ । ମୁହଁରୁ କୌଣସି ଶବ୍ଦ ନିଃସୃତ ହେଉନାହିଁ । ରାଜକୁମାର ଚଞ୍ଚଳ ହୋଇପଡ଼ିଲେ । ତା'ପରେ ମହାନାମ ସାହାଯ୍ୟରେ ଉପସ୍ଥିତ ହେଲେ ସନ୍ନ୍ୟାସୀ ଉପଗୁପ୍ତଙ୍କ ନିକଟରେ ।

ରାଜକୁମାର ପ୍ରଶ୍ନ କଲେ, "ହେ ସନ୍ନ୍ୟାସୀ, ଏ ଅବସ୍ଥାର କଣ କୌଣସି ପ୍ରତିକାର ନାହିଁ ?"

ସନ୍ନ୍ୟାସୀ କହିଲେ, "ପ୍ରତିକାର ସେ କରିବେ, ଯିଏ ଆମକୁ ପ୍ରାଣ ଦିଅନ୍ତି ।"

ରାଜକୁମାର ପ୍ରଶ୍ନ କଲେ, "ଆମେ କଣ କିଛି କରି ପାରୁନା ? ତଥାଗତ କଣ ଆମକୁ ସାହାଯ୍ୟ କରିପାରନ୍ତି ନାହିଁ ?"

ସନ୍ନ୍ୟାସୀ ଜିଜ୍ଞାସା କଲେ, "ତୁମେ କ'ଣ ଚାହ, କୁମାର ?"

ରାଜକୁମାର ନମ୍ରସ୍ୱରରେ କହିଲେ, "ମୁଁ ତାଙ୍କ ଯନ୍ତ୍ରଣା ସହ୍ୟ କରି ପାରୁ ନାହିଁ । ତାଙ୍କୁ ମୁଁ ଶାନ୍ତିଦାନ କରିବାକୁ ଚାହେଁ । ହେ ସନ୍ନ୍ୟାସୀ, ଆପଣ ମୋତେ ଶକ୍ତି ଦିଅନ୍ତୁ ।"

ସନ୍ନ୍ୟାସୀ କିଛି କ୍ଷଣ ଶାନ୍ତ ରହିଲେ । ତା'ପରେ କହିଲେ, "ସାଧୁ । କିନ୍ତୁ କୁମାର ପୃଥିବୀର ଶ୍ରେଷ୍ଠ ଦାନ ହେଲା ଧର୍ମଦାନ । ତୁମେ ଧର୍ମଦାନ କରି ପାରିବ ?"

–"ଧର୍ମଦାନ ?"

–"ହଁ । ଭଗବାନ କହିଛନ୍ତି, "ସବ୍ବଦାନଂ ଧମ୍ମଦାନଂ ଜିନାତି– ସବୁ ଦାନ ପରାଜିତ ହୁଏ ଧର୍ମଦାନ ନିକଟରେ, ଧର୍ମରସ ସବୁ ରସକୁ ପରାଭୂତ କରେ, ଧର୍ମରତି ସବୁ ରତିକୁ ଜୟ କରେ, ତୃଷ୍ଣାକ୍ଷୟ ସବୁ ଦୁଃଖକୁ ବିଲୀନ କରେ । ତୁମେ ସେଇ ଧର୍ମଦାନର ଯୋଗ୍ୟତା ଯଦି ଅର୍ଜନ କରିଥାଅ, ତେବେ ନିଃସନ୍ଦେହରେ ଜାଣିବ ତଥାଗତ ତୁମ ସହିତ ଅଛନ୍ତି ।"

ରାଜକୁମାରଙ୍କ ମନେ ପଡ଼ିଲା ତଥାଗତଙ୍କ ଉପଦେଶ । ଯିଏ ପ୍ରାଣୀମାନଙ୍କ ପ୍ରତି ଅହିଂସା ଆଚରଣ କରନ୍ତି, ପରନିନ୍ଦା ଭୟରେ ଯିଏ ସତ୍‌କାର୍ଯ୍ୟରୁ ବିରତ ହୁଅନ୍ତି ନାହିଁ, ସେ ହିଁ ପ୍ରକୃତ ପ୍ରଶଂସାର ଯୋଗ୍ୟ । ମୋର ଏତେ ବର୍ଷର ସାଧନା ଯଦି କେବଳ ମୋର ବୋଲି ଅନୁଭୂତ ହୁଏ, ତେବେ ସେ ସାଧନା ବୃଥା । କାରଣ

ସେଠାରେ ଅହଂବୋଧ ଫଣା ଟେକୁଛି। ସେଇ ସାଧନା ଯଦି ଜନମଙ୍ଗଳ ପାଇଁ ବିନା ଦ୍ୱିଧାରେ ଦାନ କରି ଦିଆଯାଏ ତା'ହେଲେ ତଥାଗତଙ୍କ କୃପା ବର୍ଷିତ ହୁଏ।

ରାଜକୁମାର ମନ ସ୍ଥିର କଲେ। ସନ୍ନ୍ୟାସୀଙ୍କ ନିକଟରୁ ବିଦାୟ ନେଇ ସେ ମହାନାମ ସହିତ ଦ୍ରୁତ ଚାଲି ଆସିଲେ ବଧ୍ୟଭୂମିକୁ।

ସେଠାରେ ପୂର୍ଣ୍ଣ ଜୀବନ୍ତ ଲୋକମାନେ ପଥରମୂର୍ତ୍ତି ପରି ସ୍ଥିର। ସେମାନେ ତାଙ୍କୁ ଶ୍ରଦ୍ଧା-ସହକାରେ ପଥ ଛାଡ଼ି ଦେଲେ। ମହାନାମ ରାଜପୁତ୍ରଙ୍କୁ ନେଇ ଆସିଲା ସେଠାକୁ, ଯେଉଁଠାରେ ଯନ୍ତ୍ରଣାକାତର। ମହାରାଣୀ ଶାୟିତା। ତାଙ୍କୁ ଦର୍ଶନ କରିବା ମାତ୍ରେ ମହାନାମ ଆର୍ତ୍ତନାଦ କରି ଉଠିଲା। ରାଜକୁମାର ଜିଜ୍ଞାସା କଲେ, "କଣ ଦେଖୁଛ ମହାନାମ ?"

ଅଧର ଦଂଶନ କଲା ମହାନାମ, "ସେ ଭୂମିରେ ପଡ଼ି ରହିଛନ୍ତି। ଯେମିତି ବଳିଦାନ ଅର୍ଦ୍ଧ ସମାପ୍ତ ରଖି ପଶୁମାନଙ୍କୁ ଛାଡ଼ି ଦିଆ ହେଉଥିଲା ରକ୍ତାକ୍ତ ଅବସ୍ଥାରେ। ତାଙ୍କ ବକ୍ଷଦେଶ ଦ୍ରୁତ ଉପରତଳ ହେଉଛି।"

ସମ୍ରାଟ ଦେଖିଲେ ରାଜକୁମାରଙ୍କୁ। ସେ ଆଗେଇ ଆସୁଛନ୍ତି ମହାନାମର ହାତ ଧରି। ରାଜକୁମାର କହିଲେ, "ଆପଣମାନେ ସମସ୍ତେ ଘୁଞ୍ଚି ଚାଲିଯାନ୍ତୁ। ମୋତେ ତାଙ୍କ ନିକଟରେ ଏକାକୀ ରହିବାକୁ ଦିଅନ୍ତୁ।"

କେହି କେହି ଚମକି ଉଠିଲେ ଏକଥା ଶୁଣି। ତେବେ ସମସ୍ତେ ଅନୁରୋଧ ମାନ୍ୟ କଲେ।

ରାଜକୁମାର ଧୀରେ ଧୀରେ ଅଧୋପବେଶନ କଲେ ସାମ୍ରାଜ୍ଞୀଙ୍କ ପାର୍ଶ୍ୱରେ। ତା'ପରେ ଅତ୍ୟନ୍ତ ପ୍ରଶାନ୍ତ ମୁଖରେ ନିର୍ମଳ ହୃଦୟରେ ତଥାଗତଙ୍କୁ ସ୍ମରଣ କଲେ। ଯନ୍ତ୍ରଣାକାତର। ସାମ୍ରାଜ୍ଞୀଙ୍କ ଦୁଇ ଚକ୍ଷୁ ସେତେବେଳେ ସ୍ଥିର। ନୀଳ ହୋଇ ଯାଇଥିବା ମୁଖରେ ଅମୃତର ତୃପ୍ତି।

ରାଜକୁମାରଙ୍କ ମସ୍ତକ ଅବନତ ହେଲା। ଧୀରେ ଧୀରେ ତିଷ୍ୟାଙ୍କ ବକ୍ଷ ସ୍ପର୍ଶ କଲା ! ହୃତ୍‌ସ୍ପନ୍ଦନ ଅନୁଭୂତ୍ ହେଉ ନ ହେଉଣୁ ରାଜକୁମାର ବୁଝି ପାରିଲେ ମହାଅନନ୍ତର ସ୍ତବ୍ଧତା ତିଷ୍ୟାଙ୍କୁ ଆଶ୍ରୟ କରିଛି।

..........ରାଜକୁମାରଙ୍କ ଅଧର ସ୍ଫୁରିତ ହୋଇ, ସମସ୍ତ ସତ୍ତା ମନ୍ଥନ କରି ଗୋଟିଏ ଶବ୍ଦ ହିଁ ଉଚ୍ଚାରିତ ହେଲା :"କଲ୍ୟାଣ ହେଉ।" □□□



ସମରେଶ ମଜୁମ୍‌ଦାର୍

ପ୍ରତିବେଶୀ ବଙ୍ଗଳା ସାହିତ୍ୟର ପ୍ରଖର ପ୍ରତିଭା– ସମରେଶ ମଜୁମ୍‌ଦାର୍ ।

ଇତିହାସର ଏକ ଉପେକ୍ଷିତା ରମଣୀକୁ ନେଇ ତାଙ୍କର ଏ କରୁଣ କଳ୍ପ - କାହାଣୀ – 'ଶରଣାଗତ' ।

ଅତୀତର ଏଇ ଅଶ୍ରୁଳ ଆଖ୍ୟାୟିକାଟିକୁ ଓଡ଼ିଆ ଭାଷାରେ ରୂପାୟିତ କରିଛନ୍ତି– ମୃଣାଳ ।



ମୃଣାଳ